ନିଜ ଉଦ୍ୟମ, ନିଜ ପରିଶ୍ରମ ବଳରେ ଓଡ଼ିଶାର ଯେଉଁ କେତେଜଣ ସାମ୍ବାଦିକ ଯଶସ୍ୱୀ ହୋଇପାରିଛନ୍ତି ସେମାନଙ୍କ ମଧ୍ୟରେ ଜୀମୂତ ମଙ୍ଗରାଜ ଅନ୍ୟତମ । ଦୀର୍ଘ ୩୦ ବର୍ଷର ସାମ୍ବାଦିକ ଜୀବନ । ରାଜ୍ୟର ବହୁ ଅଗ୍ରଣୀ ସମ୍ବାଦପତ୍ରଗୁଡ଼ିକରେ ଦୀର୍ଘବର୍ଷ ଧରି କାର୍ଯ୍ୟ କରିବା ପରେ ଜୀମୂତ ମଙ୍ଗରାଜ ବର୍ତ୍ତମାନ ରାଜ୍ୟ ସରକାରଙ୍କ ସ୍ୱୀକୃତିପ୍ରାପ୍ତ ମୁକ୍ତବୃତ୍ତ ସାମ୍ବାଦିକ । ଅନୁସନ୍ଧାନମୂଳକ ରିପୋର୍ଟିଂକୁ ଓଡ଼ିଶାରେ ପ୍ରସାର ଓ ଲୋକପ୍ରିୟ କରିବାରେ ଜୀମୂତ ମଙ୍ଗରାଜଙ୍କର ଉଦ୍ୟମକୁ କେହି ଅସ୍ୱୀକାର କରିପାରିବେ ନାହିଁ । ସ୍ୱର୍ଗତ କବି ସଚ୍ଚି ରାଉତରାୟ ତାଙ୍କର ଆତ୍ମଜୀବନୀ ପୁସ୍ତକ 'ଉତର କକ୍ଷ'ରେ ଜୀମୂତ ମଙ୍ଗରାଜଙ୍କୁ ବେଶ୍ ପ୍ରଶଂସା କରିଛନ୍ତି। ଏହି ପୁସ୍ତକରେ ଜୀମୂତ ମଙ୍ଗରାଜଙ୍କର 'ଯତନ ନଗର' ଓ 'ମାଘମାସିଆ' ଭଳି ଲୋମ ଟାଙ୍କୁରି ଉଠୁଥିବା ଅନୁସନ୍ଧାନମୂଳକ ରିପୋର୍ଟିଂର କିଛି ଅଂଶ ସେ ଉଦ୍ଧୃତ କରିଛନ୍ତି । ଓଡ଼ିଶାର ପ୍ରଥମ ରାଜନୈତିକ ସମ୍ବାଦପତ୍ର 'ନେତା' ଓ ପ୍ରଥମ ସ୍ୱାସ୍ଥ୍ୟଭିତିକ ସମ୍ବାଦପତ୍ର 'ଲାଇଫ୍ ଲାଇନ୍' ଜୀମୂତ ମଙ୍ଗରାଜ ପ୍ରକାଶ କରିଥିଲେ । ଏମିତି ଓଡ଼ିଶାରେ ରାଜନୈତିକ ପୁସ୍ତକ ଜାଁ ଭାଁ ରଚନା ହେଉଥିବା ବେଳେ ଜୀମୂତ ମଙ୍ଗରାଜ ପ୍ରତିବର୍ଷ ଓଡ଼ିଶାର ପାଠକମାନଙ୍କୁ ରାଜନୈତିକଧର୍ମୀ ପୁସ୍ତକ ଉପହାର ଦେଇଚାଲିଛନ୍ତି । ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍ସ', 'ଗୁମର କଥା' ରାଜନୈତିକଧର୍ମୀ ପୁସ୍ତକଗୁଡ଼ିକ ଓଡ଼ିଶାରେ ବେଶ୍ ଚହଳ ପକାଇଛି । ଏହି ପୁସ୍ତକଗୁଡ଼ିକ ରାଜନୀତିର ଚଟକ୍‌ଦାର ଘଟଣାବଳୀ ଉପରେ ପର୍ଯ୍ୟବେଶିତ । ଏହି ତିନୋଟି ପୁସ୍ତକ ବହୁଳ ଭାବରେ ପାଠକପ୍ରିୟ ହେବାପରେ ଜୀମୂତ ମଙ୍ଗରାଜଙ୍କର ଚତୁର୍ଥ ରାଜନୈତିକଧର୍ମୀ ପୁସ୍ତକ ହେଉଛି 'କ୍ୟାପିଟାଲ ଡାଏରୀ'। ନେତାମାନଙ୍କର ଗୁମର କଥାକୁ ନେଇ ସୃଷ୍ଟି ହେଉଥିବା ହାଲ୍‌କା ମନ୍ତବ୍ୟ ତଥା ରସାଳ ଘଟଣା ଉପରେ ଏହି 'କ୍ୟାପିଟାଲ ଡାଏରୀ' ପର୍ଯ୍ୟବେଶିତ । ପାଠକମାନଙ୍କ ନିକଟରେ 'କ୍ୟାପିଟାଲ ଡାଏରୀ' ଏକ ଅଲଗା ଦିଗନ୍ତର ଉଦ୍‌ଘାଟନ କରିବ ଏହା ନିଃସନ୍ଦେହ । ଜୀମୂତ ମଙ୍ଗରାଜଙ୍କ ପତ୍ନୀ ଜ୍ୟୋତ୍ସ୍ନା ରାଉତରାୟ ଓଡ଼ିଶାର ଜଣେ ଆଗଧାଡ଼ିର ସାମ୍ବାଦିକା ଓ ଗାଳ୍ପିକା । ସେ ମଧ୍ୟ ଓଡ଼ିଶା ସରକାରଙ୍କର ଅଧିସ୍ୱୀକୃତପ୍ରାପ୍ତ ମୁକ୍ତବୃତ୍ତ ସମ୍ବାଦିକା । ଶ୍ରୀ ମଙ୍ଗରାଜ ତାଙ୍କ ପତ୍ନୀ ଜ୍ୟୋତ୍ସ୍ନା ରାଉତରାୟ, କନ୍ୟା ରତ୍ନପର୍ଣ୍ଣା, ପୁତ୍ର ଅମୃତଙ୍କ ସହ ଭୁବନେଶ୍ୱରର ୯ ନମ୍ବର ସ୍ଥିତ ୩ଆର୍-୧୬୭ରେ ଅବସ୍ଥାନ କରୁଛନ୍ତି ।

| | |
|---|---|
| **କ୍ୟାପିଟାଲ ଡାଏରୀ** | **Capital Dairy** |
| ଲେଖକ : | Writer |
| ଜୀମୂତ ମଙ୍ଗରାଜ | Jimuta Mangaraj |
| ଫୋନ୍ : | Phone |
| ୯୪୩୭୪୬୮୧୮୮ | 9437468188 |
| ପ୍ରକାଶକ | Publisher |
| ଏ.ଜେ. ପବ୍ଲିକେଶନ୍ସ | A.J. Publications |
| ପ୍ଲଟ ନଂ.-୬, ଭୌମନଗର, | Plot No. - 6, Bhoumanagar, |
| ଛାୟା ମେଡ଼ିକାଲ କମ୍ପ୍ଲେକ୍ସ | Chhaya Medical Complex |
| ଭୁବନେଶ୍ୱର, ୭୫୧୦୦୧ | Bhubaneswar, 751001 |
| ମୁଦ୍ରଣ | Printers |
| ଦିବ୍ୟ ମୁଦ୍ରଣୀ | Dibya Mudrani |
| ପ୍ଲଟ୍ ନଂ- ୫୮/୬୦ | Plot No-58/60 |
| ସାମନ୍ତରାପୁର | Samantarapur |
| ଭୁବନେଶ୍ୱର | Bhubaneswar |
| ପ୍ରଥମ ପ୍ରକାଶନ | First Edition |
| ସେପ୍ଟେମ୍ବର ୨୦୧୧ | September 2011 |
| ମୂଲ୍ୟ | Price |
| ଦୁଇଶହ ପଚାଶ ଟଙ୍କା ମାତ୍ର | Rupees Two Hundred Fifty Only |
| ପ୍ରଚ୍ଛଦ ଓ ଅଙ୍ଗସଜ୍ଜା | Cover & Layout |
| ପ୍ରକାଶ କୁମାର ସାହୁ | Prakash Kumar Sahoo |
| ଅକ୍ଷରସଜ୍ଜା | DTP |
| ଅଜିତ୍ ଅମିତାଭ ନାୟକ | Ajit Amitav Nayak |
| ଫଟୋ ଓ ପ୍ରସାରଣ | Photo & Circulation |
| ଅଭିମନ୍ୟୁ ମହାରଣା | Abhimanyu Maharana |

# ଉତ୍ସର୍ଗ

ସେଦିନର ଚପଳ କୈଶୋରର ଦୁଷ୍ଟାମୀ ଭିତରେ
ସେମାନେ କେବେ ଭାବି ନଥିଲେ ମୁଁ ଦିନେ ବହି
ଲେଖି ପ୍ରତିଷ୍ଠିତ ହେବି । କିନ୍ତୁ ଅଲକ୍ଷରେ
ସେମାନଙ୍କର ଆଶୀର୍ବାଦ ମତେ ଏତେବାଟ ଟାଣି
ନେଇ ଆସିଛି । ଆଜି ମୋର ଚତୁର୍ଥ ସଂକଳନଟିକୁ
ମୁଁ ମୋର ସ୍ୱର୍ଗବାସୀ ପିତା ଅର୍ଜୁନ ମଙ୍ଗରାଜ ଓ
ମାତା ସ୍ୱର୍ଗତ ଲକ୍ଷ୍ମୀପ୍ରିୟା ମଙ୍ଗରାଜଙ୍କ
ଚରଣ ତଳେ ସମର୍ପିତ କରୁଛି ।

ଚିରଦିନ ସ୍ନେହାଭିଳାଷୀ

**ପୁତ୍ର - ଜୀମୂତ**

# ପଦଟିଏ .



ଇଏ ଆଉ ଏକ ଚମତ୍କାର । କେବେବି ଚିନ୍ତା କରି ନଥିଲି ମୋର ଚତୁର୍ଥ ସଂକଳନ 'କ୍ୟାପିଟାଲ ଡାଏରୀ' ଲୋକାର୍ପଣ ହେବ । ମୁଁ ଜାଣେନା ଏହା ମୋର ସାମର୍ଥ୍ୟ ନା ଅସାମର୍ଥ୍ୟ । କିନ୍ତୁ ମୁଁ ଏହା ବିଶ୍ୱାସ କରେ ଯେ ସବୁକିଛି ସେଇ ଜଗନ୍ନାଥଙ୍କର ଇଚ୍ଛା । ସିଏ ନଚାହିଁଲେ ଦୁନିଆର କୌଣସି କାର୍ଯ୍ୟ ସଂପାଦନ ହୁଅନ୍ତା ନାହିଁ କି ଦୁଃଖଦ ଅଘଟଣ ମଧ ଘଟନ୍ତା ନାହିଁ ।

ପ୍ରଗାଢ଼ ଈଶ୍ୱର ବିଶ୍ୱାସ ଭିତରେ ମୁଁ ଯେଉଁଦିନ ଲେଖା ଆରମ୍ଭ କଲି ଓ ସଂପାଦିତ କଲି ସେଦିନ ମୋର ପୁସ୍ତକ ଖୁବ୍ ଆଦୃତ ହେଲା । ସେଦିନ ନିଜ ଉପରେ ମଧ ବିଶ୍ୱାସ ନଥିଲା । ଯେଉଁ ବୈଦ୍ୟୁତିକ ଗଣମାଧମ ଓ ବିଭିନ୍ନ ଚ୍ୟାନେଲର ଧାରାବାହିକର 'ମାୟା' ଶିକ୍ଷିତ ସମାଜକୁ ପରିପୂର୍ଣ୍ଣ ଭାବରେ ଆଚ୍ଛନ୍ନ କରିରଖିଛି, ଗଳ୍ପ, ଉପନ୍ୟାସ, କବିତା ପ୍ରଭୃତିର ଆଦର ଧୀରେଧୀରେ ହ୍ରାସ ପାଇଆସୁଛି, ସେ ସମୟରେ ମୋର ଏଇ 'ପଲିଟିକାଲ ଗସିପ୍' ବା ପଲିଟିକାଲ ସାଟାୟାର ପ୍ରତି କିଏ ଆକର୍ଷିତ ହେବ । ଏହା ହିଁ କେବଳ ମୋ ମନରେ ନୁହେଁ ସମସ୍ତ ପାଠକଙ୍କ ମନରେ ଆନ୍ଦୋଳିତ ହେବା ସ୍ୱାଭାବିକ । କିନ୍ତୁ ସତେ ଯେମିତି ଜଗନ୍ନାଥଙ୍କର ଆଶୀର୍ବାଦ ମୋ ପ୍ରତି ଥିଲା ।

ମୋର ସାକ୍ଷାତକାର ଭିତିକ ସଂକଳନ 'ମୁହାଁମୁହିଁ', ବିଧାନସଭାରେ ଘଟୁଥିବା ଚଟୁଳ ଘଟଣାର ଆଖିଦେଖା ଅନୁଭୂତି 'ଆସେମ୍ବ୍ଲି ଜୋକ୍ସ', ରାଜନୈତିକ

ବ୍ୟକ୍ତିମାନଙ୍କ ଜୀବନର ଅଜଣା ଦିଗନ୍ତର ସମାହାର 'ଗୁମର କଥା' ଗଳ୍ପ, ଉପନ୍ୟାସ ଓ କବିତା ପୁସ୍ତକଗୁଡ଼ିକଠାରୁ ଅଧିକ ଆଦୃତ ହେଲା ଓ ପୁସ୍ତକମେଳାରେ ପ୍ରଚୁର ପରିମାଣରେ ବିକ୍ରି ମଧ୍ୟ ହେଲା । ମୁଁ ନିଜେ ଅଭିଭୂତ ହୋଇଯାଇଥିଲି ଆଉ ଭାବିଥିଲି ଏହା କ'ଣ ସମ୍ଭବ । କିନ୍ତୁ ପ୍ରକୃତରେ ତାହା ସମ୍ଭବ ହୋଇଥିଲା ।

'କ୍ୟାପିଟାଲ ଡାଏରୀ'ର ଲେଖା ଦୁଇଭାଗରେ ବିଭକ୍ତ । ପ୍ରଥମ ଭାଗରେ ରାଜନୀତି ଆଉ କ୍ୟାପିଟାଲ ଭୁବନେଶ୍ୱରରେ ଘଟୁଥିବା ସାଧାରଣ ଘଟଣା । ଦ୍ୱିତୀୟ ଭାଗରେ ନେତାଙ୍କର ଅକୁହା କଥା । ୧୯୯୯ ମସିହାରୁ ୨୦୧୧ ସେପ୍ଟେମ୍ବର ପର୍ଯ୍ୟନ୍ତ ବହୁ ଆଖିଦେଖା କଥା ଯାହା ପ୍ରକାଶ ପାଇନଥିଲେ ଚିରଦିନ ପାଇଁ ଅପ୍ରକାଶିତ ହୋଇ ରହିଯାଇଥା'ନ୍ତା ସେଭଳି କେତେକ ଘଟଣାକୁ ନେଇ ଏହି 'କ୍ୟାପିଟାଲ ଡାଏରୀ'।

ମୁଁ ଚିରଦିନ ଈଶ୍ୱର ବିଶ୍ୱାସୀ । ସେଇ ଅଦୃଶ୍ୟ ଶକ୍ତିର ପ୍ରଭାବରେ ଯଦି ସୂର୍ଯ୍ୟ ଉଦୟ ହୁଏ, ପଦ୍ମ ଫୁଟେ, ଜହ୍ନ ଉଏଁ, କଇଁ ହସେ- ତେବେ ରାଜନୀତିଧର୍ମୀ ରସାଳ ପୁସ୍ତକ କାହିଁକି ପାଠକକୁ ଆଲୋଡ଼ିତ, ଉଦ୍ବେଳିତ ନକରିବ । ଏଥିପାଇଁ ମୋର ପାଠକମାନଙ୍କ ନିକଟରେ ମୁଁ କୃତଜ୍ଞ । ସେଇମାନେ ହିଁ ମୋର ଚିନ୍ତାର ଗ୍ରାହକ । ମୁଁ ଆଶା ଓ ବିଶ୍ୱାସ ରଖୁଛି 'କ୍ୟାପିଟାଲ ଡାଏରୀ' ମଧ୍ୟ ପୂର୍ବ ସଂକଳନମାନଙ୍କ ଭଳି ପାଠକର ହୃଦୟ ଜୟ କରିପାରିବ ।

*- ଜୀମୂତ ମଙ୍ଗରାଜ -*





# ପାଠକଙ୍କ ଆଦର ଲାଭ କରିବ

ମୂରଲୀଧର
ଚନ୍ଦ୍ରକାନ୍ତ ଭଣ୍ଡାରେ
ରାଜ୍ୟପାଳ, ଓଡ଼ିଶା

ଓଡ଼ିଶାର ଖ୍ୟାତନାମା ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'କ୍ୟାପିଟାଲ ଡାଏରୀ' ପୁସ୍ତକ ପ୍ରକାଶ ପାଉଥିବାର ଜାଣି ମୁଁ ଆନନ୍ଦିତ । ଜୀମୂତ ମଙ୍ଗରାଜଙ୍କର ଏଥିପୂର୍ବରୁ 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍ସ', 'ଗୁମର କଥା' ପ୍ରଭୃତି ରାଜନୈତିକଧର୍ମୀ ପୁସ୍ତକଗୁଡ଼ିକ ପ୍ରକାଶ ପାଇଛି । ଓଡ଼ିଶାରେ ରାଜନୈତିକଧର୍ମୀ ପୁସ୍ତକର ଅଭାବ ଥିବାବେଳେ ଜୀମୂତ ମଙ୍ଗରାଜ ଗୋଟିକ ପରେ ଗୋଟିଏ ରାଜନୈତିକଧର୍ମୀ ପୁସ୍ତକ ପ୍ରକାଶ କରୁଥିବାରୁ ତାଙ୍କର ଉଦ୍ୟମ ନିଶ୍ଚିତ ଭାବେ ପ୍ରଶଂସନୀୟ । ମୁଁ ଆଶା କରୁଛି 'କ୍ୟାପିଟାଲ ଡାଏରୀ' ଜୀମୂତ ମଙ୍ଗରାଜଙ୍କର ଭିନ୍ନ ସ୍ୱାଦର ରାଜନୈତିକ ପୁସ୍ତକ ହେବ । ଏହି ପୁସ୍ତକ ମଧ ପାଠକମାନଙ୍କର ଆଦର ଲାଭ ଦରିବ । 'କ୍ୟାପିଟାଲ ଡାଏରୀ' ପୁସ୍ତକ ଓ ଜୀମୂତ ମଙ୍ଗରାଜଙ୍କର ସଫଳତା କାମନା କରୁଛି ।

ମୁରଲୀଧର ଭଣ୍ଡାରେ





ଜାନକୀବଲ୍ଲଭ
ପଟ୍ଟନାୟକ
ରାଜ୍ୟପାଳ, ଆସାମ

# ଅକୁହା କଥା ଜାଣିବେ

ଓଡ଼ିଶାର ବେଶ୍ ଜଣାଶୁଣା ତଥା ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'କ୍ୟାପିଟାଲ ଡାଏରୀ' ନାମକ ଏକ ରାଜନୈତିକ ପୁସ୍ତକ ପ୍ରକାଶ ପାଉଥିବା ଜାଣି ଆନନ୍ଦିତ ହେଲି । ପୂର୍ବରୁ ଶ୍ରୀ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'ମୁହାଁମୁହିଁ', ଆସେମ୍ବ୍ଲି ଜୋକ୍‌ସ' 'ଗୁମର କଥା' ପ୍ରଭୃତି ରାଜନୈତିକଧର୍ମୀ ପୁସ୍ତକ ପ୍ରକାଶ ପାଇଛି । ଓଡ଼ିଆ ଭାଷାରେ ରାଜନୈତିକ ଧର୍ମୀ ପୁସ୍ତକର ଅଭାବ ରହିଛି । ଏହି ଅବସରରେ ଶ୍ରୀ ମଙ୍ଗରାଜ ଗୋଟିଏ ପରେ ଗୋଟିଏ ରାଜନୈତିକଧର୍ମୀ ପୁସ୍ତକ ଓଡ଼ିଶାର ପାଠକ ସମାଜକୁ ଅର୍ପଣ କରିଚାଲିଛନ୍ତି । ଏଥିପାଇଁ ଶ୍ରୀ ମଙ୍ଗରାଜଙ୍କୁ ଧନ୍ୟବାଦ ଜଣାଉଛି । ନେତାମାନଙ୍କର ଅକୁହାକଥାକୁ ଶ୍ରୀ ମଙ୍ଗରାଜ ତାଙ୍କର ସାମ୍ବାଦିକ କଲମ ମୁନରେ ବିଭିନ୍ନ ସମୟରେ ଲୋକ ଲୋଚନକୁ ଆଣିଥିନ୍ତି। 'କ୍ୟାପିଟାଲ ଡାଏରୀ' ପୁସ୍ତକରେ ଶ୍ରୀ ମଙ୍ଗରାଜ କ୍ୟାପିଟାଲ ଭୁବନେଶ୍ୱରରେ ସାଧାରଣ ଘଟଣା ଓ ନେତାମାନଙ୍କର ଭିତିରିକଥାକୁ ପରିସ୍ଫୁଟ କରିଛନ୍ତି । 'କ୍ୟାପିଟାଲ ଡାଏରୀ 'ହେଉଛି ଶ୍ରୀ ମଙ୍ଗରାଜଙ୍କର ଚତୁର୍ଥ ରାଜନୈତିକଧର୍ମୀ ପୁସ୍ତକ । ଅନ୍ୟ ତିନୋଟି ରାଜନୈତିକଧର୍ମୀ ପୁସ୍ତକ ପରି 'କ୍ୟାପିଟାଲ ଡାଏରୀ' ପୁସ୍ତକଟି ସାଧାରଣରେ ଆଦର ଲାଭ କରିବ' ବୋଲି ଆଶା କରୁଛି । 'କ୍ୟାପିଟାଲ ଡାଏରୀ'ର ସକଳ ସଫଳତା କାମନା କରୁଛି ।





# ସଚେତନତା ସୃଷ୍ଟି କରିବ

ନବୀନ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ, ଓଡ଼ିଶା

ରାଜନୈତିକ ସମ୍ବାଦପତ୍ର 'ନେତା'ର ସଂପାଦକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଇବା ଆନନ୍ଦର ବିଷୟ । ରାଜନୀତି ଓ ରାଜନୈତିକ ନେତାଙ୍କ ବିଭିନ୍ନ ବିଷୟ ଉପରେ ଆଧାରିତ 'କ୍ୟାପିଟାଲ ଡାଏରୀ' ଜନସାଧାରଣଙ୍କ ଦୃଷ୍ଟି ଆକର୍ଷଣ କରିବା ସହିତ ସଚେତନତା ସୃଷ୍ଟି କରିବ ବୋଲି ମୋର ଆଶା ଓ ବିଶ୍ୱାସ । ମୁଁ ଏହି ପୁସ୍ତକର ସଫଳତା କାମନା କରୁଛି ।

ନବୀନ ପଟ୍ଟନାୟକ





# ସୃଜନଶୀଳତା

ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ
ଅର୍ଥ ଓ ସରକାରୀ
ଉଦ୍ୟୋଗ ମନ୍ତ୍ରୀ

ବରିଷ୍ଠ ତଥା ବେଶ୍ ଜଣାଶୁଣା ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ରାଜନୈତିକ ବ୍ୟକ୍ତିମାନଙ୍କ ସମ୍ପର୍କରେ ଜାଣିବା ପାଇଁ ଜନସାଧାରଣଙ୍କ ଉତ୍ସୁକତାକୁ ଦୃଷ୍ଟିରେ ରଖି ଶ୍ରୀ ମଙ୍ଗରାଜ 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍ସ' ଓ 'ଗୁମର କଥା' ପ୍ରଭୃତି ଯେଉଁ ରାଜନୈତିକଧର୍ମୀ ପୁସ୍ତକ ପ୍ରକାଶ କରିଛନ୍ତି ତାହା ପାଠକମାନଙ୍କ ଦ୍ୱାରା ବେଶ୍ ଆଦୃତ ହୋଇପାରିଛି । ତାଙ୍କ ସୃଜନଶୀଳତାର ଅନ୍ୟତମ ଅବଦାନ 'କ୍ୟାପିଟାଲ ଡାଏରୀ' ମଧ୍ୟ ପାଠକମାନଙ୍କର ଆଶା ପୂରଣ କରିବ ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଜଣେ ସୁଦକ୍ଷ ସାମ୍ବାଦିକ ଓ ସଂପାଦକ ହିସାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିବା ଜୀମୂତ ମଙ୍ଗରାଜଙ୍କ ସାରସ୍ୱତ ସାଧନାର ଉତ୍ତୋରତର ଉନ୍ନତି କାମନା କରିବା ସଙ୍ଗେସଙ୍ଗେ ମୁଁ 'କ୍ୟାପିଟାଲ ଡାଏରୀ' ପୁସ୍ତକର ସଫଳତା କାମନା କରୁଛି ।

ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ





# ଉଜ୍ଜ୍ୱଳତାର ଆଭାସ

ସୂର୍ଯ୍ୟ ନାରାୟଣ ପାତ୍ର
ରାଜସ୍ୱ, ବିପର୍ଯ୍ୟୟ
ପରିଚାଳନା, ସୂଚନା
ଓ ଲୋକସମ୍ପର୍କ ମନ୍ତ୍ରୀ

ପ୍ରିୟ ଜୀମୂତ ବାବୁ,

ଆପଣଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ । ସୂର୍ଯ୍ୟ ଉଦୟରୁ ଦିବସର ଉଜ୍ଜ୍ୱଳତାର ଆଭାସ ମିଳିବା ପରି ଆପଣଙ୍କ ସାମ୍ବାଦିକ ଏବଂ ଲେଖକ ଜୀବନର ଅଧ୍ୟାୟଟି ଆପଣଙ୍କ ଦ୍ୱାରା ଭବିଷ୍ୟତର ସାରସ୍ୱତ ଭଣ୍ଡାର ଅଭିବୃଦ୍ଧିର ଭୂୟସୀ ଆଲେଖ୍ୟ ବହନ କରିଆସିଛି । ରାଜନୀତି ଓ ସାମ୍ବାଦିକତାକୁ ଅତ୍ୟନ୍ତ ମନନଶୀଳ ଭାବେ ଦକ୍ଷତାର ସହ ପ୍ରକାଶ କରିବାରେ ଆପଣଙ୍କ ଦ୍ୱାରା ପ୍ରକାଶିତ ସମ୍ବାଦପତ୍ର 'ନେତା' ଯେପରି ଜନାଦୃତ ସେହିପରି ଆପଣଙ୍କ ଦ୍ୱାରା ଲିଖିତ 'ମୁହାଁମୁହିଁ', 'ଗୁମର କଥା', 'ଆସେମ୍ବ୍ଲି ଜୋକ୍ସ' ରାଜନୈତିକ ପୁସ୍ତକଗୁଡ଼ିକ ପାଠକମାନଙ୍କ ମଧ୍ୟରେ ଶିହରଣ ଖେଳାଇ ପାରିଛି । ଆପଣଙ୍କର ବୁଦ୍ଧିମତା ଓ ରଚନାଶୈଳୀର ଗରିମାକୁ ନେଇ ପ୍ରକାଶ ପାଇଥିବା 'କ୍ୟାପିଟାଲ ଡାଏରୀ' ପୁସ୍ତକଟି ତାହାର ଅଗଣିତ ପାଠକମାନଙ୍କ ପାଇଁ ଖୁବ୍ ରୁଚିକର ଏବଂ ଚିତପ୍ରସାଦକ ପ୍ରଶଂସାବଳୀରେ ମଣ୍ଡିତ ହେବ ବୋଲି ମୁଁ ଆଶା କରୁଛି । ଏହି ମହତ୍ ପ୍ରଚେଷ୍ଟା ନିମନ୍ତେ ଆପଣଙ୍କୁ ମୁଁ ସାଧୁବାଦ ଜଣାଉଛି । 'କ୍ୟାପିଟାଲ ଡାଏରୀ' ପରି ଅନେକ ପୁସ୍ତକ ଆପଣ ଆଗାମୀ ଦିନରେ ରଚନା କରି ପାଠକମାନଙ୍କୁ ଆନନ୍ଦ ପ୍ରଦାନ କରନ୍ତୁ ଏହାହିଁ ମୋର କାମନା ।

[signature] ୮.୬.୨୧।୧୨





## ବଳିଷ୍ଠ ଉପସ୍ଥାପନା

**ପ୍ରଫୁଲ୍ଲ ସାମଲ**
ପର୍ଯ୍ୟଟନ, ସଂସ୍କୃତି ଓ
ସମବାୟ ମନ୍ତ୍ରୀ

ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବାର ଜାଣି ମୁଁ ବିଶେଷ ଆନନ୍ଦିତ । ପୂର୍ବରୁ ତାଙ୍କ ଦ୍ୱାରା ଲିଖିତ ରାଜନୈତିକ ପୁସ୍ତକ 'ମୁହାଁମୁହିଁ', 'ଆସେମ୍ବ୍ଲି ଜୋକ୍ସ', 'ଗୁମର କଥା' ପୁସ୍ତକଗୁଡ଼ିକ ପାଠକୀୟ ସ୍ୱୀକୃତି ଲାଭ କରିସାରିଛି । ଜୀମୂତ ମଙ୍ଗରାଜ ସାଂପ୍ରତିକ ରାଜନୈତିକ ଗତିବିଧିକୁ ସୂକ୍ଷ୍ମ ନିରୀକ୍ଷଣ କରି ଚମତ୍କାର ବିଶ୍ଳେଷଣ ପୂର୍ବକ ନିଜସ୍ୱ ବଳିଷ୍ଠ ଉପସ୍ଥାପନା ମାଧ୍ୟମରେ ସମାଜକୁ ଉଚ୍ଚକୋଟୀର ବାର୍ତ୍ତା ପ୍ରଦାନ କରିବାରେ ସିଦ୍ଧହସ୍ତ । ମୁଁ ତାଙ୍କର ଏହି ନବୀନ ସାରସ୍ୱତ ସୃଷ୍ଟିର ସଫଳ କାମନା କରୁଛି ।





ରଘୁନାଥ ମହାନ୍ତି
ଶିଳ୍ପ, ଇସ୍ପାତ ଓ ଖଣି
ଏବଂ
ସଂସଦୀୟ ବ୍ୟାପାର ମନ୍ତ୍ରୀ

## ଆମୋଦ ପ୍ରଦାନ କରିବ

'ନେତା'ର ସଂପାଦକ ତଥା ଓଡ଼ିଶାର ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ଖୁବ୍ ଆନନ୍ଦିତ । ଗଠନମୂଳକ ସମାଲୋଚନା ଦ୍ୱାରା ମଣିଷ ଉତମ ମାର୍ଗ ଅନୁସରଣ କରିଥାଏ । ରାଜନୈତିକ ବ୍ୟକ୍ତିବିଶେଷ ଜନତାଙ୍କ ପ୍ରତିନିଧି ଭାବେ କାର୍ଯ୍ୟ କରିବା ସମୟରେ ବିଭିନ୍ନ ପ୍ରସଙ୍ଗ ଉତ୍‌ଥାପନ କରିଥା'ନ୍ତି । ଏହିସବୁ ପ୍ରସଙ୍ଗ ମଧରୁ କିଛି ଆମୋଦଦାୟକ ପ୍ରସଙ୍ଗ 'କ୍ୟାପିଟାଲ ଡାଏରୀ'ରେ ସ୍ଥାନ ପାଇଥିବା ଜାଣି ମୁଁ ବହୁତ ଖୁସି । ଆମ ରାଜ୍ୟରେ ଏଭଳି ପୁସ୍ତକ ସବୁ ରାଜନୈତିକ ଦଳର ନେତାମାନଙ୍କୁ ନିଶ୍ଚିତ ଭାବେ ଆମୋଦପ୍ରଦାନ କରିବ ବୋଲି ମୋର ପୂର୍ଣ୍ଣ ଆଶା ଓ ବିଶ୍ୱାସ । 'କ୍ୟାପିଟାଲ ଡାଏରୀ' ପ୍ରକାଶନର ସଫଳତା କାମନା ସହ ପୁସ୍ତକର ବହୁଳ ପ୍ରସାର ଆଶା କରୁଛି ।

ରଘୁନାଥ ମହାନ୍ତି





# ଉପାଦେୟ

ଦେବୀପ୍ରସାଦ ମିଶ୍ର
ଜଙ୍ଗଲ ଓ
ପରିବେଶ ମନ୍ତ୍ରୀ

ମୁଁ ଅତ୍ୟନ୍ତ ଆନନ୍ଦିତ ଯେ ବିଭିନ୍ନ ରାଜନୈତିକ ବ୍ୟକ୍ତିଙ୍କର ଆମୋଦଦାୟକ ପ୍ରସଙ୍ଗ ଉପରେ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବାରୁ । ଏହା ପୂର୍ବରୁ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'ମୁହାଁମୁହିଁ', 'ଆସେମ୍ଲି ଜୋକ୍ସ' ଓ 'ଗୁମର କଥା' ବେଶ୍ ଚହଳ ପକାଇବା ସହିତ ଜନାଦୃତ ହୋଇଛି । ରାଜନୈତିକ ବ୍ୟକ୍ତିମାନଙ୍କର ବହୁ ମଜାଳିଆ, ଲଘୁମନ୍ତବ୍ୟ ତଥା ସେମାନଙ୍କ ଜୀବନର କେତେକ ନିଛକ ସତ୍ୟ ଘଟଣାକୁ ଲେଖନୀ ମାଧମରେ ବାନ୍ଧି ରଖିବାର ପ୍ରଚେଷ୍ଟା ବାସ୍ତବିକ ଅନନ୍ୟ । ରାଜ୍ୟର ରାଜନୈତିକ ପେଡ଼ିରୁ ବହୁ ଅନାଲୋଚିତ ଓ ଅକୁହା କଥାକୁ ନିଜ ପୁସ୍ତକରେ ସ୍ଥାନ ଦେବା ହେଉଛି ଜୀମୂତ ମଙ୍ଗରାଜଙ୍କ ସାତ୍ୟନ୍ତତା । ମୋର ଦୃଢ଼ ବିଶ୍ୱାସ 'କ୍ୟାପିଟାଲ ଡାଏରୀ' ବହୁ ଆମୋଦଦାୟକ ତଥା ଉପାଦେୟ ଲେଖାରେ ସମୃଦ୍ଧ ହୋଇ ରାଜନୈତିକ ସଚେତନତା ସୃଷ୍ଟି କରିବାରେ ସହାୟକ ହେବ । ଜୀମୂତ ମଙ୍ଗରାଜଙ୍କ ଲେଖନୀ ନିରବଛିନ୍ନ ଭାବେ ଚାଲିଥାଉ । ଏହା କାମନା କରିବା ସହ 'କ୍ୟାପିଟାଲ ଡାଏରୀ' ପ୍ରକାଶନର ସର୍ବସଫଳତା ମଧ୍ୟ କାମନା କରୁଛି ।

ଦେବୀପ୍ରସାଦ ମିଶ୍ର





# ପାଠକୀୟ ସ୍ୱୀକୃତି ପାଇବ

ମହେଶ୍ୱର ମହାନ୍ତି
ପଂଚାୟତିରାଜ ମନ୍ତ୍ରୀ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କର ରାଜନୈତିକ ବିଷୟବସ୍ତୁ ଉପରେ ଆଧାରିତ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶନର ଶୁଭ ଅବସରରେ ଜୀମୂତ ମଙ୍ଗରାଜଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ । ରାଜନୈତିକ ପୃଷ୍ଠଭୂମିଉପରେ ପୂର୍ବରୁ ତାଙ୍କ ଦ୍ୱାରା ଲିଖିତ 'ମୁହାଁମୁହିଁ', 'ଆସେମ୍ବ୍ଲି ଜୋକ୍ସ', 'ଗୁମର କଥା' ପ୍ରଭୃତି ପୁସ୍ତକଗୁଡ଼ିକ ବେଶ୍ ସୁଖପାଠ୍ୟ ହୋଇଥିଲା । ରାଜନୈତିକ ବିଷୟବସ୍ତୁକୁ ନେଇ ଏହି ପୁସ୍ତକ ଗୁଡ଼ିକ ରଚନା ହୋଇଥିବାବେଳେ ଏଥିରେ ସତ୍ୟତା ଥିବାରୁ ତାହା ଅଧିକ ଆଦରଣୀୟ ହେଉଛି । ପୂର୍ବ ପୁସ୍ତକ ପରି ଜୀମୂତ ମଙ୍ଗରାଜଙ୍କର ନବ ପ୍ରକାଶିତ ପୁସ୍ତକ 'କ୍ୟାପିଟାଲ ଡାଏରୀ' ମଧ୍ୟ ପାଠକୀୟ ସ୍ୱୀକୃତି ପାଇବ ବୋଲି ଆଶା ଓ ବିଶ୍ୱାସ । କ୍ୟାପିଟାଲ ଡାଏରୀର ସାଫଲ୍ୟ କାମନା ଏବଂ ଜୀମୂତ ମଙ୍ଗରାଜଙ୍କର ଲେଖକୀୟ ଉନ୍ନତି କାମନା କରୁଛି ।





ପ୍ରଦୀପ ମହାରଥୀ
କୃଷି ମନ୍ତ୍ରୀ

## ସୁଖପାଠ୍ୟ

ବିଶିଷ୍ଟ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବାର ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ରାଜନୀତି ସହ ଜଡ଼ିତ ବହୁ ମଜାଳିଆ ଓ ଆମୋଦପ୍ରମୋଦ ଭରା ପ୍ରସଙ୍ଗକୁ ନେଇ ଜୀମୂତ ମଙ୍ଗରାଜ ସୁଖପାଠ୍ୟ ସାହିତ୍ୟ ସୃଷ୍ଟି କରିପାରିଛନ୍ତି । ତାଙ୍କ ଦ୍ୱାରା ଲିଖିତ 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍ସ', 'ଗୁମର କଥା' ଆଦି ପୁସ୍ତକ ବେଶ୍ ଜନାଦୃତ ହୋଇପାରିଛି । ମୋର ଦୃଢ଼ ବିଶ୍ୱାସ 'କ୍ୟାପିଟାଲ ଡାଏରୀ' ପୁସ୍ତକ ରାଜ୍ୟର ପାଠକ ମହଲରେ ବେଶ୍ ଆଦୃତ ଲାଭ କରିବ । ଜୀମୂତ ମଙ୍ଗରାଜଙ୍କ ଲେଖନୀ ମୁନରୁ ଗୋଟିଏ ପରେ ଗୋଟିଏ ରାଜନୈତିକଧର୍ମୀ ପୁସ୍ତକ ସୃଷ୍ଟି ହେଉ ଏହା ହିଁ ମୋର କାମନା ।

ପ୍ରଦୀପ ମହାରଥୀ





# ଲୋକପ୍ରିୟ

ବିକ୍ରମ କେଶରୀ ଆରୁଖ
ଗ୍ରାମ୍ୟ ଉନ୍ନୟନ ଓ
ଆଇନ ମନ୍ତ୍ରୀ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବାର ଜାଣି ମୁଁ ବିଶେଷ ଆନନ୍ଦିତ । ଗୋଟିଏ ପଟେ ଜୀମୂତ ମଙ୍ଗରାଜ ସଂପାଦକ ଅନ୍ୟପଟେ ସାମ୍ବାଦିକ ପୁଣି ରାଜନୈତିକଧର୍ମୀ ସାହିତ୍ୟ ରଚନା କରି ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ତାଙ୍କର ସମ୍ବାଦପତ୍ର 'ନେତା' ଯେଉଁଭଳି ଜନାଦୃତ ସେହିଭଳି 'ମୁହାଁମୁହିଁ', 'ଗୁମର କଥା', 'ଆସେମ୍ବ୍ଲି ଜୋକ୍ସ' ଆଦି ରାଜନୈତିକଧର୍ମୀ ପୁସ୍ତକଗୁଡ଼ିକ ଲୋକପ୍ରିୟ ଓ ସୁଖପାଠ୍ୟ । ମୋର ଦୃଢ଼ ବିଶ୍ୱାସ 'କ୍ୟାପିଟାଲ ଡାଏରୀ' ପୁସ୍ତକ ଜନସାଧାରଣଙ୍କ ନିକଟରେ ବେଶ୍ ଆଦୃତ ହେବ । 'କ୍ୟାପିଟାଲ ଡାଏରୀ' ଭଳି ଅନେକ ପୁସ୍ତକ ଜୀମୂତ ମଙ୍ଗରାଜ ଲେଖିଚାଲନ୍ତୁ ଏହା ହିଁ ମୋର କାମନା ।

ବିକ୍ରମ କେଶରୀ ଆରୁଖ





ଅଂଜଳି ବେହେରା
ମହିଳା ଓ ଶିଶୁ ବିକାଶ ମନ୍ତ୍ରୀ

# ଚେତନାର ବାର୍ତ୍ତାବହ

ବରିଷ୍ଠ ସାମ୍ବାଦିକ ତଥା 'ନେତା' ସମ୍ବାଦପତ୍ରର ସଂପାଦକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକ ଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଖୁସି । ସାହିତ୍ୟ ହେଉଛି ରାଜନୀତିକ ଚେତନାର ବାର୍ତ୍ତାବହ । ଜନଜୀବନ ନିକଟରେ ଏହି ଚେତନାକୁ ନେଇ ପହଂଚାଇ ଦିଏ ସାହିତ୍ୟ । ସାହିତ୍ୟ ମାଧମରେ ଜନଚେତନା ହୁଏ ଜାଗ୍ରତ । ବିଭିନ୍ନ ରାଜନୈତିକ ମତବାଦକୁ ନିଜର ପରିସରଭୁକ୍ତ କରି କମନୀୟ କଳା ବିଳାସରେ ସେହି ଚେତନାକୁ ସାହିତ୍ୟ ପ୍ରକାଶ କରେ ଓ ସୃଷ୍ଟିକରେ ଜନଜାଗରଣ । 'କ୍ୟାପିଟାଲ ଡାଏରୀ' ନିଶ୍ଚିତ ଭାବେ ରାଜନୀତିକ ଚେତନାକୁ ଜନଜୀବନ ନିକଟରେ ପହଂଚାଇବାରେ ସଫଳ ହେବ । ମୁଁ ଏହି ଅବସରରେ 'କ୍ୟାପିଟାଲ ଡାଏରୀ' ପୁସ୍ତକର ସଫଳତା କାମନା କରୁଛି ।

ଅଞ୍ଜଳି ବେହେରା





# ଅଭାବ ପୂରଣ କରିବ

ପ୍ରସନ୍ନ ଆଚାର୍ଯ୍ୟ
ସ୍ୱାସ୍ଥ୍ୟ, ପରିବାର
କଲ୍ୟାଣ, ପେନ୍‌ସନ୍
ଓ ଅଭିଯୋଗ
ପ୍ରଶାସନ ମନ୍ତ୍ରୀ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ଖୁବ୍ ଆନନ୍ଦିତ । ପୂର୍ବରୁ ଜୀମୂତ ମଙ୍ଗରାଜଙ୍କର ରାଜନୈତିକଧର୍ମୀ ପୁସ୍ତକ 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍‌ସ' ଓ 'ଗୁମର କଥା' ପ୍ରକାଶ ପାଇସାରିଛି । ଏହି ପୁସ୍ତକଗୁଡ଼ିକ ପାଠକମାନଙ୍କ ଦ୍ୱାରା ବେଶ୍ ଆଦୃତ ହୋଇସାରିଛି । ଓଡ଼ିଶାରେ ରାଜନୈତିକଧର୍ମୀ ପୁସ୍ତକର ଅଭାବ ଥିବାବେଳେ ଜୀମୂତ ମଙ୍ଗରାଜ ଯେଭଳି ଭାବେ ରାଜନୈତିକଧର୍ମୀ ପୁସ୍ତକ ଲେଖିଚାଲିଛନ୍ତି ତାହା ଏହି ଅଭାବକୁ ପୂରଣ କରିବ ବୋଲି ମୋର ଆଶା ଓ ବିଶ୍ୱାସ । ଜୀମୂତ ମଙ୍ଗରାଜଙ୍କର ଅନ୍ୟ ପୁସ୍ତକ ପରି 'କ୍ୟାପିଟାଲ ଡାଏରୀ' ମଧ୍ୟ ପାଠକଙ୍କ ଦ୍ୱାରା ସ୍ୱୀକୃତି ଓ ଆଦର ଲାଭ କରିବ ବୋଲି ମୁଁ ଆଶା କରୁଛି । ଉଭୟ 'କ୍ୟାପିଟାଲ ଡାଏରୀ' ଓ ଜୀମୂତ ମଙ୍ଗରାଜଙ୍କର ମୁଁ ସଫଳତା କାମନା କରୁଛି ।





## ପ୍ରଶଂସିତ ହେବ

ଉଷା ଦେବୀ
ହସ୍ତତନ୍ତ, ବୟନଶିଳ୍ପ,
ବିଜ୍ଞାନ ଓ
କାରିଗରୀ କୌଶଳ ମନ୍ତ୍ରୀ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ପୂର୍ବରୁ ରାଜନୈତିକଧର୍ମୀ ପୁସ୍ତକ 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍‌ସ' ଓ 'ଗୁମର କଥା' ପାଠକମାନଙ୍କ ଦ୍ୱାରା ବହୁଳ ଭାବେ ପ୍ରଶଂସିତ ଓ ଆଦୃତ ହୋଇପାରିଛି । ରାଜନୈତିକ ବ୍ୟକ୍ତିମାନଙ୍କ ଆମୋଦଦାୟକ ପ୍ରସଙ୍ଗ ଉପରେ ପର୍ଯ୍ୟବେସିତ ପୁସ୍ତକ 'କ୍ୟାପିଟାଲ ଡାଏରୀ' ମଧ୍ୟ ପାଠକୀୟ ସ୍ୱୀକୃତ ଲାଭ କରିବ ବୋଲି ମୋର ଆଶା ଓ ବିଶ୍ୱାସ । ମୁଁ ଏହି ପୁସ୍ତକର ସଫଳତା କାମନା କରୁଛି ।

Usha Devi





# ସ୍ୱତନ୍ତ୍ର ପରିଚୟ

ନିରଂଜନ ପୂଜାରୀ
ଖାଦ୍ୟ, ଯୋଗାଣ ଓ
ଖାଉଟୀ କଲ୍ୟାଣ ମନ୍ତ୍ରୀ

ବିଶିଷ୍ଟ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ଭିନ୍ନ ସ୍ୱାଦର ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ । 'ନେତା'ର ସଂପାଦକ ଜୀମୂତ ମଙ୍ଗରାଜ ସାମ୍ବାଦିକତା କ୍ଷେତ୍ରରେ ନିଜର ଦକ୍ଷତା ପ୍ରତିପାଦନ କରିଛନ୍ତି । ତାଙ୍କ ଦ୍ୱାରା ଲିଖିତ 'ଗୁମର କଥା', 'ଆସେମ୍ବ୍ଲି ଜୋକ୍ସ' ଓ 'ମୁହାଁମୁହିଁ' ପାଠକ ପାଠିକାମାନଙ୍କ ମହଲରେ ବିଶେଷ ଆଦୃତ ହୋଇ ତାଙ୍କ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଛି । ରାଜନୈତିକ ଗତିବିଧିର ଆଧାରରେ ଜୀମୂତ ମଙ୍ଗରାଜଙ୍କ ନିଜସ୍ୱ ଶୈଳୀରେ ଲିଖିତ କଥାବସ୍ତୁର ସମ୍ଭାରକୁ ନେଇ ଆତ୍ମପ୍ରକାଶ କରୁଥିବା ପୁସ୍ତକ 'କ୍ୟାପିଟାଲ ଡାଏରୀ' ପାଠକୀୟ ସ୍ୱୀକୃତି ଲାଭ କରିବ ବୋଲି ମୋର ଆଶା ଓ ବିଶ୍ୱାସ । 'କ୍ୟାପିଟାଲ ଡାଏରୀ'ର ମୁଁ ସମସ୍ତ ସଫଳତା କାମନା କରୁଛି ।

ନିରଞ୍ଜନ ପୂଜାରୀ





# ନିଆରାପଣ

ଅତନୁ ସବ୍ୟସାଚୀ ନାୟକ
ଶକ୍ତି ମନ୍ତ୍ରୀ

ସୁପ୍ରତିଷ୍ଠିତ ସାମ୍ବାଦିକ ତଥା ରାଜନୀତି ବିଶ୍ଳେଷକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'କ୍ୟାପିଟାଲ ଡାଏରୀ' ରାଜନୈତିକଧର୍ମୀ ପୁସ୍ତକ ପ୍ରକାଶ ପାଉଥିବାର ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ପୂର୍ବରୁ ପ୍ରକାଶ ପାଇଥିବା ଜୀମୂତ ମଙ୍ଗରାଜଙ୍କର 'ମୁହାଁମୁହିଁ', 'ଆସେମ୍ବ୍ଲି ଜୋକ୍ସ', 'ଗୁମର କଥା' ରାଜନୈତିକଧର୍ମୀ ପୁସ୍ତକ ପରି ଏହି 'କ୍ୟାପିଟାଲ ଡାଏରୀ' ସୁଖପାଠ୍ୟ ଓ ଉପାଦେୟ ହେବ ବୋଲି ଆଶା କରୁଛି । ସାଂପ୍ରତିକ ରାଜନୈତିକ ଦୃଶ୍ୟପଟ୍ଟକୁ ଅନୁଶୀଳନ ଓ ତର୍ଜମା କରିବାରେ ଜୀମୂତ ମଙ୍ଗରାଜ ସିଦ୍ଧହସ୍ତ । ତାଙ୍କର ଦୃଷ୍ଟି ଓ ଦର୍ଶନରେ ନିଆରାପଣ ଥାଏ । ପ୍ରକାଶଶୈଳୀରେ ସରଳ ଓ ସାବଲୀଳ ଥିଲେ ମଧ୍ୟ ଏହା ମଧ୍ୟରେ ଗମ୍ଭୀର ବିଶ୍ଳେଷଣ ଥାଏ । ତାଙ୍କର ବ୍ୟଙ୍ଗାତ୍ମକ ଦୃଷ୍ଟିଭଙ୍ଗୀ ବିଶେଷ ଦୃଷ୍ଟି ଆକର୍ଷଣ କରେ । 'କ୍ୟାପିଟାଲ ଡାଏରୀ' ଏହିପରି ଅନେକ ଲେଖାରେ ସମୃଦ୍ଧ । ଏହି ପୁସ୍ତକଟି ସାଧାରଣ ପାଠକ ଓ ସମାଲୋଚକ ଉଭୟଙ୍କ ଦ୍ୱାରା ଗ୍ରହଣୀୟ ହେବା ସହ ବିପୁଳ ପାଠକୀୟତା ହାସଲ କରିବ ବୋଲି ଆଶା କରୁଛି ।





# ବଧାଇ

ସଂଜୀବ କୁମାର ସାହୁ
ବାଣିଜ୍ୟ ଓ
ପରିବହନମନ୍ତ୍ରୀ

ଓଡ଼ିଶାର ଜଣାଶୁଣା ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବାର ଜାଣି ମୁଁ ଖୁବ୍ ଆନନ୍ଦିତ । 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍‌ସ', 'ଗୁମର କଥା' ପ୍ରଭୃତି ରାଜନୈତିକଧର୍ମୀ ପୁସ୍ତକଗୁଡ଼ିକ ପୂର୍ବରୁ ଜୀମୂତ ମଙ୍ଗରାଜ ପ୍ରକାଶ କରିଥିଲେ । ସଂପ୍ରତି ଜୀମୂତ ମଙ୍ଗରାଜ 'କ୍ୟାପିଟାଲ ଡାଏରୀ' ପୁସ୍ତକ ପ୍ରକାଶ କରୁଥିବାରୁ ତାଙ୍କୁ ମୁଁ ଅନ୍ତରରୁ ବଧାଇ ଜଣାଉଛି । ଓଡ଼ିଶାରେ ରାଜନୈତିକଧର୍ମୀ ପୁସ୍ତକର ଅଭାବ ରହୁଥିବା ବେଳେ ଜୀମୂତ ମଙ୍ଗରାଜ ତାଙ୍କର ଲେଖନୀ ଚାଳନା କରି ଓଡ଼ିଶାର ପାଠକମାନଙ୍କ ନିକଟରେ ରାଜନୈତିକଧର୍ମୀ ପୁସ୍ତକ ଗୋଟିଏ ପରେ ଗୋଟିଏ ପହଂଚାଇ ଦେଉଛନ୍ତି । ଅନ୍ୟ ପୁସ୍ତକଗୁଡ଼ିକ ପରି 'କ୍ୟାପିଟାଲ ଡାଏରୀ' ପାଠକମାନଙ୍କ ଦ୍ୱାରା ଆଦୃତ ହେବ ବୋଲି ମୋର ଆଶା ଓ ବିଶ୍ୱାସ । 'କ୍ୟାପିଟାଲ ଡାଏରୀ'ର ସଫଳତା କାମନା କରିବା ସହିତ ଜୀମୂତ ମଙ୍ଗରାଜ ତାଙ୍କର ଲେଖନୀ ଚାଳନା ଆହୁରି ଅଧିକ କରନ୍ତୁ ଏହା ହିଁ ମୋର କାମନା ।

ସଂଜୀବ କୁମାର ସାହୁ





# ସଫଳ ଉଦ୍ୟମ

ବଦ୍ରି ନାରାୟଣ ପାତ୍ର
ଉଚ୍ଚଶିକ୍ଷା, କ୍ରୀଡ଼ା ଓ
ଯୁବ ସେବା ମନ୍ତ୍ରୀ

ଆଗଧାଡ଼ିର ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କର ଭିନ୍ନସ୍ୱାଦର ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବାର ଜାଣି ମୁଁ ବିଶେଷ ଆନନ୍ଦିତ । ରାଜନୈତିକ ସମ୍ବାଦପତ୍ର 'ନେତା'ର ସଂପାଦକ ଜୀମୂତ ମଙ୍ଗରାଜ ସାମ୍ବାଦିକତା କ୍ଷେତ୍ରରେ ନିଜର ଦକ୍ଷତା ପ୍ରତିପାଦନ କରିବା ସହ ତାଙ୍କର ଅନବଦ୍ୟ ସୃଷ୍ଟି 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍ସ', 'ଗୁମର କଥା' ପ୍ରଭୃତି ପୁସ୍ତକ ମାଧ୍ୟମରେ ପାଠକ ପାଠିକାମାନଙ୍କ ନିକଟରେ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଛନ୍ତି । ରାଜନୀତିର ସାଂପ୍ରତିକ ଗତିବିଧିକୁ ଅତି ନିକଟରୁ ନିରୀକ୍ଷଣ କରି ନିଜସ୍ୱ ଶୈଳୀରେ ତାହାକୁ ସାଧାରଣ ଲୋକଙ୍କ ନିକଟରେ ଜୀମୂତ ମଙ୍ଗରାଜ ଯେଉଁଭଳି ଭାବେ ପହଂଚାଇ ଦିଅନ୍ତି ତାହା ଅନ୍ୟ କେଉଁଠି ଦେଖିବାକୁ ମିଳେନାହିଁ । ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'କ୍ୟାପିଟାଲ ଡାଏରୀ' ତାଙ୍କର ଏକ ସଫଳ ଉଦ୍ୟମ ଅଟେ । ପାଠକଙ୍କ ନିକଟରେ ଏହି 'କ୍ୟାପିଟଲ ଡାଏରୀ' ବେଶ୍ ଆଦୃତ ହେବ ବୋଲି ମୋର ଆଶା ଓ ବିଶ୍ୱାସ । ଏହି ସାରସ୍ୱତ ନବୀନ ସୃଷ୍ଟିର ମୁଁ ସମସ୍ତ ସଫଳତା କାମନା କରୁଛି ।

ବଦ୍ରି ନାରାୟଣ ପାତ୍ର





# ସଦିଚ୍ଛା

ପ୍ରତାପ ଜେନା
ବିଦ୍ୟାଳୟ ଓ
ଗଣଶିକ୍ଷା ମନ୍ତ୍ରୀ

ଜୀମୂତ ମଙ୍ଗରାଜଙ୍କ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ । 'କ୍ୟାପିଟାଲ ଡାଏରୀ' ପାଠକଙ୍କ ଦ୍ୱାରା ବହୁଳ ଭାବେ ଆଦୃତ ହେବ ବୋଲି ମୋର ବିଶ୍ୱାସ । 'କ୍ୟାପିଟାଲ ଡାଏରୀ'ର ସଫଳତା କାମନା କରିବା ସହିତ ଜୀମୂତ ମଙ୍ଗରାଜଙ୍କୁ ଅନେକ ସଦିଚ୍ଛା ।

ପ୍ରତାପ ଜେନା





## ମାଇଲଖୁଂଟ


**ପୁଷ୍ପେନ୍ଦ୍ର ସିଂହଦେଓ**
ଶ୍ରମ, ନିଯୁକ୍ତି, କ୍ଷୁଦ୍ର
ଜଳସେଚନ ମନ୍ତ୍ରୀ


ଓଡ଼ିଶାର ଜଣାଶୁଣା ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ । ରାଜନେତାମାନଙ୍କର ମଜାଳିଆ ପ୍ରସଙ୍ଗକୁ ନେଇ ପୁସ୍ତକ ଆକାରରେ ପ୍ରକାଶ କରିବାରେ ଜୀମୂତ ମଙ୍ଗରାଜ ସିଦ୍ଧହସ୍ତ ଅଟନ୍ତି । ରାଜନୈତିକ ସମ୍ବାଦପତ୍ର 'ନେତା' ପ୍ରକାଶ କରିବା ସହିତ 'ମୁହାଁମୁହିଁ', 'ଗୁମର କଥା', 'ଆସେମ୍ବ୍ଲି ଜୋକ୍ସ' ପ୍ରଭୃତି ଜୀମୂତ ମଙ୍ଗରାଜଙ୍କ ପୁସ୍ତକଗୁଡ଼ିକ ଓଡ଼ିଶା ସାହିତ୍ୟ ଜଗତରେ ଗୋଟିଏ ଗୋଟିଏ ମାଇଲଖୁଂଟ ହୋଇରହିବ । ତାଙ୍କ ଦ୍ୱାରା ଲିଖିତ 'କ୍ୟାପିଟାଲ ଡାଏରୀ' ପୁସ୍ତକଟି ପାଠକଙ୍କ ଦ୍ୱାରା ଆଦୃତ ହେବ ବୋଲି ମୋର ଆଶା ଓ ବିଶ୍ୱାସ । 'କ୍ୟାପିଟାଲ ଡାଏରୀ' ଜନାଦୃତି ଲାଭ କରୁ ଏହା ହିଁ କାମନା ।

ପୁଷ୍ପେନ୍ଦ୍ର ସିଂହ ଦେଓ





# ପାଥେୟ

ସାରଦା ପ୍ରସାଦ ନାୟକ
ଗୃହ ନିର୍ମାଣ ଓ ନଗର
ଉନ୍ନୟନ ମନ୍ତ୍ରୀ

ବରିଷ୍ଠ ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ବହୁତ ଖୁସି । କେବଳ ମୁଁ ନୁହେଁ ମୋ ପରି ସମସ୍ତ ରାଜନୈତିକ ନେତାମାନେ ମଧ୍ୟ ଏଭଳି ଏକ ରାଜନୈତିକ ପୁସ୍ତକ ପ୍ରକାଶ ପାଇବା ଜାଣି ଖୁସି ହେବେ ବୋଲି ମୁଁ ଭାବୁଛି । ରାଜନୈତିକ ବ୍ୟକ୍ତିବିଶେଷ ହେଉଛନ୍ତି ଜନତାଙ୍କ ପ୍ରତିନିଧି । ସେମାନଙ୍କର କାର୍ଯ୍ୟକଳାପ, ଆଚାର ବ୍ୟବହାର ତଥା କଥୋପକଥନ ସର୍ବଦା ମାର୍ଜିତ ଓ ଲୋକାଭିମୁଖୀ ହେବା ବିଧେୟ । ଓଡ଼ିଶାରେ ଜୀମୂତ ମଙ୍ଗରାଜ ବିଭିନ୍ନ ସମୟରେ ଭିନ୍ନଭିନ୍ନ ସ୍ୱାଦର ରାଜନୈତିକ ପୁସ୍ତକ ରଚନା କରୁଛନ୍ତି । ରାଜ୍ୟରେ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକ ପୁସ୍ତକଗୁଡ଼ିକ ସମସ୍ତଙ୍କ ପାଇଁ ପାଥେୟ ହେବ ବୋଲି ମୋର ଆଶା । 'କ୍ୟାପିଟାଲ ଡାଏରୀ'ର ସଫଳ କାମନା କରୁଛି ।

ସାରଦା ପ୍ରସାଦ ନାୟକ





# ପ୍ରଭାବ ପକାଇବ

ରମେଶ ମାଝୀ
ସୂଚନା, ପ୍ରଯୁକ୍ତି, ମତ୍ସ୍ୟ ଓ ପଶୁସମ୍ପଦ ବିକାଶ, ଅନୁସୂଚିତ ଜନଜାତି ଓ ଅନୁସୂଚିତ ଜାତି ଉନ୍ନୟନ ମନ୍ତ୍ରୀ

ରାଜନୈତିକ ସମ୍ବାଦପତ୍ର 'ନେତା'ର ସଂପାଦକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବା ଜାଣି ମୁଁ ଆନନ୍ଦିତ । ଓଡ଼ିଶାର ସାଂପ୍ରତିକ ରାଜନୈତିକ ପ୍ରେକ୍ଷାପଟରେ ଦୃଶ୍ୟମାନ ହେଉଥିବା ଛୋଟ-ବଡ଼ ଅନେକ ଘଟଣା, ଅନୁଭବ ଏବଂ ଅନୁଭୂତି ଏହି ପୁସ୍ତକରେ ପ୍ରତିଫଳିତ ହୋଇଛି । ସାଧାରଣ ଜନଜୀବନ ସହ ରାଜ୍ୟର ରାଜନୈତିକ ବ୍ୟକ୍ତିବିଶେଷଙ୍କ ଜୀବନଶୈଳୀ ଓ ବିଚାରଧାରା ଉପରେ ଏହି ପୁସ୍ତକଟି ଗଭୀର ପ୍ରଭାବ ପକାଇବ ବୋଲି ମୋର ଦୃଢ଼ ବିଶ୍ୱାସ । ଏହି ଅବସରରେ ପୁସ୍ତକର ଲେଖକ ଜୀମୂତ ମଙ୍ଗରାଜଙ୍କୁ ମୁଁ ଆନ୍ତରିକ ଅଭିନନ୍ଦନ ଜଣାଉଛି । 'କ୍ୟାପିଟାଲ ଡାଏରୀ'ର ବହୁଳ ପ୍ରସାର କାମନା କରୁଛି ।

ରମେଶ ଚନ୍ଦ୍ର ମାଝୀ





# ପ୍ରିୟ ହେବ

ଭୂପିନ୍ଦର ସିଂହ
ବିରୋଧୀ ଦଳ ନେତା
ଓଡ଼ିଶା ବିଧାନସଭା

ଓଡ଼ିଶାର ଆଗଧାଡ଼ିର ସାମାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବାର ଜାଣି ମୁଁ ଅତ୍ୟନ୍ତ ଖୁସି । ପୂର୍ବରୁ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକ ପୁସ୍ତକ 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍ସ' ଓ 'ଗୁମର କଥା' ସାଧାରଣରେ ବହୁଳ ଭାବେ ଆଦୃତ ହୋଇଛି । ଭିତରକୁ ଯାଇ ଟିକିନିକି ଭାବେ ସତ୍ୟ କଥାକୁ ହୃଦୟଙ୍ଗମ କରି ତାହାକୁ ଜନସାଧାରଣଙ୍କ ସମ୍ମୁଖରେ ଜୀମୂତ ମଙ୍ଗରାଜ ପରିପ୍ରକାଶ କରିଥା'ନ୍ତି । ଅନ୍ୟ ପୁସ୍ତକଗୁଡ଼ିକ ପରି 'କ୍ୟାପିଟାଲ ଡାଏରୀ' ମଧ ପାଠକ ମହଲରେ ବେଶ୍ ପ୍ରିୟ ହୋଇପାରିବ ବୋଲି ମୁଁ ଆଶା କରୁଛି । 'କ୍ୟାପିଟାଲ ଡାଏରୀ' ସମସ୍ତଙ୍କ ଦ୍ୱାରା ଆଦୃତ ହେବ ବୋଲି ମୋର ଆଶା ଓ ବିଶ୍ୱାସ ।

ଭୂପିନ୍ଦର ସିଂହ





# ଭିନ୍ନ ସ୍ୱାଦର ପୁସ୍ତକ


ଅରୁଣ ସାହୁ
ସରକାରୀ ଉପମୁଖ୍ୟ
ସଚେତକ
ଓଡ଼ିଶା ବିଧାନସଭା


'ମୁହାଁମୁହିଁ', 'ଆସେମ୍ବ୍ଲି ଜୋକ୍‌ସ' ଓ 'ଗୁମର କଥା' ଏ ତିନୋଟି ଭିନ୍ନ ଧରଣର ପୁସ୍ତକ ପ୍ରକାଶ ପାଇଲା ପରେ ଆଉ ଏକ ଭିନ୍ନ ସ୍ୱାଦର ପୁସ୍ତକ 'କ୍ୟାପିଟାଲ୍ ଡାଏରୀ' ପ୍ରକାଶ ପାଇଛି ।

କାହିଁକି ଆପଣ ଏମିତି କରନ୍ତି ? ବୁଝି ହୁଏନି । ଆପଣ ଜୀମୂତ ଭାଇ-ସିନା ଅବୋଧ-କିନ୍ତୁ ଆପଣଙ୍କ ଲେଖା ଏବଂ ଉଦେଶ୍ୟ ଅତ୍ୟନ୍ତ ସରଳ, ବୋଧଗମ୍ୟ ଏବଂ ସୁଖଦ ତଥା ପ୍ରେରଣାଯୁକ୍ତ ।

ନୂଆକରି ଦେଖେଇବାର ଉତ୍ସାହ ଯେଉଁଠି ଥାଏ- ସବୁବେଳେ ସିଏ ନିଜେ ନିଜକୁ ନୂଆ ଭାବରେ ପାଇଥାଏ ଏବଂ ଅନ୍ୟମାନେ ଇଛା ଉଜ୍ଜୀବୀତ ରଖିଥାନ୍ତି-ବହୁକିଛି ନୂଆ ଆପଣଙ୍କଠାରୁ ପାଇବାକୁ । 'କ୍ୟାପିଟାଲ୍ ଡାଏରୀ'ର ସଫଳତା ଅନସ୍ୱୀକାର୍ଯ୍ୟ ।

ଅରୁଣ






## ଚହଳ ପକାଇବ

ସାନନ୍ଦ ମାଣ୍ଡି
ଉପବାଚସ୍ପତି
ଓଡ଼ିଶା ବିଧାନସଭା

ବେଶ୍ ଜଣାଶୁଣା ସାମ୍ବାଦିକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'କ୍ୟାପିଟାଲ ଡାଏରୀ' ପୁସ୍ତକ ପ୍ରକାଶ ପାଉଥିବା ଜାଣି ମୁଁ ବେଶ୍ ଖୁସି ହେଲି । ପୂର୍ବରୁ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'ମୁହାଁମୁହିଁ', 'ଆସେମ୍ବ୍ଲି ଜୋକ୍‌ସ' , 'ଗୁମର କଥା' ପ୍ରଭୃତି ରାଜନୈତିକ ଧର୍ମୀ ପୁସ୍ତକଗୁଡ଼ିକ ପାଠକ ମହଲରେ ବେଶ୍ ଚହଳ ପକାଇଥିଲା । ପୂର୍ବ ପୁସ୍ତକଗୁଡ଼ିକ ପରି କ୍ୟାପିଟାଲ ଡାଏରୀ ମଧ ଓଡ଼ିଶାର ପାଠକ ମହଲରେ ଚହଳ ପକାଇବ ବୋଲି ଆଶା କରୁଛି । 'କ୍ୟାପିଟାଲ ଡାଏରୀ'ର ସମସ୍ତ ସଫଳତା କାମନା କରୁଛି ।

ସାନନ୍ଦ ମାଣ୍ଡି



# ଅକୁହାକଥାର ପରିପ୍ରକାଶ

ଜୁଏଲ ଓରାମ
ପୂର୍ବତନ କେନ୍ଦ୍ରମନ୍ତ୍ରୀ
ତଥା
ଓଡ଼ିଶା ବିଜେପି
ସଭାପତି

ବହୁଚର୍ଚ୍ଚିତ ରାଜନୈତିକ ସମ୍ବାଦପତ୍ର 'ନେତା'ର ସଂପାଦକ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ପ୍ରକାଶ ପାଉଥିବାର ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ପୂର୍ବରୁ ଜୀମୂତ ମଙ୍ଗରାଜଙ୍କର ତିନୋଟି ରାଜନୈତିକଧର୍ମୀ ପୁସ୍ତକ 'ମୁହାଁମୁହିଁ, 'ଆସେମ୍ବ୍ଲି ଜୋକ୍ସ', 'ଗୁମର କଥା' ସାଧାରଣ ପାଠକ ବିଶେଷ କରି ରାଜନୈତିକ ବ୍ୟକ୍ତି ମହଲରେ ବେଶ୍ ଆଦୃତ ହୋଇଥିଲା । ଏମିତି ଦୀପ ତଳ ଅନ୍ଧାର ପରି ରାଜଧାନୀରେ ବହୁତ କିଛି ଘଟଣା ଘଟିଲେ ମଧ୍ୟ ତାହା ସାଧାରଣ ଲୋକଙ୍କ ପାଖରେ ପହଂଚି ପାରେନାହିଁ । ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ 'କ୍ୟାପିଟାଲ ଡାଏରୀ' ଓଡ଼ିଶା ରାଜନୀତିର ବହୁ ଅକୁହା କଥାକୁ ଲୋକଲୋଚନକୁ ନେଇଆସିବ ଏ ବିଶ୍ୱାସ ମୋର ଅଛି । ସଚ୍ଛତା ନାମରେ ଅନ୍ୟାୟୀ, ବ୍ୟଭିଚାରୀମାନଙ୍କର ମୁଖା ଖୋଲିଗଲେ ଗଣତନ୍ତ୍ରର ରୁଦ୍ଧଦ୍ୱାର ଆପେଆପେ ଖୋଲି ଖୋଲି ଯିବ । ମୋର ଆଶା ଓ ବିଶ୍ୱାସ ଜୀମୂତ ମଙ୍ଗରାଜଙ୍କ ଦ୍ୱାରା ଲିଖିତ ଭିନ୍ନ ସ୍ୱାଦର ରାଜନୈତିକଧର୍ମୀ ପୁସ୍ତକ 'କ୍ୟାପିଟାଲ ଡାଏରୀ' ସାଧାରଣ ପାଠକ ମହଲରେ ଆଦୃତ ହେବ ।

ଜୁଏଲ ଓରାମ

# ନବୀନ ଅପରେସନ୍

**ଡା**କ୍ତରୀ ଭାଷାରେ ବିଭିନ୍ନ ଅପରେସନ୍‌ର ଭିନ୍ନ ଭିନ୍ନ ନାମ ହୋଇଥାଏ । ଏଇ ଯେମିତି ବ୍ରେନ ଅପରେସନ୍, ହାର୍ଟ ଅପରେସନ୍, ଆଖି ଅପରେସନ୍, କାନ ଅପରେସନ୍, ଇତ୍ୟାଦି, ଇତ୍ୟାଦି । ଏବେ କିନ୍ତୁ ଏହି ଅପରେସନ୍‌ରେ ଆଉ ଏକ ନୂଆ ନାମ ଯୋଡ଼ି ହୋଇଯାଇଛି । ତାହା ହେଲା ନବୀନ ଅପରେସନ୍ । ୨୦୦୨ ମସିହା ଜୁଲାଇ ୯ ତାରିଖ ଦିନ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଯେଉଁ ଅପରେସନ୍‌ଟି କଲେ ତାହା ଅତ୍ୟନ୍ତ ରିସ୍କ ଥିଲେ ମଧ୍ୟ ସଫଳ ହେଲା । ନବୀନ ମୁଖ୍ୟମନ୍ତ୍ରୀ ହେବାପରେ ଏହି ଅପରେସନଟି ତାଙ୍କର ଥିଲା ପ୍ରଥମ । ଅପରେସନ୍‌ଟି କିନ୍ତୁ ଦୀର୍ଘ ସମୟ ଧରି ଚାଲିଥିଲା । ପ୍ରାୟ ୬ ଘଂଟା ଧରି ଅପରେସନ୍ ହୋଇଥିଲା । ଲେଖକରୁ ରାଜନୀତି ଜୀବନକୁ ଆସିଥିବା ନବୀନ ସେଦିନ ରାଜନୈତିକ ରୋଗୀଙ୍କ ପାଇଁ ସର୍ଜରୀ ସ୍ପେଶିଆଲିଷ୍ଟ ପାଲଟି ଯାଇଥିଲେ । ମାନେ ଅପରେସନ୍ ହୋଇଥିଲା ତାଙ୍କ ସଚିବାଳୟ କାର୍ଯ୍ୟାଳୟରେ । ଅପରେସନ୍ ଟେବୁଲ ଉପରେ ପକାଇ ଦିଆଯାଇଥିଲା ମନ୍ତ୍ରୀ ପରିଷଦକୁ । ନବୀନ କଇଁଚି, ବ୍ଲେଡ୍ ଧରି ଅପରେସନ୍ କଲେ । ଛ' ଘଂଟା ପରେ ଅପରେସନ୍ ଶେଷ ହେଲା । ଛୁଂଚି ସୂତାରେ ମନ୍ତ୍ରୀ ପରିଷଦକୁ ନବୀନ ସିଲେଇ କଲେ । ମନ୍ତ୍ରୀ ପରିଷଦ ପୁନର୍ଜନ୍ମ ଲାଭ କଲା । କିନ୍ତୁ ଅଦରକାରୀ ୩ଟି ମାଂସପେଶୀ ନଳିନୀ ମହାନ୍ତି, କମଳା ଦାସ, ପ୍ରଶାନ୍ତ ନନ୍ଦଙ୍କୁ ସେ ସେଥିରୁ କାଟି ବାହାରକୁ ଫୋପାଡ଼ିଦେଲେ । ସର୍ଜରୀ ସ୍ପେଶିଆଲିଷ୍ଟ ନବୀନଙ୍କ ମତ ହେଲା ଏହି ତିନୋଟି ମାଂସପେଶୀ ମନ୍ତ୍ରୀ ପରିଷଦ ଶରୀରରେ ରହିଥିଲେ ଦୁର୍ନୀତିର କ୍ୟାନସର ବ୍ୟାପିଯାଇଥାନ୍ତା । ପ୍ରଶଂସକଙ୍କ ମତରେ ବାବୁ ନବୀନ ଜଣେ ଭଲ ବଇଦ । ରୋଗୀକୁ ଦେଖି ଔଷଧ ଦେବାରେ ସେ ଅତ୍ୟନ୍ତ ସିଦ୍ଧହସ୍ତ । ଏଭଳି ଅପରେସନ ପାଇଁ ତାଙ୍କୁ ନୋବେଲ ପୁରସ୍କାର ମିଳିବ ହିଁ ମିଳିବ ।

# କମଳ ଯାକ ବାଳ

**ନ**ବୀନ ପଟ୍ଟନାୟକ ତାଙ୍କ ମନ୍ତ୍ରିମଣ୍ଡଳ ରୂପକ କମଳରୁ ବାଳ ବାଛିବା ଆରମ୍ଭ କରିଦେଲେ । ନବୀନ ଥିଲେ ଲେଖକ । ଜଣେ ଭାବୁକ ନହେଲେ ଲେଖକଟିଏ ହୋଇପାରିବ ନାହିଁ । ଅତି ଆକସ୍ମିକ ଭାବେ ତାଙ୍କର ରାଜନୀତିରେ ପ୍ରବେଶ । ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାର ୧୬ମାସ ପରେ ତାଙ୍କ ମନ୍ତ୍ରୀଙ୍କର ଦୁର୍ନୀତି ବାଛିବା ଆରମ୍ଭ ସେ କରିଦେଲେ । କ୍ଷୀରରୁ ଯେମିତି ପାଣିକୁ ଅଲଗା କରି ହେବ ନାହିଁ ସେହିପରି ନେତାଙ୍କଠାରୁ ଦୁର୍ନୀତିକୁ ବିଚ୍ଛିନ୍ନ କରିହେବ ନାହିଁ । ମାନେ ନେତା ଓ ଦୁର୍ନୀତି ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ । କିନ୍ତୁ ଖିଆଲି ଲେଖକ ନବୀନ ତାଙ୍କ ମନ୍ତ୍ରିମଣ୍ଡଳରେ କିଏ ଦୁର୍ନୀତିଗ୍ରସ୍ତ ନୁହେଁ ତାହା ବାଛିବା ପରିବର୍ତ୍ତେ

ଓଲଟା କାମ କରିଛନ୍ତି । ମାନେ ଦୁର୍ନୀତି ବାଛୁ ବାଛୁ ତାଙ୍କ ମନ୍ତ୍ରିମଣ୍ଡଳରେ ଆଉ ମନ୍ତ୍ରୀ ନଥିବେ । କମଳଗୁ ବାଳ ବାଛୁ ବାଛୁ କମଳ ଯେପରି ନଥିବ ସେହିପରି ଅବସ୍ଥା ହୋଇଯିବ । ବରଂ ନବୀନ ଦୁର୍ନୀତିକୁ ନୀତି କରିଦେଲେ ଏସବୁ ସମସ୍ୟା ଆଉ ଦେଖାଯାନ୍ତା ନାହିଁ ।

# ଓଜିପି ବନାମ୍ ନଳିନୀ

**ଓ**ଜିପି ଓରଫ ଓଡ଼ିଶା ଗଣପରିଷଦ ପ୍ରତି କୁଆଡ଼େ ନଳିନୀ ମହାନ୍ତିଙ୍କର ଅତିମାତ୍ରାରେ ଦୁର୍ବଳତା ଥିଲା । ଏହି ରିପୋର୍ଟ ଅନ୍ୟ କେହି ନୁହେଁ ଖୋଦ୍ ଗୁଇନ୍ଦା ବିଭାଗ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ଦେଲେ । କୁଆଡ଼େ ପୁରୀରେ ଯେଉଁ ଓଜିପିର ସମ୍ମିଳନୀ ହେଲା ତାହାର ସିଂହଭାଗ ବ୍ୟୟ ନଳିନୀ କରିଥିଲେ ବୋଲି ନବୀନଙ୍କୁ ଗୁଇନ୍ଦା ବିଭାଗ ରିପୋର୍ଟ ଦେଲେ । ଏହା କୁଆଡ଼େ କୌରବର ଖାଇ ପାଣ୍ଡବର ଜୟଗାନ କଲାପରି ହୋଇଥିଲା । ଖୋଦ୍ ଗୁଇନ୍ଦା ବିଭାଗର ମନ୍ତ୍ରୀ ହେଉଛନ୍ତି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ । ନଳିନୀଙ୍କ ଛାଇ ଦେଖିଲେ ଯେଉଁମାନେ ସହିପାରୁନଥିଲେ ସେମାନେ ଏଥିରେ ଇନ୍ଧନ ଯୋଗାଇଲେ । ଶେଷରେ ନଳିନୀଙ୍କର ମନ୍ତ୍ରୀପଦ ଗଲା । ଓଜିପି ନାମଟି ଯେ କେତେ ସାଂଘାତିକ ତାହା ଅନ୍ୟ କେହି ବୁଝନ୍ତୁ କି ନ ବୁଝନ୍ତୁ ନଳିନୀ ଯେ ନିଶ୍ଚିତ ବୁଝିଥିବେ ଏଥିରେ ଆଉ ସନ୍ଦେହ କରିବାର ନାହିଁ ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ହେଉଛନ୍ତି ଓଡ଼ିଶା ରାଜନୀତିର ପିତାମହ ।

ଦ୍ୱିତୀୟ ବ୍ୟକ୍ତି : କାହିଁକି ?

ପ୍ରଥମ ବ୍ୟକ୍ତି : ତାଙ୍କର ନିଷ୍ପତି ହେଉଛି ଚଟାପଟ । ଅସୁବିଧା ହେଲା ସଙ୍ଗେସଙ୍ଗେ ଖୁରମାରି ସଫା କରିଦିଅ । ହରେକୃଷ୍ଣ ମହତାବ, ବିଜୁ ପଟ୍ଟନାୟକ, ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ପରି ଅଭିଜ୍ଞ ରାଜନେତାମାନେ ଯାହା କରିବାକୁ ସାହସ କରିପାରୁନଥିଲେ ସେଭଳି କାମ ନବୀନ ପଟ୍ଟନାୟକ କରିପାରୁଛନ୍ତି ।

ମୂଳରୁ ମାଇଲେ ଯିବ ସରି, ଶତ୍ରୁ ସଙ୍ଗେ କିମ୍ପା କଳି ।

ଦ୍ୱିତୀୟ ବ୍ୟକ୍ତି : କିଛି ବୁଝିହେଲା ନାହିଁ ।

ପ୍ରଥମ ବ୍ୟକ୍ତି : ଏଇ ବିଜୟ, ଦିଲ୍ଲୀପ, ନଳିନୀ ସମସ୍ତେ ସାଫ୍ । ଆଉ ବିଷଦାନ୍ତ ଅଛି ଯେ ସେମାନେ କାମୁଡ଼ିବେ ?

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।



# ନିରଞ୍ଜନଙ୍କ ଚପଲ ଚୋରି

ଇଏ ନିରଞ୍ଜନ ଏକ ଅଦ୍ଭୁତ ଶକ୍ତିର ଅଧିକାରୀ । ଇଏ କଥା କଥାକେ ଲୋକଙ୍କୁ ବଶୀଭୂତ କରିପକାନ୍ତି । ମାନେ ଯେତେବଡ଼ ଶତ୍ରୁ ହେଉଥା'ନ୍ତୁ ପଛେ ତାଙ୍କ ସହିତ ଦୁଇପଦ କଥା ହୋଇଗଲେ ସେ ନରମି ଯିବେ ହିଁ ଯିବେ । ସେଇଥିପାଇଁ ତ କଂଗ୍ରେସରେ ନିରଞ୍ଜନ ପଟ୍ଟନାୟକଙ୍କ ନାମ ବାବା ନିରଞ୍ଜନ ଭାବେ ବେଶ୍ ଖ୍ୟାତ ହୋଇଗଲାଣି । ସେଦିନ ପି.ସି.ସି.ର ସାଧାରଣ ବୈଠକ ନୂଆପଲ୍ଲୀ କଲ୍ୟାଣ ମଣ୍ଡପଠାରେ ଚାଲିଥାଏ । ନିରଞ୍ଜନ ଶହେ ମହଣ ଓଜନର ଭାଷଣ ଦେଲେ ଯେ ତାକୁ ଆଉ ଟେକି ଧରିବା ପରି ଶକ୍ତି କାହାର ନଥିଲା । ତାଳିମାଡ଼ ହେଲା । ନିରଞ୍ଜନ ଭାରି ଖୁସି । ବହୁଦିନ ପରେ ସେ ଦଳର ନେତାଙ୍କ ସାମ୍ନାରେ ନିଜର ମନକଥା ବଖାଣି ଦେଲେ । ଭାଷଣ ସରିଲା । ନିରଞ୍ଜନ ଉଦ୍ୟତ ହେଲେ ଯିବା ପାଇଁ । କିନ୍ତୁ ସେ ତାଙ୍କର ଚପଲ ପାଇଲେ ନାହିଁ । ତାଙ୍କର ଚେଲା, ଚାମୁଣ୍ଡା ଲାଗିଗଲେ ଚପଲ ଖୋଜିବାରେ । ତଥାପି ବି ଚପଲ ମିଳିଲାନି । ଶେଷରେ ନିରଞ୍ଜନ ଖାଲି ପାଦରେ ଗଲେ । କେହି ଜଣେ ଭକ୍ତ ଯେ ରାମଚନ୍ଦ୍ରଙ୍କ କଠଉ ପୂଜା ପରି ତାଙ୍କ ଚପଲକୁ ଫୁଲ ଚନ୍ଦନ ଦେଇ ପୂଜା କରିବାକୁ ନେଇଥିବ ତାହା କ'ଣ ନିରଞ୍ଜନଙ୍କର ଆଉ ସନ୍ଦେହ କରିବାର ଅଛି ।

# ଗିରିଧରଙ୍କ ନୃତ୍ୟ

ପୂର୍ବତନ ମୁଖ୍ୟମନ୍ତ୍ରୀ ଗିରିଧର ଗମାଙ୍ଗ ରାଜନୀତିରୁ ସନ୍ୟାସ ନେବାପରେ ନାଚ, ଗୀତରେ ବେଶ୍ ମାତିଗଲେ । ମୁଖ୍ୟମନ୍ତ୍ରୀ ପଦରୁ ହଟିଯିବା ପରେ ଆଉ ରାଜନୀତିରେ ତାଙ୍କ ନାମ ସେମିତି ଚର୍ଚ୍ଚା ହେଲାନାହିଁ । ତେବେ କାଶୀପୁର ବ୍ଲକରେ ଅନାହାର ମୃତ୍ୟୁ ଅଭିଯୋଗ ହେବା ପରେ ଗିରିଧର ପୁଣି ଚେଙ୍ଗା ହୋଇଗଲେ । ତାଙ୍କର ଡିମାଣ୍ଡ କୁଆଡ଼େ ବେଶୀ । ସେ ଏହି ଅଂଚଳର ବିଧାୟକ ଏବଂ ସାଂସଦ ଥିଲେ । ତାଙ୍କ ପାଖରେ କୁଆଡ଼େ ଅନାହାର ମୃତ୍ୟୁ ସଂପର୍କରେ ଅଧିକ ତଥ୍ୟ ଅଛି । ନବୀନ ଏବଂ ଗିରିଧରଙ୍କ ମଧ୍ୟରେ ଆଲୋଚନା ହୋଇଥିଲା । ଏହି ଆଲୋଚନା ଅନାହାର ମୃତ୍ୟୁ ଅଭିଯୋଗକୁ ଘୋଡ଼ାଇବା ପାଇଁ ନା ଅନାହାର ମୃତ୍ୟୁ ରୋକିବା ପାଇଁ ଜଣାପଡ଼ିଲା ନାହିଁ । ନିନ୍ଦୁକ ମହଲ କହନ୍ତି ଯେ, ଗିରିଧର ଗମାଙ୍ଗଙ୍କ ପତ୍ନୀ ହେମା ଗମାଙ୍ଗ କଂଗ୍ରେସ ସାଂସଦ ଥିବାରୁ ଗିରିଧର ଗୋଟିଏ ଗୋଡ଼ କଂଗ୍ରେସରେ ଏବଂ ଜାନକୀ ତାଙ୍କୁ କ୍ଷମତାରୁ ହଟାଇଥିବାରୁ ତା'ର ପ୍ରତିଶୋଧ ନେବା ନିମନ୍ତେ ଆଉ ଗୋଟିଏ ଗୋଡ଼ ନବୀନଙ୍କଠାରେ ଥୋଇଛନ୍ତି । ଯାହାହେଲେ ନାଚ ବାଲାଟି ବାଜା ବାଜିଲେ ଥେଇ ଥେଇ ହୋଇ ଗୋଡ଼ ପଡ଼ିବ ହିଁ ପଡ଼ିବ ।

# ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ନକ୍ସଲ ଯେମିତି ମାତିଲେଣି ଓଡ଼ିଶା ଅବସ୍ଥା ଯେ କ'ଣ ହେବ ତାହା କହିହେଉନାହିଁ ।

ଦ୍ୱିତୀୟ ବ୍ୟକ୍ତି : ଏବେ ଆଉ ଭୟ କରିବାର ନାହିଁ ।

ପ୍ରଥମ ବ୍ୟକ୍ତି : କାହିଁକି ?

ଦ୍ୱିତୀୟ ବ୍ୟକ୍ତି : ଆମେରିକା ପରା ଭାରତର ବନ୍ଧୁ ହୋଇଗଲାଣି । ସେ ସମ୍ଭାଳି ନେବ ।

ପ୍ରଥମ ବ୍ୟକ୍ତି : ଧେତ୍ ବାଜେକଥା ।

# ମୁଁ ଜୁନୁନ୍ କହୁଛି

**ହ୍ୟା**ଲୋ ମୁଁ ଜୁନୁନ୍ କହୁଛି । ମୋ ବୋଉଙ୍କୁ ବାପା ଖୁବ୍ ଜୋର୍‌ରେ ମାରୁଛନ୍ତି । ବୋଉ ମରିଯିବ । ଶୀଘ୍ର ପୁଲିସ୍ ପଠାନ୍ତୁ... ଇସ୍ କି ମାଡ଼... ତା'ପରେ କ୍ରନ୍ଦନ ସ୍ୱର । ଫୋନ୍‌ଟି ଆସିଥିଲା କ୍ୟାପିଟାଲ ଥାନାକୁ । ଥାନା ଅଫିସର ଫୋନ୍ ପାଇବା ମାତ୍ରେ ସଙ୍ଗେସଙ୍ଗେ ପୁଲିସକୁ ଜିପ୍‌ରେ ପଠାଇଦେଲେ ନିର୍ଦ୍ଦିଷ୍ଟ ଠିକଣାରେ । କ୍ୱାର୍ଟରରେ ପୁଲିସ୍ ପହଂଚିବା ବେଳକୁ ପରିସ୍ଥିତି ସଂପୂର୍ଣ୍ଣ ଓଲଟା । ସମସ୍ତେ ଠିକ୍ ଅଛନ୍ତି । କୌଣସି ମାଡ଼ ମାରିବା ଘଟଣା ଘଟିନାହିଁ । ତେବେ ଫୋନ୍ କଲା କିଏ । ଗୋଟିଏ କି ଦୁଇଟି ନୁହେଁ ପ୍ରତିଦିନ ଏହିପରି ବହୁ ଫୋନ୍ ପୋଲିସ୍‌କୁ ମିଳୁଛି । ଏଭଳି ଉଡ଼ା ଖବର ପୋଲିସ୍ ପାଇଁ ଚିନ୍ତାର କାରଣ ହୋଇପଡ଼ିଛି । ରାଜଧାନୀ ପୁଲିସ୍ ପାଇଁ ଚୋର ଡକାୟତଙ୍କୁ ଧରିବା ବରଂ ସହଜ କିନ୍ତୁ ଏଭଳି ଫୋନ୍ କରୁଥିବା ବ୍ୟକ୍ତିଙ୍କୁ ଧରିବା ପାଇଁ ମୁସ୍କିଲ ହୋଇପଡ଼ିଛି । ଉଡ଼ା ଖବର ପାଇ ଘଟଣାସ୍ଥଳକୁ ପୁଲିସ୍ ଗଲେ ଲୋକହସା ହେଉଛି । ନଗଲେ ପୁଲିସ୍ ଡ୍ୟୁଟି କରୁନାହିଁ ବୋଲି ଅଭିଯୋଗ ହେଉଛି । ଏଣେ ମାରିଲେ ଗୋ-ହତ୍ୟା ତେଣେ ମାରିଲେ ବ୍ରହ୍ମହତ୍ୟା । ଧନ୍ୟ ଟେଲିଫୋନ୍ । ଧନ୍ୟ ପୁଲିସ୍ ।

# ଯୁଦ୍ଧ ଏବଂ ଯୁଦ୍ଧ

**ଯୁ**ଦ୍ଧ କରୁଛି ଆମେରିକା । ପୁଣି ଯୁଦ୍ଧ ହେଉଛି ଆଫଗାନିସ୍ତାନ ବିରୋଧରେ । କିନ୍ତୁ ଭୁବନେଶ୍ୱର ବାସିନ୍ଦାଙ୍କ ଉପରେ ଏହାର ପ୍ରଭାବ ପଡ଼ିଛି । ନହେଲେ ରାତାରାତି ପରିବା ଦର ଆକାଶଛୁଆଁ ହୋଇନଥାନ୍ତା । ଏଇ ଯେମିତି ବାଇଗଣ କେ.ଜି. ୧୪ରୁ ୨୬ଟଙ୍କା ହୋଇଗଲା । କଲରା ମଧ ୧୬ରୁ ୨୬ଟଙ୍କା । ଭେଣ୍ଡି ୧୪ରୁ ୨୬ଟଙ୍କା । ଏମିତି ଊଣା ଅଧିକେ ଅଧିକାଂଶ ପରିବା ଦର ରାତାରାତି ବଢ଼ିଗଲା । ପରିବା ବିକାଳୀଙ୍କ ମୁହଁରେ

ଗୋଟିଏ କଥା । ଯୁଦ୍ଧ ହୋଇଗଲା । ଆଉ ପରିବା ଚାଲାଣ ହେବନାହିଁ । ସେଥିପାଇଁ ଏମିତି ଦରବୃଦ୍ଧି । ଯୁଦ୍ଧ ଆରମ୍ଭରୁ ପରିବା ଦର ବହୁ କମ୍ ବଢ଼ିଛି । ଯୁଦ୍ଧ ଲାଗି ରହିଲେ ଦର ଆହୁରି ବଢ଼ିବ ହିଁ ବଢ଼ିବ । ଯୁଦ୍ଧ ପାଇଁ ପରିବା ଦର କିପରି ବଢ଼ିଲା ତାହା ମଧ୍ୟ ରାଜଧାନୀବାସୀଙ୍କର ପଚାରିବାକୁ ସମୟ ନାହିଁ । ସମସ୍ତେ ବ୍ୟସ୍ତ । ଯାହାହେଲେ ରାଜଧାନୀ ବାସିନ୍ଦାଟି । ପ୍ରଥମେ ପ୍ରେଷ୍ଟିଜ ପରେ ଟଙ୍କା ।

## ବୋଦା ଉପାଖ୍ୟାନ

**ରା**ଜଧାନୀବାସୀଙ୍କୁ ଯଦି କିଏ ଭୁଆଁ ବୁଲାଉଥାଏ ତେବେ ସେ ହେଉଛି ମାଂସ କଟାଳି । ଏଠି କୁଆଡ଼େ ବାବୁଙ୍କଠାରୁ ଆରମ୍ଭ କରି ଚପରାଶି ପର୍ଯ୍ୟନ୍ତ ମନ୍ତ୍ରୀଙ୍କଠାରୁ ଆରମ୍ଭ କରି କର୍ମୀ ପର୍ଯ୍ୟନ୍ତ ସମସ୍ତେ ଖାସି ମାଂସ ଖାଆନ୍ତି ବୋଲି ବାହାବା ନିଅନ୍ତି । କିନ୍ତୁ ମାଂସ କଟାଳିମାନେ ଏହି ବାହାବାକୁ ଦେଖି ନାକରେ କାଠି ପୁରାଇ ହସୁଛନ୍ତି । ରାଜଧାନୀବାସୀଙ୍କୁ କେମିତି ଭୁଆଁ ବୁଲାଉଛି ତାହାକୁ ଭାବିଭାବି ସେମାନେ ନିଦରେ ଶୋଇ ବି ହସୁଛନ୍ତି । ଏଇ ଯେମିତି ମେଣ୍ଢା ମାଂସକୁ ଖାସି ମାଂସ କହି ଗରାଖମାନଙ୍କୁ ସେମାନେ ବିକ୍ରି କରୁଛନ୍ତି । ବୁଢ଼ୀ ଛେଳି ପ୍ରସଙ୍ଗ ନଉଠିଲେ ଭଲ । ପ୍ରାୟ ଅଧାରୁ ଅଧିକ ମାଂସ ହେଉଛି ବୁଢ଼ୀ ଛେଳି । ମାନେ ଛେଳିଟି ଅନ୍ୟୁନ ୧୨ରୁ ୧୪ ପିଲା ଜନ୍ମ କରି ମରଣକୁ ଅପେକ୍ଷା କରିଥିବା ବେଳେ ରାଜଧାନୀବାସୀ ତାହାର ମାଂସ ଭକ୍ଷଣ କରି ଖାସି ମାଂସ ଖାଉଛନ୍ତି ବୋଲି ଗର୍ବରେ ଫାଟି ପଡ଼ୁଛନ୍ତି । ସେଦିନର ଘଟଣା । ରବିବାର ହୋଇଥିବାରୁ ମାଂସ ଦୋକାନରେ ପ୍ରବଳ ଭିଡ଼ । ଜଣେ କିଏ ଗରାଖ ପାଟିତୁଣ୍ଡ କଲେ । ଏଇଟା ଖାସି ନୁହେଁ । ମାଂସ କଟାଳି ଏକ ଅଂଗକୁ ଦେଖାଇ କହିଲା ଖାସି ବୋଲି । ଗରାଖ କହିଲା ମୁଣ୍ଡରେ ସିଙ୍ଗ ଅଛି । ତେଣୁ ଖାସି ନୁହେଁ । ସେତେବେଳକୁ ଅନ୍ୟ ଗରାଖମାନେ ମାଂସ କଟାଳିର ଯୁକ୍ତିରେ ବଶୀଭୂତ ହୋଇସାରିଥାନ୍ତି । ସେମାନେ ଖାସି, ଖାସି ବୋଲି କହୁଥାନ୍ତି । କିନ୍ତୁ ପ୍ରକୃତ ତଥ୍ୟଠାରୁ ବହୁ ଦୂରରେ ସେମାନେ ଅଛନ୍ତି ବୋଲି ଜାଣିବେ ବା କିପରି । ପିଲାଦିନ ତ ସହରରେ ବିତିଲା । ଖାସି ଆଉ ବୋଦା ପୁଣି ମାଇ ଛେଳି ଓ ମେଣ୍ଢା ବୋଲି ସେମାନେ ଜାଣିବେ କେମିତି । ମାଂସ ନେଇ ଗରାଖମାନେ ଚାଲିଗଲା ପରେ ମାଂସ କଟାଳି ସେଦିନ ବୁହେ ହସିଲା । ପୁଣି ସେ ହସି ହସି କହୁଥାଏ- ରାଜଧାନୀବାସୀଙ୍କୁ ବୋକା ବନେଇବା ସତରେ ବହୁ ସହଜ ।

## ଜୟ ପେପ୍‌ସି

**ପେପ**୍‌ସି ବୋତଲରେ ସରୀସୃପ । ଏହା ଆଶ୍ଚର୍ଯ୍ୟ ମନେ ହେଉଥିଲେ ମଧ୍ୟ ଖାଂଟି ସତ । ସେଦିନ ସ୍ୱାତୀ ସିନେମାହଲ ନିକଟରେ ଏକ ପାନ ଦୋକାନରେ ଜଣେ ଗ୍ରାହକ ପେପ୍‌ସି

ପିଉଥାନ୍ତି । ପେପ୍‌ସିର ସ୍ୱାଦ ପାଟିକୁ କେମିତି କେମିତି ଲାଗିଲା । ହଠାତ୍ ବୋତଲକୁ ଦେଖିବା ବେଳକୁ ତା' ଭିତରେ ସାପଟିଏ ଥିବା ପରି ଦେଖାଗଲା । ପେପ୍‌ସି ପିଇବା ସେତିକିରେ ରହିଲା । ତା'ପରେ ଦୋକାନୀ ସୁରେଶ ଉପରେ ଚାଲିଲା ମାଡ଼ର ବର୍ଷଣ । ଦୋକାନୀ ସୁରେଶ ମରିଗଲି ମରିଗଲି ବୋଲି ଯେତେ ରଡ଼ି ଛାଡ଼ୁଥାଏ ସେତିକି ଅଧିକ ଲୋକ ଜମା ହୋଇ ତାକୁ ମାଡ଼ ମାରି ଚାଲିଲେ । ମାଡ଼ ମରା ପର୍ବ ଶେଷ ହେଲା । ଦୋକାନୀ ସୁରେଶ ବୋତଲଟିକୁ ଚାହିଁ ରହିଥାଏ । ସତରେ ତା' ଭିତରେ ସରୀସୃପଟିଏ । କମ୍ପାନୀ ପ୍ରସ୍ତୁତ କରିବ ପେପ୍‌ସି ପୁଣି ସରୀସୃପ ପୁରାଇ ବୋତଲ ସିଲ୍ କରିବ କିନ୍ତୁ ମାଡ଼ ଖାଇବ ଦୋକାନୀ । ଏଇଟା କେଉଁ ନ୍ୟାୟ ବୋଲି ସୁରେଶ ପ୍ରଶ୍ନ କଲେ ମଧ୍ୟ ତାହାକୁ କେହି ଶୁଣିବା ଅବସ୍ଥାରେ ନଥିଲେ ।

## ନବୀନଙ୍କ ଡିମାଣ୍ଡ

**ରେ**ଢ଼ାଖୋଲ ନିର୍ବାଚନରେ ବିଜେଡି ପ୍ରାର୍ଥୀ ସନାତନ ବିଶିଙ୍କ ବିଜୟ ପରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଡିମାଣ୍ଡ ଫୁଲଦମ୍‌ରେ ବଢ଼ିଯାଇଥିଲା । ନବୀନ ଆଉ ପଛକୁ ଫେରି ଚାହିଁଲେ ନାହିଁ । ସେ ଆଗକୁ ମାଡ଼ି ଚାଲିଲେ । କୁଆଡ଼େ କେହି ଜଣେ ଜ୍ୟୋତିଷ ଗଣନା କରି କହିଦେଲେ ଯେ, ନବୀନଙ୍କ ଲାଙ୍ଗୁଡ଼ ହେଉଛି ହାଇ ଭୋଲଟେଜ । ଯିଏ ହାତ ଦେବ ସିଏ ପାଉଁଶ । ନବୀନଙ୍କ ବେଳା ଭଲ ପଡ଼ିଛି । କେବଳ ସମୟର ସଦ୍ ଉପଯୋଗ ହେବା କଥା । ସେଇଥିପାଇଁ ତ ତିନିମନ୍ତ୍ରୀ ବିଦା ହେଲେ । ମନ୍ତ୍ରିମଣ୍ଡଳ ସଂପ୍ରସାରଣ ନହେଲେ ମଧ୍ୟ ବରିଷ୍ଠ ବିଧାୟକମାନେ ଅସନ୍ତୋଷ ପ୍ରକଟ କରିବାକୁ ସାହସ ବି କରିପାରୁ ନାହାନ୍ତି । ସବୁ କ୍ଷମତା ନବୀନ ନିଜ ହାତରେ ରଖିଚାଲିଛନ୍ତି । ନବୀନ ଭଲରୂପେ ଜାଣିଛନ୍ତି ଯେ କ୍ଷମତା ଚାଲିଗଲେ ଆଉ ଫେରିଆସିବନି । ଏକାଥରକେ ସର୍ବନାଶ । ଜ୍ୟୋତିଷଙ୍କ ଗଣନାକୁ ଅକ୍ଷରେ ଅକ୍ଷରେ ପାଳନ କରୁଛନ୍ତି ନବୀନ । କ୍ଷମତା ସିନା ହାତରୁ ଖସିଲେ ସର୍ବନାଶ ନଚେତ୍ ଅନ୍ୟମାନେ ସର୍ବନାଶ । ଯାହାହେଲେ ବିଜୁ ପୁତ୍ର । ଓଳିଆରୁ ପଡ଼ି ଗଜା ।

## ମୁଖ୍ୟମନ୍ତ୍ରୀ ବନାମ ସଚିବ

**ଏ**ମିତି ସମ୍ବିଧାନ ଦେଖିଲେ ସବୁ କ୍ଷମତା ମୁଖ୍ୟମନ୍ତ୍ରୀଙ୍କଠାରେ । ତାଙ୍କର ନିର୍ଦ୍ଦେଶକ୍ରମେ ଅମଲାତନ୍ତ୍ର କାମ କରିବ । କିନ୍ତୁ ଓଡ଼ିଶାରେ ନବୀନ ସରକାର ଏଥିରୁ ବ୍ୟତିକ୍ରମ । ମାନେ ସମ୍ବିଧାନଠାରୁ ଊର୍ଦ୍ଧ୍ୱରେ । ଅର୍ଥାତ୍ ସମ୍ବିଧାନରେ ଯାହା ଲେଖା ହୋଇଛି ତା'ର ଠିକ୍ ଓଲଟା କାମ ହେଉଛି । ମାନେ ମୁଖ୍ୟମନ୍ତ୍ରୀ ଯାହା ନିର୍ଦ୍ଦେଶ ଦେବେ ତାହାକୁ ଅମଲାତନ୍ତ୍ର ମାନିବେ ନାହିଁ । ଆଉ ଅମଲାତନ୍ତ୍ର ନିର୍ଦ୍ଦେଶକ୍ରମେ ମୁଖ୍ୟମନ୍ତ୍ରୀ ଶାସନ କରିବେ । ଭାତ ହାଣ୍ଡିରୁ

ଗୋଟିଏ ପରି ଏହା ଏକ ଉଦାହରଣ । ମୁଖ୍ୟମନ୍ତ୍ରୀ ନିର୍ଦ୍ଦେଶ ଦେଲେ ଅମୁକ ଅମୁକ ଅଫିସର ବଦଳି ହେବେ । କିନ୍ତୁ ବିଭାଗୀୟ ସଚିବ ତାହାକୁ କାର୍ଯ୍ୟକାରୀ କଲେ ନାହିଁ । ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକୁ ବେଖାତିର କରୁଥିବା ସଚିବଙ୍କ ସାହସ ସଂପର୍କରେ ସମଗ୍ର ସଚିବାଳୟରେ ଗରମା ଗରମ ଆଲୋଚନା ଚାଲିଲା । ସମସ୍ତେ ପରିଣତିକୁ ଅପେକ୍ଷା କଲେ । କିନ୍ତୁ ସଚିବ ମୁଖ୍ୟମନ୍ତ୍ରୀଙ୍କ ନିର୍ଦ୍ଦେଶକୁ ଖାତିର କରିବା ତ ଦୂରର କଥା ବରଂ ଫାଇଲକୁ ଏମିତି ଚାପିଦେଲେ ଯେ ତା'ର ଆଉ କେହି ଟେର୍ ବି ପାଇଲେ ନାହିଁ । ସଚିବଙ୍କ ଏହି ଅମାନିଆ କାରବାର ଆଉ କାହାପାଇଁ କ'ଣ ହୋଇଥାଇପାରେ । କିନ୍ତୁ ତଳିଆ କର୍ମଚାରୀଙ୍କର ସେ ପ୍ରଶଂସାର ପାତ୍ର ହୋଇଯାଇଛନ୍ତି । ଯେଉଁ ଚର୍ଚ୍ଚା ହେଲା ତାହା ମଧ ବିଚିତ୍ର । କୁଆଡେ ସଚିବ ହେଉଛନ୍ତି ମୁଖ୍ୟମନ୍ତ୍ରୀଙ୍କଠାରୁ ଉର୍ଦ୍ଧ୍ୱରେ । ମାନେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସଚିବଙ୍କ ତଳେ ।

## ସଚିବାଳୟରେ ସାପ

**ସେ**ଦିନ ସଚିବାଳୟରେ ସାପ ଆତଙ୍କ ଦେଖାଗଲା । ପଂଚାୟତିରାଜ ବିଭାଗରେ ଏକ ସାପ ପଶିଯାଇଛି ବୋଲି ହୁରି ପଡ଼ିଲା । ସାପ ନାଁ ଶୁଣି କିଏ କୁଆଡ଼େ ଡିଆଁ ମାରିଲେ । ଏମିତି ତ ସଚିବାଳୟ ପ୍ରାଙ୍ଗଣ ବଣ, ବୁଦା, ଉଇ ହୁଙ୍କାରେ ପରିପୂର୍ଣ୍ଣ ହୋଇଗଲାଣି । ପଡ଼ିଆ ମଧରେ ସାଇଁ ସାଇଁ ହୋଇ ସାପ ଚାଲି ଯାଉଛନ୍ତି ତ କେଉଁଠି ଗର୍ଜନ ମଧ କରୁଛନ୍ତି । ତେବେ ବିଭାଗ ମଧରେ ସାପ ପଶିବାଟା ଏହା ପ୍ରଥମ ଯେ ତା' ନୁହେଁ । ଅତୀତରେ ସାପ ଆତଙ୍କ ବହୁବାର ଦେଖାଯାଇଛି । କିନ୍ତୁ ସେଥିପାଇଁ କୌଣସି ବ୍ୟବସ୍ଥା ହେବାର ନାହିଁ । ଫାଇଲ୍‌ର ଅଳିଆ ଗଦା ବରଂ ସାପ ପାଇଁ ଉଷୁମ ଭିତରେ ରହିବାକୁ ଅଧିକ ପସନ୍ଦ ହେଉଛି । ତେବେ ସଚିବାଳୟର ବିଭିନ୍ନ ବିଭାଗରେ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରାଙ୍କ ଫଟୋ, ମୂର୍ତ୍ତି ପୂଜା ହେଉଥିବାବେଳେ 'ଶିବ'ଙ୍କର ପୂଜା ହେଉନାହିଁ । ବୋଧହୁଏ 'ଶିବ' ଏଥିରେ ରାଗିଯାଇଛନ୍ତି ।ଯେଉଁଥିପାଇଁ ସେ ତାଙ୍କର ଚିର ସେବକ ସାପକୁ ସଚିବାଳୟକୁ ପଠାଇଛନ୍ତି । ସଚିବାଳୟ କର୍ମଚାରୀମାନେ ଏଣିକି ନିଜନିଜ ବିଭାଗରେ ଶିବଙ୍କ ପୂଜା ଆରମ୍ଭ କରିଦିଅନ୍ତୁ । ଦେଖିବେ ଆଉ ସାପ ଆତଙ୍କ ରହିବ ନାହିଁ ।

## ଜୟ 'ସୋନି'

**ସୋ**ନି ଟିଭି କି ସୋନି ଅଡ଼ିଓର ପ୍ରଚାର ପାଇଁ ରାଜଧାନୀରେ ବେଶ୍ ସ୍ଥାନଟିଏ ମିଳିଯାଇଛି । ସ୍ଥାନଟି ହେଉଛି ପାଓ୍ୱାର ହାଉସ୍ ଛକ । ଛକରେ ନିର୍ମାଣ ହୋଇଥିବା ଏକ ଟାଓ୍ୱାର ଉପରେ ଚାରି ଦିଗକୁ ଚାରିଟି ଘଂଟା ଲାଗିଛି । ତାହା ଚାଲୁଛି କି ନଚାଲୁଛି

ଜଣାପଡ଼ୁନି । ଏକରେ ତ ଘଂଟାରେ ସମୟ ଠିକ୍ ନାହିଁ । ପୁଣି କେଉଁ ଘଂଟାର ସମୟ କାହା ସହିତ ସମାନ ନାହିଁ । ମାନେ ଗୋଟିଏ ଘଂଟାରେ ୪ଟା ବାଜିଲାଣି ତ ଆଉ ଗୋଟିକରେ ୮ଟା । ଅନ୍ୟଟିରେ ୧୨ଟା ତ ଆଉ ଗୋଟିକରେ ୩ଟା । ଏହି ସ୍ତମ୍ଭରେ ସୋନି ଟିଭି ଏବଂ ଅଡ଼ିଓର ପ୍ରଚାର କରାଯାଇଛି । ଭ୍ରମାତ୍ମକ ଘଂଟା ଏବଂ ସୋନି ପ୍ରଚାରରେ ବାଟୋଇଙ୍କ ଆଖି ଖୋସି ହୋଇଯାଇ ପ୍ରତିଦିନ ସେଠାରେ ଦୁର୍ଘଟଣା ଘଟୁଛି । କାହାର ହାତ ଗୋଡ଼ ଭାଙ୍ଗି ଗଲାଣି ତ କିଏ ସଂଜ୍ଞାହୀନ । ପ୍ରଥମେ ଘଂଟା, ତା'ପରେ ସୋନିର ଫଟୋଚିତ୍ର । ଏବେ ସେଠାରେ ହସ୍ପିଟାଲଟିଏ କରିଦେଲେ ବାଟୋଇମାନଙ୍କୁ ଆଉ ହଇରାଣ ହେବାକୁ ପଡ଼ନ୍ତା ନାହିଁ । ଯେତେ ଆକ୍ସିଡ଼େଂଟ୍ ହେଉ ସେଥିରେ ଯାଏ କେତେ ଆସେ କେତେ । ଯାହା ହେଲେ ମଧ୍ୟ ହସ୍ପିଟାଲ ଥିବଟି ।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ଜାନକୀ ଏବଂ ନବୀନଙ୍କ ମଧ୍ୟରେ କିଛି ପାର୍ଥକ୍ୟ ଅଛି କି ?

ଦ୍ୱିତୀୟ ବ୍ୟକ୍ତି : ପାର୍ଥକ୍ୟ ଅପେକ୍ଷା ସାମଞ୍ଜସ୍ୟ ଅଧିକ ।

ପ୍ରଥମ ବ୍ୟକ୍ତି : ମାନେ ?

ଦ୍ୱିତୀୟ ବ୍ୟକ୍ତି : ଜାନକୀ ରାତିକୁ ଭଲ ପା'ନ୍ତି । ନବୀନ ବି ରାତିକୁ ଭଲ ପା'ନ୍ତି । ଜାନକୀ ଲେଖକ । ନବୀନ ବି ଲେଖକ । କ୍ଷମତାରେ ଥିବାବେଳେ ଜାନକୀ ଲେଖନ୍ତିନି । ନବୀନ ମଧ୍ୟ କ୍ଷମତାରେ ଥିବାବେଳେ ଲେଖନ୍ତିନି । ଜାନକୀ ଧଳା ପୋଷାକକୁ ଭଲ ପା'ନ୍ତି । ନବୀନ ବି ଧଳା ପୋଷାକକୁ ଭଲ ପା'ନ୍ତି । ଜାନକୀଙ୍କର ନିଶ ନାହିଁ । ନବୀନଙ୍କର ମଧ୍ୟ ନିଶ ନାହିଁ ।

ପ୍ରଥମ ବ୍ୟକ୍ତି : ଧେତ୍ ବାଜେକଥା ।

## ନବୀନ ଏବଂ ବିବାହ ପ୍ରସ୍ତାବ

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଯେ ଆଜୀବନ ବ୍ରହ୍ମଚାରୀ ଏହା କେବଳ ଓଡ଼ିଶାବାସୀ ନୁହଁନ୍ତି ସମଗ୍ର ଭାରତବାସୀ ମଧ୍ୟ ଜାଣିଛନ୍ତି । ବିଜୁ ନନ୍ଦନ ନବୀନ ପିତାମହ ଭୀଷ୍ମଙ୍କ ପଥ ଅନୁସରଣ କରିଛନ୍ତି ବୋଲି ମହିଳା ମହଲ ଜାଣିଯିବା ପରେ ତାହା ନବୀନଙ୍କ ପାଇଁ ଏବେ ସମସ୍ୟାର ବୋଝ ହୋଇପଡ଼ିଛି । ନବୀନ ହେଉଛନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ପୁଣି ବିବାହ ବୟସ ଅତିକ୍ରମ କରିସାରିଲାଣି । ଏ ସମୟରେ କ'ଣ ତାଙ୍କର ବିବାହ ପ୍ରସ୍ତାବ ଆସିବ କି ବୋଲି ପ୍ରଶ୍ନ ହେବା ମଧ୍ୟ ସ୍ୱାଭାବିକ୍ । ପାଠକ ମହଲ ଏହା ବିଶ୍ୱାସ କରି ନପାରନ୍ତି

କିନ୍ତୁ ଘଟଣାଟି ଖାଂଟି ସତ । ସେଦିନ ସୂଚନା ଭବନ ସମ୍ମୁଖରେ ଜଣେ ମହିଳା ଠିଆ ହୋଇଥାନ୍ତି । ତାଙ୍କ ଚାରିପାଖରେ ପୋଲିସ୍ ଏବଂ ଲୋକଙ୍କ ଭିଡ଼ । ମହିଳା ଜଣକ ସୁଶ୍ରୀ ଏବଂ ବୟସ ପ୍ରାୟ ୩୦ ବର୍ଷ ହେବ । ଇଂରାଜୀରେ ସେ କଥାବାର୍ତ୍ତା କରୁଥାନ୍ତି । କୁଆଡ଼େ ସେ ଜଣେ ଅଧାପିକା ବୋଲି ନିଜର ପରିଚୟ ଦେଉଥାନ୍ତି । ତାଙ୍କର ଗୋଟିଏ ଇଛା । ତାହା ହେଲା ନବୀନ ପଟ୍ଟନାୟକଙ୍କୁ ବିବାହ କରିବେ । ଦେଖଣାହାରୀ ହସୁଥାନ୍ତି । କିନ୍ତୁ ମହିଳା ଜଣକ କହି ଚାଲିଥାନ୍ତି । ସେ ଅବିବାହିତା । ଆଉ ନବୀନ ମଧ ଅବିବାହିତ । ଅସୁବିଧା ରହୁଛି କେଉଁଠି । ଯାଅ ଖବର ଦିଅ, ପ୍ରସ୍ତାବ ପକାଅ, ବିବାହ ଖୁବ୍ ଶୀଘ୍ର ହେବ । ରାଜ୍ୟର ଆର୍ଥିକ ପରିସ୍ଥିତି ଶୋଚନୀୟ ଥିବାରୁ ବିବାହ ଉତ୍ସବ ହେବ ଭେରି ସିମ୍ପଲ୍ । ମାନେ ନବୀନ ଫୁଲ ଗଳାଇବେ ତାଙ୍କ ବେକରେ ଆଉ ସେ ନବୀନଙ୍କ ବେକରେ ଫୁଲ ମାଳ ପିନ୍ଧାଇବେ । ବାସ୍ କାମ ଶେଷ । ତା'ପରେ ତ ଆମେ ସ୍ୱାମୀ, ସ୍ତ୍ରୀ ତଥା ପତି ପତ୍ନୀ । ଦେଖଣାହାରୀଙ୍କୁ ମହିଳା ଜଣଙ୍କର ପ୍ରସ୍ତାବ ବୋଧହୁଏ ପସନ୍ଦ ହୋଇଗଲା । ନହେଲେ ହସରେ ସେ ସ୍ଥାନଟି ଉଛୁଳି ପଡୁନଥାନ୍ତା । ମହିଳା ଜଣକ କିନ୍ତୁ ତାଙ୍କ କହିବା ବନ୍ଦ କରିନଥାନ୍ତି । ସେ କହୁଥାନ୍ତି- ଆରେ ମୋ ମୁହଁକୁ ଚାହିଁଚ କ'ଣ । ଯାଅ ନବୀନଙ୍କୁ ପ୍ରସ୍ତାବ ଦିଅ । ତମେସବୁ କାହିଁକି ମୋ ମୁହଁକୁ ଚାହିଁ ରହିଛ । ମୋ ମୁହଁକୁ ଚାହିଁବାର ଯୋଗ୍ୟତା ତମର ନାହିଁ କେବଳ ନବୀନର ଅଛି । ନବୀନଙ୍କୁ ବିବାହ ପ୍ରସ୍ତାବ ଦେଉଥିବା ମହିଳା ଜଣଙ୍କୁ ଦେଖିବା ପାଇଁ ପୋଲିସ୍ ଏବଂ ଲୋକଙ୍କ ସୁଅ ଛୁଟିଲା । ଜନଗହଳି ପ୍ରବଳ ହେବାରୁ ପୋଲିସ୍‌କୁ ସେଦିନ ହସ୍ତକ୍ଷେପ କରିବାକୁ ପଡ଼ିଥିଲା ।

## ମନ୍ତ୍ରୀଙ୍କ ଖାସ୍ ଘରୋଇ ସଚିବ

**ସ**ବୁ ମନ୍ତ୍ରୀଙ୍କର ତ ଘରୋଇ ସଚିବ ଅଛନ୍ତି ପୁଣି ଏ ଖାସ୍ ଘରୋଇ ସଚିବ କ'ଣ । ଏହା କେତେକ ମନ୍ତ୍ରୀଙ୍କୁ ବେଖାପ ଲାଗୁଥାଇପାରେ । ଜନୈକ ବ୍ୟକ୍ତି ଏକ ସଂସ୍ଥାରେ ଚାକିରି ହରାଇଥିବାରୁ ତାଙ୍କୁ ପୁନଃନିଯୁକ୍ତି ଦିଆଯିବା ନିମନ୍ତେ କୋର୍ଟର ନିର୍ଦ୍ଦେଶନାମା ଧରି ସେ ବିଭାଗୀୟ ମନ୍ତ୍ରୀଙ୍କୁ ଦେଖା କରିବାକୁ ଯାଇଥିଲେ । ସେତେବେଳକୁ ମନ୍ତ୍ରୀ ଦିଲ୍ଲୀ ଗସ୍ତରେ ଥା'ନ୍ତି । ମନ୍ତ୍ରୀଙ୍କ ଚାମ୍ବରରେ ତାଙ୍କ ଘରୋଇ ସଚିବଙ୍କ ସହ ଦେଖାହେଲା । ସେହି ବାବୁ ଜଣକ କୋର୍ଟ ଅର୍ଡ଼ର ଦେଖାଇଲେ ଏବଂ ଘଟଣା ସଂପର୍କରେ ବର୍ଣ୍ଣନା କଲେ । ଘରୋଇ ସଚିବ କହିଲେ ଏକ ଲକ୍ଷ ଚାଳିଶ ହଜାର । ବ୍ୟକ୍ତି ଜଣଙ୍କର ଆଖି ଏକାଥରକରେ ଟେରା । ଘରୋଇ ସଚିବ ବୁଝାଇଦେଲେ- ସେ ଅନ୍ୟମାନଙ୍କ ପରି ମାଛ, ମାଂସ ଖା'ନ୍ତି ନାହିଁ । ସାଧାରେ ଚଳନ୍ତି । ଭାତ, ଡାଲମା ମାନେ ଶାକାହାରୀ । ତେଣୁ ହିସାବ ବହୁତ କମ୍ । ଆଉ ଯେଉଁଠିକି ଯିବେ ଚଢ଼ା ଦର । ସେ ଅନ୍ୟ ଘରୋଇ ସଚିବଙ୍କ ପରି ନୁହଁନ୍ତି । ସେ

ହେଉଛନ୍ତି ମନ୍ତ୍ରୀଙ୍କ ଖାସ୍ ଘରୋଇ ସଚିବ । ସେ ଯାହା କହିବେ ବେଦର ଗାର । ମନ୍ତ୍ରୀ, ମାନିବେ ହିଁ ମାନିବେ । ନିଯୁକ୍ତି ନିଶ୍ଚିତ । ବ୍ୟକ୍ତିଜଣକୁ ଘରୋଇ ସଚିବଙ୍କ ଏହି ପରାମର୍ଶ ବେଖାପ ଲାଗିଲା । ତୁରନ୍ତ ସେଠାରୁ ସେ ଚାଲି ଆସିଲେ । କିନ୍ତୁ ଖାସ୍ ଘରୋଇ ସଚିବ ଯାହା କହିଥିଲେ ତାହା ପ୍ରକୃତରେ ଶହେ ପ୍ରତିଶତ ସତ । ମନ୍ତ୍ରୀଠାରୁ ଆରମ୍ଭ କରି ଅଫିସର ପର୍ଯ୍ୟନ୍ତ ଯେତେ ଦୌଡ଼ିଲେ ମଧ କୋର୍ଟ ଅର୍ଡ଼ରକୁ କେହି ମାନିଲେ ନାହିଁ କି ତାଙ୍କୁ ନିଯୁକ୍ତି ମିଳିବାର ପ୍ରତିଶ୍ରୁତି ମଧ କେହି ଦେଲେନାହିଁ । ଯାହା ହେଲେ ଖାସ୍ ଘରୋଇ ସଚିବଟି ।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପାୟୀଙ୍କ ଠାରୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଦୁଇପାଦ ଆଗରେ ।

ଦ୍ୱିତୀୟ ବ୍ୟକ୍ତି : କିଛି ବୁଝିହେଲା ନାହିଁ ।

ପ୍ରଥମ ବ୍ୟକ୍ତି : ଏଇ ମନ୍ତ୍ରିମଣ୍ଡଳରୁ ବହୁ ମନ୍ତ୍ରୀଙ୍କୁ ବାଦ୍ ଦେବା ପ୍ରସଙ୍ଗ । ନବୀନ ପଟ୍ଟନାୟକ ତାଙ୍କ ମନ୍ତ୍ରିମଣ୍ଡଳରୁ ୪ ଜଣଙ୍କୁ ବାଦ୍ ଦେଲେ । ଏଥିରୁ କ'ଣ ଜଣାପଡୁନି ବାଜପାୟୀଙ୍କ ତୁଳନାରେ ନବୀନ ଅଧିକ ବୁଦ୍ଧିମାନ ଆଉ ଦୁଇପାଦ ଆଗରେ ବୋଲି ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

## ନବୀନ ଚକୋଲେଟ୍

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବହୁ ସିଗାରେଟ୍ ଟାଣୁଥିବାର ସମସ୍ତେ ଜାଣନ୍ତି । ମାନେ ନବୀନ ଜଣେ ଚେନ୍ ସ୍ମୋକର । ଏହା ଓଡ଼ିଶାବାସୀ ପ୍ରାୟ ଜାଣିଗଲେଣି । କିନ୍ତୁ ନବୀନଙ୍କର ଅଉ ଏକ ଦୁର୍ବଳତା ସଂପର୍କରେ ବୋଧହୁଏ କାହା ନଜରକୁ ଆସି ନଥିବ । ଏଇ ଯେମିତି ବିଧାନସଭା ଅଧିବେଶନ ଚାଲିଥାଏ । ଗୃହରେ ସରଗରମ ଆଲୋଚନା ହେଉଥାଏ । ହଠାତ୍ ଦେଖାଗଲା ନବୀନ ତାଙ୍କ ପକେଟ୍‌ରୁ କ'ଣ ଗୋଟାଏ ବାହାର କରି ପାଟିରେ ପକାଇଲେ । କିଛି ସମୟ ପରେ ପକେଟ୍‌ରୁ ପୁଣି କ'ଣ ବାହାର କରି ପାଖରେ ବସିଥିବା ଯୋଗାଣମନ୍ତ୍ରୀ ବେଦପ୍ରକାଶ ଅଗ୍ରୱାଲଙ୍କ ହାତକୁ ବଢ଼ାଇଦେଲେ । ଏହାପରେ ପୁଣି ରାଜସ୍ୱମନ୍ତ୍ରୀ ବିଶ୍ୱଭୂଷଣ ହରିଚନ୍ଦନଙ୍କୁ ମଧ ତାହାକୁ ସେ ବଢ଼ାଇଦେଲେ । ସେତେବେଳକୁ ବିଧାୟକମାନଙ୍କ ଦୃଷ୍ଟି ନବୀନଙ୍କ ଆଡ଼େ । ସେ କ'ଣ ପକେଟ୍‌ରୁ ବାହାର କରି ନିଜେ ଖାଉଛନ୍ତି ଏବଂ ପାଖରେ ବସିଥିବା ଦୁଇ ମନ୍ତ୍ରୀଙ୍କୁ ବାଂଟୁଛନ୍ତି ତାହା ଜାଣିବାକୁ ସମସ୍ତଙ୍କର ଉତ୍ସୁକତା ବଢ଼ିଯାଇଥାଏ । କିଛି ସମୟ ପରେ ଜଣାପଡ଼ିଲା ତାହା ଆଉ କିଛି

ନୁହେଁ ଚକୋଲେଟ୍ । ସିଗାରେଟ୍ ମୋହରେ ପଡ଼ିଥିବା ନବୀନଙ୍କର ଯେ ଚକୋଲେଟ୍ ପ୍ରେମ ଅଛି ତାହା ସେହିଦିନ ହିଁ ବହୁ ବିଧାୟକ ପ୍ରଥମ ଥର ପାଇଁ ଜାଣିବାକୁ ପାଇଥିଲେ ।

## ବିଧାନସଭା ବନାମ ରକ୍ଷାବନ୍ଧନ

**ର**କ୍ଷାବନ୍ଧନ ଉତ୍ସବ ସାଧାରଣତଃ ଠାକୁରଙ୍କ ନିକଟରେ ହୋଇଥାଏ । କ୍ରମେ ତାହା ଘର ଘର ବ୍ୟାପି ଯାଇଛି । ଭଉଣୀ ଭାଇକୁ ରାକ୍ଷୀ ପିନ୍ଧାଇବା ଓଡ଼ିଶାରେ ଏକ ପରମ୍ପରା ହୋଇଗଲାଣି । କିନ୍ତୁ ବିଧାନସଭା ମଧ୍ୟରେ ଯେ ରାକ୍ଷୀ ଉତ୍ସବ ପାଳିତ ହୁଏ ଏହା କେହି ଭାବି ବି ନଥିଲେ । ସେଦିନ ଦେଖାଗଲା ଡାକ୍ତର କମଳା ଦାସ ବିଭିନ୍ନ ବିଧାୟକଙ୍କ ପାଖକୁ ରାକ୍ଷୀ ଆଉ ଚକୋଲେଟ୍ ପଠାଉଥାନ୍ତି । ବିଜେପିର ନିବେଦିତା ପ୍ରଧାନ ଆଉ ଗୋଟିଏ ପାଦ ଆଗେଇ ଯାଇଥିଲେ । ସେ ନିଜେ ଯାଇ ବିଧାୟକଙ୍କ ପାଖରେ ବସି ସେମାନଙ୍କୁ ରାକ୍ଷୀ ପିନ୍ଧାଇଥିବାର ଦୃଶ୍ୟ ଦେଖିବାକୁ ମିଳିଥିଲା । ମହିଳା ବିଧାୟକମାନେ ବିଧାନସଭାରେ ବିଧାୟକମାନଙ୍କୁ ରାକ୍ଷୀ ପିନ୍ଧାଇବା କୁଆଡ଼େ ଏହା ଥିଲା ପ୍ରଥମ ଘଟଣା । ନିନ୍ଦୁକମାନେ କହନ୍ତି ଏଣିକି ବିଧାୟିକାମାନେ ଗୃହରେ ପ୍ରଥମେ କହିବେ । ରାକ୍ଷୀ ପିନ୍ଧିଥିବା ବିଧାୟକ ଭାଇମାନେ ବିଧାୟିକା ଭଉଣୀକୁ ଏଣିକି ସୁଯୋଗ ଦେବେ ହିଁ ଦେବେ । ନହେଲେ ସେମାନେ କି ଭାଇ ।

## ଅଣ୍ଡା ଜିନ୍ଦାବାଦ୍

**କ୍ୟା**ପିଟାଲ ଭୁବନେଶ୍ୱର ଗୋଟିଏ ସମୟରେ ନାହିଁ, ନାହିଁ ମାଛ, ନାହିଁ, ନାହିଁ ପରିବାର ସହର ପାଲଟିଗଲା । ବନ୍ୟା ପରେ ପରିବା ଗଛ ସେହି ଅଂଚଳରେ ପଚିଯାଇଛି ଏବଂ ମାଛଗୁଡ଼ିକ ବନ୍ଧବାଡ଼ ଡେଇଁ ସମୁଦ୍ରକୁ ଚାଲି ଯାଇଛନ୍ତି । କୁଆଡ଼େ ବନ୍ୟା ଅଂଚଳର ପରିବା ଏବଂ ମାଛ ଥିଲା ରାଜଧାନୀ ବାସିନ୍ଦାଙ୍କର ଅତିପ୍ରିୟ । ରାଜଧାନୀରେ ପରିବା ଓ ମାଛ ମାର୍କେଟକୁ ଏହି ଅ ଳ ବ ।ଇ ଚଖିଥିଲା । ବନ୍ୟା ସମୟରେ ଯାହାସବୁ ପରିବା ଆସୁଛି ସବୁ ଚାଲାଣ ଏବଂ ମାଛ ମଧ ଆନ୍ଧ୍ରର । ତାହା ପୁଣି ଚଢ଼ା ଦରରେ । ରାଜଧାନୀରେ ଗୋଟିଏ ସ୍ଲୋଗାନ । ତାହା ହେଲା ଅଣ୍ଡା ଜିନ୍ଦାବାଦ୍ । ମାନେ ପରିବା, ମାଛ ଛାଡ଼ି ଅଣ୍ଡା ଖାଇ ସଙ୍କଟମୋଚନ କରନ୍ତୁ ।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ମନ୍ତ୍ରିମଣ୍ଡଳ ସଂପ୍ରସାରଣ ଦିନରେ ନହୋଇ ରାତି ଅଧରେ ହେବ ।

ଦ୍ୱିତୀୟ ବ୍ୟକ୍ତି : କାହିଁକି ?

ପ୍ରଥମ ବ୍ୟକ୍ତି : ସଫେଇ ଦେବାକୁ ସୁବିଧା ହେବ ।
ଦ୍ୱିତୀୟ ବ୍ୟକ୍ତି : କିଛି ବୁଝି ହେଲାନି ।
ପ୍ରଥମ ବ୍ୟକ୍ତି : ଶାସକ ଦଳର ସମସ୍ତ ବିଧାୟକ ଏବେ ମନ୍ତ୍ରୀ ପଦ ପାଇଁ ଆଶାୟୀ । ତେଣୁ ରାତି ଅଧରେ ସଂପ୍ରସାରଣ ହେଲେ ଅନ୍ତତଃପକ୍ଷେ କୁହାଯାଇପାରିବ ଯେ ଆପଣମାନେ ଶୋଇଥିଲେ ଯୋଗାଯୋଗ କରିହେଲାନି । ତେଣୁ ଶୋଇଲା ପୁଅର ଭାଗ ନାହିଁ ।
ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ମନ୍ତ୍ରୀ ହେବେ କି

**ମୁ**ଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ମୁଡ୍ କେତେଦିନ ହେଲା ବହୁତ ଭଲ ଅଛି । ତୃଣମୂଳ ବିଧାୟକ ତ୍ରିଲୋଚନ ବେହେରା ଏବଂ ଜେ.ଏମ୍.ଏମ୍. ବିଧାୟକ ଜର୍ଜ ତିର୍କୀଙ୍କୁ ବିଜେଡିରେ ମିଶାଇ ଦେଇ ଦୁଇଟି ଗଡ଼ ସେ ଜିତି ଯାଇଛନ୍ତି । ତେଣୁ ନବୀନଙ୍କ ମୁଡ୍ ଭଲ ରହିବ ହିଁ ରହିବ । ମୁଖ୍ୟମନ୍ତ୍ରୀ ଚୌକିରେ ବସିବା ଦିନଠାରୁ ନବୀନଙ୍କ ମୁହଁରେ ହସ କେହି ଦେଖିବାକୁ ପାଇ ନଥିଲେ । ଏବେ ତ ନବୀନ ଛୋଟିଆ ଛୋଟିଆ କଥାରେ ଲଘୁ ପରିହାସ କରି ନିଜେ ହସି ଅନ୍ୟକୁ ହସାଉଛନ୍ତି । ସେଦିନ ଜର୍ଜ ତିର୍କୀ ବିଜେଡିରେ ଯୋଗଦେବା ଅବସରରେ ବିଜେଡି ରାଜ୍ୟ କାର୍ଯ୍ୟାଳୟଠାରେ ସାମ୍ବାଦିକମାନେ ନବୀନଙ୍କ ପ୍ରତି ପ୍ରଶ୍ନ ଶର ଛାଡୁଥାନ୍ତି । ନବୀନ ହସି ହସି ଉତର ଦେଉଥାନ୍ତି । ଜଣେ ସାମ୍ବାଦିକ ପଚାରିଲେ- ତିର୍କୀ ମନ୍ତ୍ରୀ ହେବେ କି । ନବୀନ ବାଟୁଳି ଛାଡ଼ିବା ପରି ତତ୍କ୍ଷଣାତ୍ ଉତର ଦେଲେ- ଆପଣ ମନ୍ତ୍ରୀ ହେବେ କି । ସାମ୍ବାଦିକମାନେ ମନ୍ତ୍ରୀ ହେବା ପାଇଁ ଯୋଗ୍ୟ । କୁହନ୍ତୁ କିଏ ମନ୍ତ୍ରୀ ହେବେ । ନବୀନଙ୍କ ଏଇ କଥା ସାମ୍ବାଦିକଙ୍କ ମନକୁ ଛୁଇଁଗଲା । ତା'ପରେ ତ ହସ ଆଉ ହସ ।

# ତେଲମରା ମନ୍ତ୍ରୀ

**ମ**ନ୍ତ୍ରୀ ହେଲେ ତେଲ ମାରିବାକୁ ହୁଏ । ଏହା କୌଣସି ମନ୍ତ୍ରୀଙ୍କ ପାଟିରୁ ଶୁଣିବାକୁ ମିଳିବ ନାହିଁ । କିନ୍ତୁ କୌଣସି ମନ୍ତ୍ରୀ ଯଦି ଅନ୍ୟ ମନ୍ତ୍ରୀ ବିରୋଧରେ ଅଭିଯୋଗ ଆଣନ୍ତି ତେବେ ପ୍ରଥମ ଅଭିଯୋଗ ହେଉଛି ସେ ତେଲମରା ମନ୍ତ୍ରୀ । ମାନେ ତେଲ ମାରି ମନ୍ତ୍ରୀ ହୋଇଛନ୍ତି । ପୁଣି ଯେତେଦିନ ମନ୍ତ୍ରୀ ପଦ ରହିଥିବ ସେତେଦିନ ତେଲ ମରା ଚାଲିଥିବ । ଏଭଳି ଅଭିଯୋଗ ବିଜେଡି-ବିଜେପି ମେଂଟ ସରକାରରେ ଏକ ନିତିଦିନିଆ ଘଟଣାରେ ପରିଣତ ହୋଇଛି । କିନ୍ତୁ ଏଥିରୁ ଅର୍ଥମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ ବାଦ୍ ପଡ଼ିଛନ୍ତି । ସେଦିନ ରାମକୃଷ୍ଣ ଟେଲିଫୋନ୍‌ରେ ଉଚ୍ଚସ୍ୱରରେ ଗର୍ଜୁଥାନ୍ତି । ମୁଁ ହେଲି ରାମକୃଷ୍ଣ ପଟ୍ଟନାୟକ । ମୁଁ ଯାହା କହେ ତାହା କରେ ।

ମୋତେ କେହି ନାଲି ଆଖି ଦେଖାଇ ପାରିବେ ନାହିଁ । ମୁଁ ସେ ତେଲମରା ମନ୍ତ୍ରୀ ନୁହେଁ ଯେ ନାଲି ଆଖି ଦେଖି ଡରିଯିବି । ଯାହା ହେଲେ ବି ରାମକୃଷ୍ଣ ଗଞ୍ଜାମ ଟାଇଗରଟି ।

## ମନ୍ତ୍ରୀଙ୍କ ଟଙ୍କା ପ୍ରୀତି

ମୁଖ୍ୟମନ୍ତ୍ରୀଙ୍କ ନିକଟକୁ କୁଆଡ଼େ ଅଭିଯୋଗ ଆସିଲା । ଜଣେ ରାଷ୍ଟ୍ରମନ୍ତ୍ରୀ ଲକ୍ଷାଧିକ ଟଙ୍କା ନେଲେ । କଥା ଦେଇଥିଲେ ତାଙ୍କ ବିଭାଗର କେତେକ କର୍ମଚାରୀଙ୍କୁ ବଦଳି କରିବେ କିନ୍ତୁ ବଦଳି ଅର୍ଡ଼ର ବାହାରିବା ବେଳକୁ ସେଥିରେ ଉକ୍ତ କର୍ମଚାରୀଙ୍କ ନାଁ ନାହିଁ । ଏବେ ଟଙ୍କା ଫେରସ୍ତ ମାଗିଲେ ମନ୍ତ୍ରୀ ଟଙ୍କା ଫେରାଉ ନାହାନ୍ତି । ଟଙ୍କା ଦେଇଥିବା ଅଫିସରମାନେ ଛଟପଟ ହେଲେଣି । ତୁରନ୍ତ ଏହାର ସମାଧାନ କରନ୍ତୁ ବୋଲି ଜନୈକ ବିଧାୟକ ନବୀନଙ୍କ ନିକଟରେ ଫେରାଦ୍ ହେଲେ । ସେତେବେଳକୁ ନେଡ଼ିଗୁଡ଼ କହୁଣୀକୁ ବୋହି ସାରିଲାଣି । ମାନେ ଅଭିଯୋଗ ପୂର୍ବରୁ ୩ ଜଣ ମନ୍ତ୍ରୀ ବହିଷ୍କାର ହୋଇସାରିଥିଲେ ।

## ଦିଲ୍ଲୀ କା ଲଡୁ

ନବୀନ ମନ୍ତ୍ରିମଣ୍ଡଳରେ ଯିଏ ମନ୍ତ୍ରୀ ହୋଇଛନ୍ତି ତାଙ୍କର ମନର ଅବସ୍ଥା କ'ଣ ଆଉ ଯିଏ ମନ୍ତ୍ରୀ ହେବେ ହେବେ ହୋଇ ହୋଇପାରୁ ନାହାନ୍ତି ତାଙ୍କର ମନର ଅବସ୍ଥା କ'ଣ ତାହା କେବଳ ଅନୁଭବୀ ହିଁ କହିପାରିବ । ଯେକୌଣସି ସମୟରେ ମନ୍ତ୍ରିମଣ୍ଡଳ ସଂପ୍ରସାରିତ ହେବ ବୋଲି ନବୀନ କହି ଆସୁଛନ୍ତି । ଦିନକୁ ଦିନ ମନ୍ତ୍ରୀ ଆଶାୟୀଙ୍କ ସଂଖ୍ୟା ବୃଦ୍ଧି ପାଇଚାଲିଛି । ଏମିତି ନୂଆ ମନ୍ତ୍ରୀ ହୋଇ ଶପଥ ନେବାବେଳକୁ ଏକ ଦାମିକିଆ ପୋଷକ କିମ୍ବା କୋର୍ଟ ପିନ୍ଧିବାକୁ ହେବ । ମନ୍ତ୍ରୀ ଆଶାୟୀ ବିଧାୟକମାନେ ନୂଆ ପୋଷାକ କିଣି ରଖିଲେଣି । ଖାଲି ମୁଖ୍ୟମନ୍ତ୍ରୀଙ୍କ ଘୋଷଣାକୁ ଅପେକ୍ଷା । ଆଉ ଏହି ଅପେକ୍ଷା କରି କରି ଆଖିରୁ ପାଣି ମରିଗଲାଣି । ନବୀନ ୩ ଜଣ ମନ୍ତ୍ରୀଙ୍କୁ ବିଦାୟ କରିବା ପରେ ସବୁ ମନ୍ତ୍ରୀ ଛାନିଆଁ । କେତେବେଳେ କେଉଁ ମୁହୂର୍ତ୍ତରେ କାହାର ଯେ ପାଳି ନ ପଡ଼ିବ ତାହା କହିହେବ ନାହିଁ । ଉଭୟ ମନ୍ତ୍ରୀ ଏବଂ ମନ୍ତ୍ରୀ ଆଶାୟୀଙ୍କ ନବୀନଙ୍କ ଭେଳିକି ନିଦ ଏବଂ ଭୋକ ଛଡ଼ାଇ ନେଇଛି । ଦିଲ୍ଲୀ ବାସିନ୍ଦା ନବୀନ ଦିଲ୍ଲୀ ଲଡୁର ମଜା ବେଶ୍ ଚଖାଉଛନ୍ତି ।



## ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ନବୀନଙ୍କୁ ଓଡ଼ିଶାବାସୀ ନୁହେଁ ଭାରତବାସୀ ବି ଧନ୍ୟବାଦ ଦେବା କଥା ।

ଦ୍ୱିତୀୟ ବ୍ୟକ୍ତି : କାହିଁକି ?
ପ୍ରଥମ ବ୍ୟକ୍ତି : ତାଙ୍କର ଏକାନ୍ନବର୍ତୀ ପରିବାର ଆଦର୍ଶ ପାଇଁ ।
ଦ୍ୱିତୀୟ ବ୍ୟକ୍ତି : କିଛି ବୁଝି ହେଲା ନାହିଁ ।
ପ୍ରଥମ ବ୍ୟକ୍ତି : ଏଇ ଯେମିତି ତୃଣମୂଳ କଂଗ୍ରେସ ଏବଂ ଜେ.ଏମ୍.ଏମ୍. ବିଧାୟକଙ୍କୁ ସେ ବିଜେଡିରେ ମିଶାଇଲେ ।
ଦ୍ୱିତୀୟ ବ୍ୟକ୍ତି : ସେଇଠୁ କ'ଣ ହେଲା ?
ପ୍ରଥମ ବ୍ୟକ୍ତି : ବର୍ଷେ ଅପେକ୍ଷା କରନ୍ତୁ । ଦେଖିବେ ଓଡ଼ିଶାରେ ଆଉ ବିରୋଧୀ ଦଳ ନଥିବ । ନବୀନ ଅନ୍ୟସବୁ ଦଳର ବିଧାୟକଙ୍କୁ ବିଜେଡିରେ ମିଶାଇ ଦେଇଥିବେ ।
ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ହାଫ୍ ଟାଇମ୍

**ବ**ନ୍ୟା ପରିସ୍ଥିତି ସଂପର୍କରେ ସମୀକ୍ଷା କରିବା ନିମନ୍ତେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଅଧକ୍ଷତାରେ ସଚିବାଳୟର ତୃତୀୟ ମହଲା ସମ୍ମିଳନୀ କକ୍ଷରେ ମନ୍ତ୍ରୀ ପରିଷଦର ବୈଠକ ବସିଥାଏ । ହଠାତ୍ ଦେଖାଗଲା ମୁଖ୍ୟମନ୍ତ୍ରୀ ବାହାରକୁ ଚାଲି ଆସିଲେ । ବାହାରେ ଥିବା ନିରାପତା ରକ୍ଷୀ ସଙ୍ଗେସଙ୍ଗେ ତୟାର । ସାମ୍ବାଦିକମାନେ ମଧ ଖବର ସଂଗ୍ରହ କରିବାକୁ ନବୀନଙ୍କ ପିଛା ଧରିଲେ । ମୁଖ୍ୟମନ୍ତ୍ରୀ ଟିକିଏ ହସିଦେଇ କିଛି ଇସାରା ଦେଲେ । ସମଝଦାର୍ ଆଦ୍‌ମି କୋ ଇସାରା ଭି କାଫି ହୈ ପରି ନବୀନଙ୍କ ଇସାରାକୁ ସହଜରେ ଠଉରେଇ ନେଲେ ନିରାପତାପକ୍ଷୀମାନେ । ସଙ୍ଗେସଙ୍ଗେ ଘୋଷଣା କରିଦେଲେ ହାଫ୍ ଟାଇମ୍ ମାନେ ନବୀନ ସିଗାରେଟ୍ ଟାଣିବାକୁ ଯାଇଛନ୍ତି ।

# ବନ୍ୟା ଆତଙ୍କ

**ଆ**ଉ କାହାରିକୁ ବନ୍ୟା ଆତଙ୍କ ହେଉ କି ନହେଉ ସଚିବାଳୟ କର୍ମଚାରୀ କିନ୍ତୁ ବହୁ ଆତଙ୍କିତ । ବନ୍ୟା ପରିସ୍ଥିତି ବୁଝିବା ସଂପର୍କରେ ସଚିବାଳୟ କର୍ମଚାରୀଙ୍କ ରାଜସ୍ୱ ବିଭାଗର ନିୟନ୍ତ୍ରଣ କକ୍ଷ ନିକଟରେ ପ୍ରବଳ ଭିଡ଼ । ସତେ ଯେମିତି ସଚିବାଳୟରେ ରଥଯାତରା । ସବୁ ବିଭାଗ ଖାଲି । ବନ୍ୟା ସଂପର୍କରେ ଖବର ନଜାଣିଲେ ସଚିବାଳୟର ସେମାନେ ବା କି କର୍ମଚାରୀ । ଘରକୁ ଫେରିଲେ ସ୍ତ୍ରୀ, ପିଲାପିଲି ପଚାରିବେ କେଉଁ ନଦୀରେ କେତେ ବନ୍ୟା । କେଉଁଠି ଘାଇ ଭାଙ୍ଗିଲା । ଉତର ନଦେଇ ପାରିଲେ କି ସ୍ୱାମୀ, କି ବାପା । ନହେଲେ ନଦୀ ନଥିବା ପାହାଡ଼ ଅଂଚଳର ସଚିବାଳୟ କର୍ମଚାରୀ କ'ଣ କାମଛାଡ଼ି ବନ୍ୟା ଖବର ବୁଝିବା ପାଇଁ ନିୟନ୍ତ୍ରଣ କକ୍ଷଠାରେ ଭିଡ଼ କରୁଥାନ୍ତେ ।

# ସଚିବାଳୟ ବର୍ଷା

**ବ**ର୍ଷା ତ ବର୍ଷା ପୁଣି ସଚିବାଳୟ ବର୍ଷା କ'ଣ । କିନ୍ତୁ ସଚିବାଳୟ ବର୍ଷା କହିଲେ ତା'ର ଏକ ଭିନ୍ନ ଅର୍ଥ ଥାଏ । ମାନେ ବର୍ଷା ଛାଡ଼ିଗଲା ପରେ ସଚିବାଳୟରେ ବର୍ଷା ହୁଏ । ତିନି ମହଲା ବିଶିଷ୍ଟ ସଚିବାଳୟ ଯେଉଁଠି ମୁଖ୍ୟମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ମୁଖ୍ୟ ଶାସନ ସଚିବଙ୍କ କାର୍ଯ୍ୟାଳୟ ଅଛି ସେଠାରେ ଛାତ ଅବସ୍ଥା ନକହିଲେ ବରଂ ଭଲ ହେବ । ମାନେ ପଇସା ଖର୍ଚ୍ଚ ହୋଇଛି ପ୍ରଚୁର । ସେହି ଅନୁଯାୟୀ ମଧ୍ୟ ଠିକାମୀର କଳନା ନାହିଁ ମାନେ ଉପରେ ଛାତ କିନ୍ତୁ ବର୍ଷା ପାଣି ପଡୁଛି ଛାତରୁ ଟୁପୁରୁ ଟୁପୁରୁ । ବର୍ଷାଦିନ ଆସିଗଲେ ସଚିବାଳୟରେ ଫାଇଲ୍ କାମ କରୁଥିବା କର୍ମଚାରୀ ସମସ୍ତେ ଓଦା । ନିନ୍ଦୁକଙ୍କ ମତରେ ବର୍ଷା ସଂପର୍କରେ କିଛି ଅନୁଭବ ହେଲେ ସିନା ବନ୍ୟା, ବର୍ଷା ସଂପର୍କୀୟ ଫାଇଲ ଉପରେ ସଚିବାଳୟ କର୍ମଚାରୀଙ୍କ ହାତ ଚାଲିବ । ସଚିବାଳୟ କର୍ମଚାରୀଙ୍କ ମନର କଥା ସରକାର ଠିକ୍ ଭାବେ ଠଉରାଇଛନ୍ତି । ଧନ୍ୟ ସରକାର, ଧନ୍ୟ ସଚିବାଳୟ କର୍ମଚାରୀ ।

# ଆମେ ବି ସାମ୍ବାଦିକ

**ସ**ଚିବାଳୟରେ ବନ୍ୟା ଆତଙ୍କ ସୃଷ୍ଟି ହେଲା । କିଏ କହିଲା ଦଳେଇ ଘାଇ ଭାଙ୍ଗି ଗଲାଣି ତ କିଏ କହିଲା କାଠଯୋଡ଼ି ରିଂ ବନ୍ଧ ଭାଙ୍ଗି କଟକରେ ପାଣି ପଶିଗଲାଣି । ରାଜସ୍ୱ ନିୟନ୍ତ୍ରଣ କକ୍ଷରେ ସାମ୍ବାଦିକମାନଙ୍କୁ ବନ୍ୟା ସଂପର୍କରେ ସୂଚନା ଦିଆଯାଉଥାଏ । ଲିଖିତ ଭାବେ ବନ୍ୟା ରିପୋର୍ଟ ଦିଆଯିବାର ବ୍ୟବସ୍ଥା ହେଲା । ହଠାତ୍ ନିୟନ୍ତ୍ରଣ କକ୍ଷରେ ପ୍ରବଳ ଭିଡ଼ ହୋଇଗଲା । ସାମ୍ବାଦିକମାନେ କୋଣଠେସା ହୋଇଗଲେ । ଲିଖିତ ରିପୋର୍ଟ ଉପରେ ଉପରେ ଉଡ଼ିଲା । ଠେଲାପେଲା କରୁଥିବା ବ୍ୟକ୍ତିଙ୍କୁ ସାମ୍ବାଦିକମାନେ ପ୍ରଶ୍ନ କଲେ ଆପଣମାନେ କିଏ ବୋଲି । ଉତର ମିଳିଲା ଆମେ ସାମ୍ବାଦିକ । କେଉଁ କାଗଜର ବୋଲି ଜାଣିବାକୁ ଚାହିଁବାରୁ କୁହାଗଲା ପରେ ଜାଣିବ । ସାମ୍ବାଦିକମାନେ 'ଥ' ହୋଇ ଚାହିଁରହିଥା'ନ୍ତି । ଠେଲାପେଲା କରୁଥିବା ଲୋକମାନେ କାଗଜ ଧରି ଚମ୍ପଟ । ଯେତେଯାହା ହେଲେ ମଧ୍ୟ ଅସଲି ଅପେକ୍ଷା ନକଲିର ଚାହିଦା ଅଧିକ । ଏହାକୁ କେହି ଅସ୍ୱୀକାର କରିପାରିବେ ନାହିଁ ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ପୁରୁଣାକୁ ଛାଡ଼ି କେହି ବଂଚି ପାରିବେନି ।

ଦ୍ୱିତୀୟ ବ୍ୟକ୍ତି : କିଛି ବୁଝି ହେଲାନି ।

ପ୍ରଥମ ବ୍ୟକ୍ତି : ଏଇ ଯେମିତି କେତେ ପ୍ରକାର ଆଧୁନିକ ମାରଣାସ୍ତ୍ର ବାହାରିଲାଣି ।

ରିଭଲଭର, ପିସ୍ତଲ, ଏ.କେ. ୪୭ । ଏମିତି ଅନେକ, ଅନେକ ।



ଦ୍ୱିତୀୟ ବ୍ୟକ୍ତି : ସେଇଠୁ କ'ଣ ହେଲା ?

ପ୍ରଥମ ବ୍ୟକ୍ତି : ଆମ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ । ତାଙ୍କୁ କୁଆଡ଼େ ହତ୍ୟା କରିବା ପାଇଁ ଷଡ଼ଯନ୍ତ୍ର ହୋଇଥିଲା । ରାତି ଅଧରେ ଜଣେ ଦୁର୍ବୃତ ସେ ରହୁଥିବା ନବୀନ ନିବାସର ପଛପାଖ ପାଚେରୀ ଡେଇଁ ପଶିଥିଲା । ଦୁର୍ବୃତର ପକେଟ୍‌ରେ ଥିଲା ଚାଖଣ୍ଡିଏ ଛୁରୀ ଏବଂ ଟେକା, ପଥର । ମାନେ ଛୁରୀ ଦେଖାଇଲେ ନବୀନ ଭୟଭୀତ ହୋଇଯିବେ ଏବଂ ସେହି ସମୟରେ ସେ ତାଙ୍କ ଉପରକୁ ଟେକା ଫୋପାଡ଼ି ହତ୍ୟା କରିବ । ଏଭଳି ହତ୍ୟାକାଣ୍ଡ ହେଉଥିଲା ଶହଶହ ବର୍ଷ ତଳେ । ଯାହା ହେଲେ ବି ପୁରୁଣାକୁ ନେଇ ଆମକୁ ଚାଲିବାକୁ ହେବ ହିଁ ହେବ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# କଳିଙ୍ଗ ରଥ

**ବି**ଜୁ ପଟ୍ଟନାୟକ ଏବଂ କଳିଙ୍ଗ ରଥ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ । ଯେତେ କିସମର ଗାଡ଼ି ବଜାରକୁ ଆସୁ ସେଥିରେ ବିଜୁଙ୍କର ଯାଏଆସେ ନାହିଁ । ନିର୍ବାଚନ ସମୟ ଆସିଗଲେ ବିଜୁଙ୍କର ସାହାଭରସା ହୋଇଥାଏ କଳିଙ୍ଗ ରଥ । ମାନେ କଳିଙ୍ଗ ରଥରେ ଯାଇ ବିଜୁ ନିର୍ବାଚନ ପ୍ରଚାର କରନ୍ତି । କଳିଙ୍ଗ ରଥରେ ବିଜୁ ସାରାଜୀବନ ନିର୍ବାଚନ ପ୍ରଚାର କରି ଆସିଥିଲେ । ବିଜୁଙ୍କ ଅବର୍ତମାନରେ ଏହି କଳିଙ୍ଗ ରଥର ଅବସ୍ଥା କ'ଣ ତାହା ମଧ ଜାଣିବା ପାଇଁ ସମସ୍ତଙ୍କୁ ଉତ୍ସୁକତା ରହିବା ସ୍ୱାଭାବିକ୍ । ବିଜୁଙ୍କ ପରଲୋକ ପରେ ଏହି କଳିଙ୍ଗ ରଥଟି ନବୀନ ନିବାସରେ ପୂର୍ବପରି ରହିଛି । ଏହା ଚଳାଚଳ କରୁନାହିଁ । ବିଜୁ ପୁତ୍ର ନବୀନ ଏହି ରଥକୁ ମ୍ୟୁଜିୟମରେ ରଖିବା ପାଇଁ ସ୍ଥିର କରିଛନ୍ତି । ଆଧୁନିକ କଳିଙ୍ଗର ସମ୍ରାଟ ଖାରବେଳ ବୋଲି ନିଜକୁ ଅଭିହିତ କରି ଓଡ଼ିଶାର ସ୍ୱାଭିମାନ ପ୍ରତି ସବୁବେଳେ ଗୁରୁତ୍ୱ ଦେଇ ଆସୁଥିବା ବିଜୁଙ୍କ ଅବର୍ତମାନରେ 'କଳିଙ୍ଗ ରଥ' ହିଁ ଓଡ଼ିଶାବାସୀଙ୍କ ସ୍ୱାଭିମାନର ପ୍ରତୀକ ହେବ ହିଁ ହେବ । ଦେଖାଯାଉ ବିଜୁଙ୍କ କଳିଙ୍ଗ ରଥ କେବେ ମ୍ୟୁଜିୟମକୁ ଯାଉଛି ।

# ତେହେଲକା ଡଟ୍ କମ୍

**ତେ**ହେଲକା ଡଟ୍ କମ୍ ଭାରତୀୟ ରାଜନୀତିରେ ଝଡ଼ ସୃଷ୍ଟି କଲା । ଏହାର ପ୍ରଭାବ କେବଳ ଯେ ରାଜନୀତି ଉପରେ ପଡ଼ିଲା ତାହା ନୁହେଁ । ପୋଷାକପତ୍ର ଉପରେ ମଧ

ପଡ଼ିଲା । ତେହେଲକା ଡଟ୍ କମ୍ ଘଟଣାର କିଛିଦିନ ଯାଇଛି କି ନାହିଁ ରାଜଧାନୀ ଭୁବନେଶ୍ୱରରେ ବିକ୍ରି ହେଲା ତେହେଲକା ଡଟ୍ କମ୍ ଲେଖାଥିବା ଗଞ୍ଜି ଓ ସାର୍ଟ । ଯୁବକ ଯୁବତୀମାନଙ୍କ ମଧ୍ୟରେ ଏହି ପୋଷାକ ମଧ୍ୟ ବେଶ୍ ପ୍ରିୟ ହେଲା । ଏହି ପୋଷାକ ବିକ୍ରି କରୁଥିବା ବ୍ୟକ୍ତିଙ୍କୁ କେତେ ପୋଷାକ ବିକ୍ରୀ ହେଉଛି ବୋଲି ପଚରାଗଲେ ତାହାର ଉତର ମଧ୍ୟ ମିଳିଲା ଅଜବ । ଉତର ଥିଲା - ତେହେଲକା ଡଟ୍ କମ୍ ହିଁ ସେମାନଙ୍କୁ ବଂଚାଇ ଦେଇଛି । ସେମାନେ ଆଣିଥିବା ପୋଷାକ ସବୁ ଗୋଟିଏ ଦିନରେ ବିକ୍ରୀ ହୋଇଯାଉଛି । ତେହେଲକା ଡଟ୍ କମ ପରି ଘଟଣା ଯଦି ସବୁବେଳେ ଘଟନ୍ତା ତେବେ ଆଉ କିଛି ହେଉ କି ନହେଉ ଅନ୍ତତଃପକ୍ଷେ ସେମାନଙ୍କ ପରି କିଛି ଲୋକ ତ ବ ିବାର ରାହା ପାଇଯାଆନ୍ତେ । ଅବଶ୍ୟ ଭିନ୍ନ ଦୃଷ୍ଟିରୁ ଦେଖିଲେ ଏହା ସତ ହିଁ ସତ ।

# ବିଜୁଳିର ଲୁଚକାଳି

**ସା**ରା କ୍ୟାପିଟାଲରେ ଗୋଟିଏ ଆଲୋଚନା । କୁଆଡ଼େ ବିଜୁଳି ଲୁଚକାଳି ଖେଳ ଖେଳୁଛି । ଗ୍ରାହକଙ୍କୁ ଉନ୍ନତମାନର ସେବା ଯୋଗାଇ ଦେବାକୁ ଅଙ୍ଗୀକାରବଦ୍ଧ ସେସ୍‌କୋ ହଠାତ୍ ଏଭଳି ଲୁଚକାଳି ଖେଳିବ ବୋଲି କ୍ୟାପିଟାଲବାସୀଙ୍କୁ ଜଣାଇ ଦେଲା । ମାର୍ଚ୍ଚ ମାସର ମଧ୍ୟଭାଗରେ କ୍ୟାପିଟାଲର ତାପମାତ୍ରା ୪୦ ଡିଗ୍ରୀ ସେଂଟିଗ୍ରେଡ଼ ଛୁଇଁଲାଣି । ଏଭଳି ପରିସ୍ଥିତିରେ ବିଜୁଳି ଲୁଚକାଳି ଖେଳିବ ବୋଲି କିପରି ନିଷ୍ପ ି ନିଆଗଲା ତାହା କ୍ୟାପିଟାଲବାସୀଙ୍କ ମନରେ ପ୍ରଶ୍ନ ଉଙ୍କି ମାରିବା ସ୍ୱାଭାବିକ । କିନ୍ତୁ ଏହାର ଉତର ମଧ୍ୟ ଅତି ସରଳ । କୁଆଡ଼େ କ୍ୟାପିଟାଲରେ ବିଦ୍ୟୁତ୍ ଗ୍ରାହକଙ୍କ ବକେୟା ବହୁତ । ଉତାପ ଅଧିକ ହେବା ସମୟରେ ବିଜୁଳି ଲାଇନ୍ କାଟି ଦିଆଗଲେ ଗରମରେ ଲୋକମାନେ ଛଟପଟ ହେବେ ଏବଂ ପ୍ରାଣ ବିକଳରେ ବକେୟା ପଇଠ କରିଦେବେ । ଏହାଠାରୁ ସହଜ ଉପାୟ ଆଉ କ'ଣ ଅଛି । ଧନ୍ୟ ସେସ୍‌କୋ । ଧନ୍ୟ ବିଦ୍ୟୁତ୍ ବିଭାଗ ।

# ଆକସ୍ମିକ ପରିବର୍ତନ

**ବି**ଧାନସଭାରେ ବିଜେପି ବିଧାୟକମାନଙ୍କ ଆଚରଣରେ ହଠାତ୍ ପରିବର୍ତନ ଆସିଥିବାର ଦେଖିବାକୁ ମିଳିଲା । ମାନେ ବିରୋଧୀ ବାଲାଏ ଯଦି କିଛି ଆକ୍ଷେପ କରୁଛନ୍ତି ତେବେ ତତ୍‌କ୍ଷଣାତ୍ ବିଜେପି ବିଧାୟକମାନେ ତା'ର ପାଲଟା ଜବାବ ଦେଉଛନ୍ତି । ଠିକଣା ସମୟରେ ବିଜେପି ବିଧାୟକମାନେ ନିଜନିଜ ଆସନ ନିକଟରେ ଠିଆ ହୋଇ ପାଟିତୁଣ୍ଡ କରିବାକୁ ମଧ୍ୟ ପଛାଉ ନାହାନ୍ତି । ତେହେଲକା ଡଟ୍ କମ୍ ଘଟଣା ପରେ ବିଜେପି ବାଲାଏ ଏଭଳି ଏକତ୍ରିତ ହେଲେ ଯାହା- ବିଜେପି ପାଇଁ ଶୁଭଖବର ନିଶ୍ଚିତ । କିନ୍ତୁ ନିନ୍ଦୁକମାନେ

କହୁଛନ୍ତି ବିଜେପିଠାରୁ ବିଜେଡି ବିଧାୟକମାନେ ଶିକ୍ଷାଲାଭ କରୁନାହାନ୍ତି ତ । ତେବେ ନିନ୍ଦୁକମାନେ କ'ଣ ଜାଣିଛନ୍ତି ତେହେଲକା ଠାରୁ ଆହୁରି ବଡ଼ ଘଟଣାକୁ ହଜମ କରିବାର ଶକ୍ତି ବିଜେଡିର ଅଛି ବୋଲି । ଯାହା ହେଲେ ବି ସବୁ ଅସନ୍ତୁଷ୍ଟଙ୍କୁ ନେଇ ବିଜେଡି ଗଠିତ ହୋଇଛିଟି ।

## ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଠିକାଦାରଙ୍କ ପ୍ରତି ମୁଖ୍ୟମନ୍ତ୍ରୀ କଡ଼ା ପଦକ୍ଷେପ ନେବେ ।

ଦ୍ୱିତୀୟ ବ୍ୟକ୍ତି : କ'ଣ ପାଇଁ ?

ପ୍ରଥମ ବ୍ୟକ୍ତି : ଏହି ଦେଖୁନୁ- ସେହି ବିଭାଗରେ ଟେଣ୍ଡର ଡକାହେଲା । ମୁଖ୍ୟମନ୍ତ୍ରୀ ପରସେଂଟଜ ନେଲେନି । ତେଣୁ ଟେଣ୍ଡର ଦର କମିଲା ।



ଦ୍ୱିତୀୟ ବ୍ୟକ୍ତି : ମୁଖ୍ୟମନ୍ତ୍ରୀ ସିନା ନେଲେନି, ମନ୍ତ୍ରୀ, ଅଫିସର ତ ନେବେ ।

ପ୍ରଥମ ବ୍ୟକ୍ତି : ଯେଉଁଠି ମୁଖ୍ୟମନ୍ତ୍ରୀ ସଚ୍ଚୋଟ । ସେଠି ମନ୍ତ୍ରୀ, ଅଫିସର ସଚ୍ଚୋଟ ହେବେ ହିଁ ହେବେ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

## ନବୀନଙ୍କ ଦୁଃଖ

**ଚା**ରିଦିନ ଦିଲ୍ଲୀରେ ବିତାଇବା ପରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସେଦିନ ଭୁବନେଶ୍ୱର ବାହୁଡ଼ିଲେ । ବିମାନରୁ ଓହ୍ଲାଇବା ବେଳକୁ ଦେଖାଗଲା କେଜାଣି କାହିଁକି ନବୀନ ବିଷାଦଗ୍ରସ୍ତ ହୋଇପଡ଼ିଛନ୍ତି । ମାନେ ମୁହଁରୁ ହସ ଲିଭିଯାଇଥାଏ । ନବୀନ ବିମାନ ବନ୍ଦରରୁ ସିଧାସଳଖ ନବୀନ ନିବାସରେ ଯାଇ ପହଂଚିଲେ । ସବୁଥର ପରି କିଛି ସାମ୍ବାଦିକ ତାଙ୍କ ପ୍ରତୀକ୍ଷାରେ ଥା'ନ୍ତି । କାଳେ ମୁଖ୍ୟମନ୍ତ୍ରୀ କହୁକହୁ ଭାନୁମତି ପେଡ଼ି ଖୋଲିଦେବେ କି । ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବା ପରଠାରୁ ନବୀନଙ୍କର ସେଦିନର ଆଚରଣ କିନ୍ତୁ ଥିଲା ବ୍ୟତିକ୍ରମ । ପୋର୍ଟିକୋ ତଳେ କାର୍ ପହଂଚିଯିବା ପରେ ନବୀନ କାର୍‌ରୁ ଓହ୍ଲାଇ କାହାକୁ କିଛି ନକହି ସିଧାସିଧା ଘର ମଧ୍ୟକୁ ପ୍ରବେଶ କଲେ । ଅପେକ୍ଷାରତ ସାମ୍ବାଦିକମାନେ ନବୀନଙ୍କ ମୁହଁରୁ ଦିଲ୍ଲୀ ରହଣୀ ସଂପର୍କରେ ଦୁଇପଦ ଶୁଣିବା ପାଇଁ ଯେତେ କାକୁତି ମିନତୀ ହେଲେ ମଧ୍ୟ ସେ ସେଥିପ୍ରତି ଆଦୌ ଦୃଷ୍ଟି ଦେଲେନି । ନବୀନ ଘରେ ପଶିଲେ ଆଉ ପଦାକୁ ବାହାରିଲେନି । ନବୀନଙ୍କ ଆଚରଣ ଦେଖି ସାମ୍ବାଦିକମାନେ ତାଜୁବ । ସଙ୍ଗେସଙ୍ଗେ

ଆରମ୍ଭ ହୋଇଗଲା ଅନୁସନ୍ଧାନ । ନବୀନଙ୍କୁ କ'ଣ କିଏ କିଛି କହିଛି କି । ତାଙ୍କର କ'ଣ ଅତି ପ୍ରିୟ ଜିନିଷ କେଉଁଠି ହଜିଯାଇଛି କି । ସେ ଯାହାକୁ ଭଲ ପାଆନ୍ତି ତାକୁ କିଏ କଡ଼ା କଥା ଶୁଣାଇଛି କି । ଏମିତି ଅନେକ, ଅନେକ । କିନ୍ତୁ ତଦନ୍ତ କ୍ରମେ ଶିଥିଳ ହୋଇଗଲା । ଯେତେ ଗଭୀର ତଦନ୍ତ କରାଗଲେ ମଧ୍ୟ ନବୀନଙ୍କ ବିଷାଦର କାରଣ ଜଣାପଡ଼ିଲାନି । ଯେତେ ଯାହା ହେଲେ ମଧ୍ୟ ସାମ୍ବାଦିକଙ୍କୁ ପ୍ରକୃତ ତଥ୍ୟ ବାହାର କରିବା ବାଟ ମାଲୁମ୍ । ସେଦିନର ଘଟଣାକୁ ନେଇ ସାମ୍ବାଦିକ ମହଲରେ ବେଶ୍ ଚର୍ଚ୍ଚା ଚାଲିଲା । ଘଟଣାର ସତ୍ୟାସତ୍ୟ ଜାଣିବା ପାଇଁ ତଦନ୍ତ ପରେ ତଦନ୍ତ ଚାଲିଲା । କିନ୍ତୁ ନବୀନ ହେଉଛନ୍ତି ଗଭୀର ଜଳର ମାଛ । ରାଜନୀତିକୁ ଆସିବା ପରେ ସେ ଆହୁରି ଗଭୀର ଜଳର ମାଛ ହୋଇଯାଇଛନ୍ତି । ତେଣୁ ସାମ୍ବାଦିକ ଯେତେ ତଦନ୍ତ କଲେ ମଧ୍ୟ ତାଙ୍କର ବିଷାଦର କାରଣ ଜାଣିବା ସମ୍ଭବ ହେଲା ନାହିଁ । ଯାହାହେଲେ ମଧ୍ୟ ନବୀନ ହେଉଛନ୍ତି ବିଜୁ ପୁତ୍ର । ମାନେ ଓଳିଆରୁ ପଡ଼ି ଗଜା ।

## ଆମେ ସବୁ 'ନ'

**ଦୂ**ରଦର୍ଶନରେ ୨୪ ଘ ିଆ ଓଡ଼ିଆ କାର୍ଯ୍ୟକ୍ରମର ଉଦ୍‌ଘାଟନ ଉତ୍ସବ ଚାଲିଥାଏ । ସ୍ଥାନ ଥିଲା ଦୂରଦର୍ଶନ ପରିସର । ଭାଷଣ ଦେବାକୁ ଆସିଲେ ଭୁବନେଶ୍ୱର ସାଂସଦ ଡକ୍ଟର ପ୍ରସନ୍ନ କୁମାର ପାଟଶାଣୀ । କହୁକହୁ କବିତା ଢଙ୍ଗରେ କହିଲେ ଆମେ ସବୁ ଯେତେ ଅତିଥି ସମସ୍ତେ 'ନ' । ମାନେ ସମସ୍ତଙ୍କ ନାମର ପଛ ଅକ୍ଷର ହେଉଛି 'ନ' । ଏଇ ଯେମିତି ମୁଁ ହେଲି ପ୍ରସନ୍ନ, ସେପାଖେ ବସିଛନ୍ତି ନବୀନ । ଏଇ ସେପଟେ ବସିଛନ୍ତି ମନମୋହନ ତା'ର ପାଖକୁ ବିଶ୍ୱଭୂଷଣ । ଏହି ନାମଗୁଡ଼ିକରେ କି ମହତ୍ୱ ଅଛି ସତେ । ବୋଧହୁଏ ଏକାଠି ବସିବା ପାଇଁ ସୃଷ୍ଟିକର୍ତ୍ତା ଆମମାନଙ୍କ ନାମ ପଛ ଅକ୍ଷର 'ନ' ରଖିଛନ୍ତି । ସତରେ କେତେ ସୁନ୍ଦର ଏ ବିଶ୍ୱକର୍ମା । ପ୍ରସନ୍ନଙ୍କ ଏଭଳି ଭାଷଣ ଦର୍ଶକଙ୍କ ମନକୁ ବେଶ୍ ଛୁଇଁଥିଲା । ସଭାସ୍ଥଳ ହସରେ ଉଛୁଳି ପଡ଼ିଥିଲା ।

## ଆସରେ ଆସ ଫଟୋ ଉଠାଇବା

**ସେ**ଦିନ ଥିଲା ଏପ୍ରିଲ୍ ୧୦ ତାରିଖ । ଏହା ହେଉଛି ନବୀନ ପଟ୍ଟନାୟକଙ୍କ ପ୍ରଥମ ସରକାରର ଘଟଣା । ବିଧାନସଭା ବଜେଟ୍ ଅଧିବେଶନର ଶେଷ ଦିବସ । ପରମ୍ପରା ଅନୁଯାୟୀ ବାଚସ୍ପତି ଶରତ କୁମାର କର ବିଧାୟକ ଓ ସାମ୍ବାଦିକମାନଙ୍କୁ ଭୂରିଭୋଜନରେ ଆପ୍ୟାୟିତ କରିଥିଲେ । ରାତି ପ୍ରାୟ ଦଶଟା ବେଳକୁ ବିଧାନସଭା କାର୍ଯ୍ୟକ୍ରମକୁ ସ୍ଥଗିତ ରଖାଯାଇ ଏହି ଭୋଜନ ପର୍ବ ଆରମ୍ଭ ହେଲା । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଆସିଲେ ।

ସଙ୍ଗେସଙ୍ଗେ ତାଙ୍କ ପାଖାପାଖି ହେବା ପାଇଁ ବିଧାୟକ, ମନ୍ତ୍ରୀଙ୍କ ମଧ୍ୟରେ ପ୍ରତିଯୋଗିତା ଚାଲିଲା । ମୁଖ୍ୟମନ୍ତ୍ରୀ ଭାତ, ମାଂସକୁ ପ୍ଲେଟରେ ନେଇ ବାମ ହାତରେ ଚାମଚ ପ୍ରୟୋଗ କରି ଖାଇବାକୁ ଲାଗିଲେ । ପାଖରେ ବସିଲେ ମହେଶ୍ୱର ମହାନ୍ତି, ବାଚସ୍ପତି ଶରତ କୁମାର କର, ନଳିନୀ ମହାନ୍ତି ପ୍ରଭୃତି । ଏତିକିବେଳେ କିଏ ଜଣେ କହିଲେ ମୁଖ୍ୟମନ୍ତ୍ରୀଙ୍କ ପାଇଁ ଖିରି, ଜିଲାପି ଆସିନାହିଁ । ସଙ୍ଗେସଙ୍ଗେ ବିଧାନସଭାର ମାର୍ଶାଲ ଖିରି, ଜିଲାପି ଧରି ହାଜର । ମୁଖ୍ୟମନ୍ତ୍ରୀ କିନ୍ତୁ ଖିରିକୁ ଅଧିକ ପସନ୍ଦ କଲେ । ଜିଲାପିକୁ ଅନ୍ୟମାନଙ୍କ ମଧ୍ୟରେ ବାଂଟିଦେଲେ । ନବୀନଙ୍କ ଖାଇବା ପର୍ବ ଯେମିତି ସରିଲା ସେମିତି ତାଙ୍କ ନିକଟକୁ ଚାଲି ଆସିଲେ ବିଜୁ ଯୁବ ଜନତା ସଭାପତି ବଳଭଦ୍ର ମାଝି । ସାଥିରେ ଫଟୋଗ୍ରାଫର । କିଛି ବିଧାୟକଙ୍କୁ ମଧ୍ୟ ସେ କହୁଥା'ନ୍ତି- ଆସ, ଆସ ଫଟୋ ଉଠାଇବା । ନବୀନଙ୍କୁ ବଳଭଦ୍ର ଅନୁରୋଧ କରୁଥା'ନ୍ତି- ସାର୍ ଆପଣଙ୍କ ପାଖରେ ବସି ଫଟୋଟିଏ ନେବି । ନବୀନ କହିଲେ ଆଚ୍ଛା । ଫଟୋଗ୍ରାଫର ତୟାର, ଅନ୍ୟମାନେ ରେଡ଼ି । ଫଟୋ ଉଠିଲା । ଏହି ଫଟୋ ଉଠା ଭୋଜିସଭାରେ ବେଶ୍ ଦୃଷ୍ଟି ଆକର୍ଷଣ କରିଥିଲା ।

## ରାମକୃଷ୍ଣ ବୈରାଗ୍ୟ

**ରା**ମକୃଷ୍ଣ ପଟ୍ଟନାୟକଙ୍କର ବୈରାଗ୍ୟ ଆସିଛି ବୋଲି କୁହାଗଲେ ବୋଧହୁଏ କେହି ବିଶ୍ୱାସ କରିବେ ନାହିଁ । ଚେହେରା ତ ପୂର୍ବ ପରି ଯାଜୁଲ୍ୟ । ଭାଷଣ ବି ଆହୁରି ଦୀର୍ଘ । ପୁଣି ୨୪ ଘଂଟାରୁ ୧୮ ଘଂଟା ପରିଶ୍ରମ । ଆଉ ରାଜ୍ୟ ପାଇଁ ଅର୍ଥ ଯୋଗାଡ଼ କରିବା ନିମନ୍ତେ ଅହରହ ଉଦ୍ୟମ । ଏଥିରେ ବୈରାଗ୍ୟର ପ୍ରଶ୍ନ ଆସିଲା କେଉଁଠୁ । କିନ୍ତୁ ରାମକୃଷ୍ଣଙ୍କର ସବୁ ଗୋଟିଏ ପଟେ ତ ଭୋଜନ ଅନ୍ୟପଟେ । ମାନେ ଆମିଷ ନହେଲେ ନଚଳେ । ସେ ଚିଙ୍ଗୁଡ଼ି ହେଉ କି ମାଛ ହେଉ କିମ୍ବା ଖାସିମାଂସ ହେଉ ରାମକୃଷ୍ଣଙ୍କର ସବୁରି ପ୍ରତି ଲୋଭ । ଅର୍ଥାତ୍ ଆମିଷ ନହେଲେ ତାଙ୍କୁ ଖାଇବା ରୁଚେନି । କ'ଣ ହୋଇଛି କେଜାଣି ରାମକୃଷ୍ଣଙ୍କୁ ଏସବୁ ଖାଇବା ମନା । ସେଦିନ ବିଧାନସଭା ପ୍ରାଙ୍ଗଣରେ ବାଚସ୍ପତିଙ୍କ ଭୋଜିରେ ପ୍ଲେଟ ଧରିବା ମାତ୍ରେ ତାଙ୍କ ଖାଇବା ଦେଖିବାକୁ ଦେଖଣାହାରୀ ଜମିଗଲେ । ରାମକୃଷ୍ଣ କହିଲେ ଆଉ ସେ ଆଗପରି ଖାଉନାହାନ୍ତି । ଆମିଷ ପରିବର୍ତ୍ତେ ଏବେ ସନ୍ତୁଳା । ତଥାପି ବି ଜିଭର ଲାଳସାକୁ ଜଗି ହେଉନାହିଁ । କଟକଣା ମଧ୍ୟରେ ସେ ଦୁଇ ଖଣ୍ଡ ମାଛ ଖାଇଛନ୍ତି । ଖାଦ୍ୟ ଲୋଭୀ ରାମକୃଷ୍ଣଙ୍କର ଏଭଳି ଅବସ୍ଥା ଦେଖି ଦେଖଣାହାରୀ ଟିପ୍ପଣୀ ଦେଲେ ଏବେ ରାମକୃଷ୍ଣଙ୍କୁ ବୈରାଗ୍ୟ ଘାରିଛି ।

## ନବୀନଙ୍କ ହସ

**ମ**ହାଭାରତରେ ଶ୍ରୀକୃଷ୍ଣଙ୍କ ହସକୁ ନେଇ ବିଭିନ୍ନ ସମୟରେ ଅବତାରଣା କରାଯାଏ । କୁଆଡ଼େ ଶ୍ରୀକୃଷ୍ଣଙ୍କ ହସରେ ରହସ୍ୟ ଭରିରହିଥାଏ । ସେଦିନ ମୁଖ୍ୟମନ୍ତ୍ରୀ ନବୀନ

ପଟ୍ଟନାୟକ ସେମିତି ଏକ ହସ ହସିଥିଲେ । ମାନେ ନବୀନଙ୍କ ହସରେ ରହସ୍ୟ ରହିଥିଲା । ତୃଣମୂଳ କଂଗ୍ରେସର ଓଡ଼ିଶା ଶାଖାକୁ ବିଜେଡିରେ ମିଶାଇବା ଏବଂ ସେହି ଦଳର ଏକମାତ୍ର ବିଧାୟକ ତ୍ରିଲୋଚନ ବେହେରା ବିଜେଡି ବିଧାୟକ ଭାବେ ପରିଗଣିତ ହେବା ଘଟଣାଟି ନବୀନଙ୍କ ପାଇଁ କୁଆଡ଼େ ମସ୍ତବଡ଼ ବିଜୟ ଥିଲା । ସେଦିନ ଦଳର ରାଜ୍ୟ କାର୍ଯ୍ୟାଳୟଠାରେ ନବୀନ ହସରେ ଉଛୁଳି ପଡୁଥା'ନ୍ତି । ଲେଖକ ଜୀବନରୁ ରାଜନୀତିକୁ ଆସିବା ପରେ ନବୀନଙ୍କ ମୁହଁରେ ଏଭଳି ହସକୁ ପୂର୍ବରୁ କେହି ଦେଖି ନଥିଲେ । ନବୀନଙ୍କ ଏହି ହସକୁ ଦଳର କର୍ମୀମାନେ ଶ୍ରୀକୃଷ୍ଣଙ୍କ ହସ ଭାବେ ସେଦିନ ବର୍ଣ୍ଣନା କରିଥିଲେ । ଯାହାହେଲେ ବି ଓଡ଼ିଶା ରାଜନୀତିର ପ୍ରପିତାମହ ଭୀଷ୍ମତୁଲ୍ୟ ବିଜୁଙ୍କ ନନ୍ଦନ ନବୀନ । ପ୍ରଥମେ ରାଜନୀତିରେ ସେ ନବୀନ ଥିଲେ । କିନ୍ତୁ ଏବେ ସେ ପ୍ରବୀଣ । ଯେଉଁଥିପାଇଁ ଆଦୌ ହସୁନଥିବା ନବୀନ ହସି ଚାଲିଛନ୍ତି ।

## ଅର୍ଥ ନୁହଁ ଋଣମନ୍ତ୍ରୀ

**ଅ**ର୍ଥମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କର ଏକ ନୂତନ ନାମକରଣ ହୋଇଛି । ମାନେ ସେ ଅର୍ଥମନ୍ତ୍ରୀ ନୁହଁନ୍ତି ଋଣମନ୍ତ୍ରୀ । ଏହି ନାମକରଣକୁ ମଧ୍ୟ ରାମକୃଷ୍ଣ ସସମ୍ମାନର ସହ ଗ୍ରହଣ କରିଛନ୍ତି । ତାଙ୍କ ମତରେ ଯେଉଁ ରାଜ୍ୟ ଋଣଯନ୍ତାରେ ବୁଡ଼ି ରହିଛି ସେଠାରେ ଅର୍ଥମନ୍ତ୍ରୀର ଭୂମିକା କେବଳ ଋଣ ଶୁଝିବା ବ୍ୟତୀତ ଅନ୍ୟକିଛି ହୋଇପାରିବ ନାହିଁ । ତାଙ୍କର ଦିନରାତି ଚିନ୍ତା ହେଉଛି କର୍ମଚାରୀଙ୍କ ପାଇଁ ଦରମା କେଉଁଠୁ ଆସିବ । ଓଭରଡ୍ରାଫ୍ଟ କେମିତି ଶୁଝାଯିବ । ଋଣ ଏବଂ ସୁଧ କିପରି ପଇଠ ହେବ । ଋଣ ଶୁଝିବା ପାଇଁ ଋଣ କେମିତି କରାଯିବ ଇତ୍ୟାଦି ଇତ୍ୟାଦି । ଯେଉଁ ରାଜ୍ୟରେ ଅର୍ଥମନ୍ତ୍ରୀଙ୍କ ଏକମାତ୍ର ଚିନ୍ତା ହେବ ଋଣ କିପରି ଶୁଝାଯିବ ସେଠାରେ ଅର୍ଥମନ୍ତ୍ରୀ ପଦରେ କିଛି ମର୍ଯ୍ୟାଦା ଅଛି କି ବୋଲି ଓଲଟି ପ୍ରଶ୍ନ କରନ୍ତି ରାମକୃଷ୍ଣ । କିନ୍ତୁ ରାମକୃଷ୍ଣଙ୍କ ଗୁଣଗାନ କରୁଥିବା ବ୍ୟକ୍ତିଙ୍କ ମୁହଁରେ ଭିନ୍ନ କଥା । ସେମାନଙ୍କ ମତରେ ରାମକୃଷ୍ଣଙ୍କ ହାତରେ ରାଜ୍ୟ ଭଣ୍ଡାର ଘରର ଚାବି । ସେ ଚାହିଁଲେ ହିଁ ରାଜ୍ୟ ସରକାର ଋଣ କରିପାରିବେ । ଋଣ କରି ଘିଅ ପିଇବାରେ ଯେଉଁ ମଜା ଅଛି ତାହା ଅନ୍ୟ କେଉଁଥିରେ ମିଳିବ ନାହିଁ । ଦେଖାଯାଉ ରାମକୃଷ୍ଣ ଅର୍ଥମନ୍ତ୍ରୀ ନା ଋଣମନ୍ତ୍ରୀ କେଉଁଟିକୁ ପସନ୍ଦ କରୁଛନ୍ତି ।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ଏଣିକି ଓଡ଼ିଶା ବିଭାଜନ ହେବ ।

ଦ୍ୱିତୀୟ ବ୍ୟକ୍ତି : କିଛି ବୁଝି ହେଲାନି ।

ପ୍ରଥମ ବ୍ୟକ୍ତି : ବିଧାନସଭାରେ ବାଳଗୋପାଳ ମିଶ୍ର କୋଶଳ ଭାଷାରେ ଭାଷଣ ଦେଲେ । ପୁଣି କୋଶଳ

ରାଜ୍ୟ ଗଠନ ହେବ ବୋଲି ବିଧାନସଭାରେ କହିଲେ ।

ଦ୍ୱିତୀୟ ବ୍ୟକ୍ତି : ସେଇଠୁ କ'ଣ ହେଲା ?

ପ୍ରଥମ ବ୍ୟକ୍ତି : ଯେତେବେଳେ ବିଧାନସଭାରେ ରେକର୍ଡ଼ ହୋଇଗଲାଣି ଆଉ କୋଶଳ ରାଜ୍ୟ ଗଠନ କେତେ ସମୟ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ବାବୁ ପ୍ରମୋଦ

**ଯୋ**ଗାଣ ବିଭାଗରେ କେଜାଣି କାହିଁକି ଓ.ଏ.ଏସ୍. ଅଫିସରଙ୍କ ପ୍ରତି ଏକ ନୈରାଶ୍ୟଭାବ ସୃଷ୍ଟି ହୋଇଛି । ଏହି ଅଫିସରଙ୍କୁ ଦେଖିବା ମାତ୍ରେ ବିଭାଗର ନାହି ତେଉଁଛି । ଏମିତି ଏକ ଘଟଣା ଘଟିଛି ବିଭାଗରେ । ବରିଷ୍ଠ ଓ.ଏ.ଏସ୍. ପୂର୍ଣ୍ଣଚନ୍ଦ୍ର ମହାପାତ୍ରଙ୍କୁ ଏହି ବିଭାଗରେ ଅତିରିକ୍ତ ନିର୍ଦ୍ଦେଶକ ଭାବେ ନିଯୁକ୍ତି ଦିଆଗଲା । ସାଧାରଣ ପ୍ରଶାସନ ବିଭାଗର ବିଜ୍ଞପ୍ତି ଅନୁଯାୟୀ ପୂର୍ଣ୍ଣଚନ୍ଦ୍ର ଏହି ବିଭାଗରେ ଯୋଗଦେଲେ । ୪ ମାସ ହେଲାଣି ସେ ଏହି ବିଭାଗରେ ଅଛନ୍ତି । କିନ୍ତୁ ତାଙ୍କ ପାଇଁ କାମ ନାହିଁ । ବିଭାଗ ପକ୍ଷରୁ ମଧ୍ୟ ତାଙ୍କ ପାଖକୁ ଫାଇଲ ପଠାଯାଉ ନାହିଁ । କୁଆଡ଼େ ଏହି ପଦଟି ବିଭାଗୀୟ ଅଧିକାରୀଙ୍କ ପାଇଁ ଉଦ୍ଦିଷ୍ଟ ଥିବାବେଳେ ଓ.ଏ.ଏସ୍. ଅଫିସର ନିଯୁକ୍ତି ପାଇଥିବାରୁ ବିଭାଗର ରାଗ, ରୋଷର ଶିକାର ହୋଇଛନ୍ତି ପୂର୍ଣ୍ଣଚନ୍ଦ୍ର । ଏହି ଘଟଣାରେ ସରକାର ମଧ୍ୟ ନୀରବଦ୍ରଷ୍ଟା ସାଜିଛନ୍ତି । ଏଥିପାଇଁ ଆଉ କିଏ ବାହାବା ନନେଉ ପଛେ ପ୍ରଶାସନକୁ କିନ୍ତୁ ଧନ୍ୟବାଦ ଦିଆଯିବା ଉଚିତ୍ । ପଦ ନଥାଇ କିପରି ନିଯୁକ୍ତି ଦିଆଯାଇଛି ଏବଂ ଅଫିସର ଥାଇ କେମିତି ଫାଇଲ ଆସୁନାହିଁ ଏଭଳି ବିଚିତ୍ର ପରିସ୍ଥିତି ଅନ୍ୟ କେଉଁଠି ଦେଖିବାକୁ ମିଳୁ କି ନମିଳୁ ଓଡ଼ିଶା ସରକାରରେ ଦେଖିବାକୁ ମିଳିବ ହିଁ ମିଳିବ ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଓଡ଼ିଶା ରାଜନୀତିରେ ସବୁଠାରୁ ଚାଲାକ୍ ନେତା କିଏ ?

ଦ୍ୱିତୀୟ ବ୍ୟକ୍ତି : କିଏ ?

ପ୍ରଥମ ବ୍ୟକ୍ତି : ନବୀନ ପଟ୍ଟନାୟକ ।

ଦ୍ୱିତୀୟ ବ୍ୟକ୍ତି : କେମିତି ?

ପ୍ରଥମ ବ୍ୟକ୍ତି : ଏଇ ଦେଖୁନୁ । ମନ୍ତ୍ରିମଣ୍ଡଳ ସଂପ୍ରସାରଣ ହେବ ବୋଲି କହୁଛନ୍ତି କିନ୍ତୁ କରୁନାହାନ୍ତି । ଓଡ଼ିଆ ଭଲ ଭାବେ ବୁଝୁଛନ୍ତି କିନ୍ତୁ ଇଂରାଜୀରେ କହୁଛନ୍ତି ।



ନେତାଙ୍କ କଥାକୁ ହଁ ମାରୁଛନ୍ତି କିନ୍ତୁ ଅଫିସରଙ୍କ କଥାରେ ଫାଇଲ କାମ କରୁଛନ୍ତି । ଆଉ ଦେଖା କରିବାକୁ ଆସୁଥିବା ଲୋକକୁ ହସିହସି ଦୁଇପଦ କଥା କହୁଛନ୍ତି । ପୁଣି ସେମାନେ ଗଲାବେଳକୁ ସେମାନଙ୍କ ପିଠି ଥାପୁଡ଼େଉଛନ୍ତି । ଚାଲାକ୍ ରାଜନୀତିଜ୍ଞ ହେବା ପାଇଁ ସବୁଗୁଣ ନବୀନଙ୍କର ଅଛି । ରାଜ୍ୟର ଚାଲାକ ନେତାଙ୍କ ତାଲିକାରେ ନବୀନଙ୍କ ନାମ ପ୍ରଥମରେ ରହିବ ହିଁ ରହିବ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ଗୋଲଟେବୁଲ ବୈଠକ

ସ୍ୱାଧୀନତା ପୂର୍ବବର୍ତୀ ଇଂରେଜ ସରକାରଙ୍କ ସହିତ ମହାତ୍ମାଗାନ୍ଧୀଙ୍କର ଏହା ଗୋଲଟେବୁଲ ବୈଠକ ନୁହେଁ । ଏ ଗୋଲଟେବୁଲ ବୈଠକ ରାଜ୍ୟ ଅତିଥି ଭବନରେ । ପୁଣି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସହିତ ବୈଠକରେ ମିଳିତ ହୋଇଥା'ନ୍ତି ବାଚସ୍ପତି ଶରତ କୁମାର କର, ସଂସଦୀୟ ବ୍ୟାପାର ମନ୍ତ୍ରୀ ନଳିନୀକାନ୍ତ ମହାନ୍ତି ଏବଂ ଅର୍ଥମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ । ସେଦିନ ହେଉଛି ମାର୍ଚ୍ଚ ୩୧ ତାରିଖ । ବଜେଟ୍ ଅଧିବେଶନ ଚାଲିଥିବା ବେଳେ ପରମ୍ପରା ଅନୁଯାୟୀ ଯେଉଁ ଦିନ ବ୍ୟୟମଞ୍ଜୁରୀ ବିଲ୍ ଗୃହୀତ ହୁଏ ସେହିଦିନ ଅର୍ଥବିଭାଗ ପକ୍ଷରୁ ଏକ ଭୋଜନ ଉତ୍ସବର ମଧ୍ୟ ଆୟୋଜନ ହୋଇଥାଏ । ଏଥରର ଭୋଜନ ଉତ୍ସବ ଆୟୋଜନ ହୋଇଥାଏ ରାଜ୍ୟ ଅତିଥି ଭବନରେ । ୧୫ ରକମ୍‌ର ଆଇଟମ । ମାଛ, ଚିଙ୍ଗୁଡ଼ି, ଖାସିମାଂସ ଠାରୁ ଆରମ୍ଭ କରି ଛେନା ପାଏସ, ଆଇସ୍‌କ୍ରିମ୍ ପର୍ଯ୍ୟନ୍ତ । ବିଧାୟକ, ପଦସ୍ଥ ଅଧିକାରୀ ସମସ୍ତଙ୍କ ଭିଡ଼ ମଧ୍ୟାହ୍ନ ଭୋଜନ ପାଇଁ । ହଠାତ୍ ଦେଖାଗଲା ଏକ ଗୋଲଟେବୁଲ ସହ ଚାରିଟି ଚୌକି ପଡ଼ିଛି । ଚାହୁଁଚାହୁଁ ସେଠାକୁ ମୁଖ୍ୟମନ୍ତ୍ରୀଙ୍କୁ ପାଛୋଟି ନିଆଗଲା । ମୁଖ୍ୟମନ୍ତ୍ରୀ ବସିଲେ । ତାଙ୍କ ପରେପରେ ବାଚସ୍ପତି, ସଂସଦୀୟ ବ୍ୟାପାର ମନ୍ତ୍ରୀ, ଅର୍ଥମନ୍ତ୍ରୀ ମଧ୍ୟ ବସିଲେ । ସଙ୍ଗେସଙ୍ଗେ ଖାଇବା ଆସିଗଲା । ମୁଖ୍ୟମନ୍ତ୍ରୀ ଖାଇବା ସୁରୁ କରିବା ମାତ୍ରେ ବାଚସ୍ପତି ଓ ଦୁଇମନ୍ତ୍ରୀଙ୍କ ହାତ ଚାଲିଲା ପାଟିକୁ । ହଲ୍‌ରେ କିନ୍ତୁ ସମସ୍ତଙ୍କ ଦୃଷ୍ଟି ଗୋଲଟେବୁଲ ବୈଠକ ଆଡ଼କୁ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ କ'ଣ ଖାଉଛନ୍ତି, କିପରି ଖାଉଛନ୍ତି, କେତେ ସମୟ ଖାଉଛନ୍ତି, ତାହାକୁ ନେଇ କିଛି ସମୟ ପାଇଁ ଚର୍ଚ୍ଚା ଚାଲିଲା । ଯାହା ହେଲେ ବି ବିଜୁ ପୁତ୍ର ନବୀନ । ବିଜୁଙ୍କ ଖାଇବା ଦେଖିବା ପାଇଁ ଦେଖଣାହାରୀଙ୍କ ମଧ୍ୟରେ ବେଳେବେଳେ ସଂଘର୍ଷ ଘଟିଯାଏ । ଆଉ ତାଙ୍କ ପୁତ୍ର ନବୀନ ସେଥିରୁ ବା ବାଦ୍ ପଡ଼ିବେ କେମିତି । ବାପ୍ ସେ ବେଟା ଜାଦା ।

# ସବୁ ରାମକୃଷ୍ଣ

ନବୀନଙ୍କ ମନ୍ତ୍ରୀମାନେ ଗୋଟିଏ ନୂଆ ଅସ୍ତ୍ର ପାଇଛନ୍ତି । ଏହି ଅସ୍ତ୍ରଟି ଅନ୍ୟକୁ ବିନାଶ କରିବା ପାଇଁ ନୁହେଁ ପରନ୍ତୁ ଆତ୍ମରକ୍ଷା ପାଇଁ । ମନ୍ତ୍ରୀ ହେଲେ ତ ଏମିତି କାମ ପାଇଁ ବହୁ ବଖାଦ ଆସେ । ସେଥିରୁ କିଛି ହୁଏ କିଛି ହୁଏନାହିଁ । କିନ୍ତୁ ନବୀନ ସରକାରରେ ଯେଉଁଠି ଅଫିସରମାନେ ଡହୁଁ ବଳି ସେଠାରେ ମୁଖ୍ୟମନ୍ତ୍ରୀଙ୍କ କଥା ଶୁଣୁଛି କିଏ । କିଛିଦିନ ମନ୍ତ୍ରୀମାନେ ଅଫିସରଙ୍କ ବିରୋଧରେ କହିଲେ । ଏହା କିନ୍ତୁ ବୁମେରାଂ ପରି ହେଲା । ଏହାପରେ ମନ୍ତ୍ରୀମାନେ ଅର୍ଥମନ୍ତ୍ରୀ ରାମକୃଷ୍ଣଙ୍କୁ ଭରସା କରିଛନ୍ତି । ମାନେ ଯେଉଁ କାମ ନହେଲା ସେଥିପାଇଁ ଅର୍ଥମନ୍ତ୍ରୀ ରାମକୃଷ୍ଣଙ୍କୁ ଦାୟୀ କରାଯାଉଛି । ସବୁ ରାମକୃଷ୍ଣ । ତାଙ୍କ ପାଖରେ ଭଣ୍ଡାର ଘରର ଚାବି । ଚାବି ନଖୋଲିଲେ ଟଙ୍କା ଆସିବନି କି କାମ ହୋଇପାରିବନି । ଆମେ ନିମିତ ମାତ୍ର । ମାନେ ପ୍ରଶଂସା ସେମାନଙ୍କର ଆଉ ନିନ୍ଦା ରାମକୃଷ୍ଣଙ୍କର ।

# ତିନି ମନ୍ତ୍ରୀଙ୍କ ପ୍ରତିଯୋଗିତା

ନବୀନଙ୍କ ପାଖଲୋକ କିଏ । ଏକଦା ଏହି ପ୍ରଶ୍ନ ପଚରାଗଲେ ଉତର ଖୁବ୍‌ଶୀଘ୍ର ମିଳୁଥିଲା ଏବଂ ତାହା କେବଳ ଅନଙ୍ଗଉଦୟ ସିଂହଦେଓ ଆଡ଼କୁ ଯାଉଥିଲା । ନବୀନ କୁଆଡ଼େ ଅନଙ୍ଗଙ୍କର ଡୁନ୍‌ସ୍କୁଲ ବନ୍ଧୁ । ତେଣୁ ସେ ତାଙ୍କର ପାଖଲୋକ ହେବା ସ୍ୱାଭାବିକ । ଏବେ ଏହି ପ୍ରଶ୍ନ ପଚରାଗଲେ ଉତର ପାଇବା କାଠିକର ହୋଇପଡୁଛି । ମାନେ ନବୀନଙ୍କ ପାଖଲୋକ ହେବା ପାଇଁ ତିନିମନ୍ତ୍ରୀଙ୍କ ମଧ୍ୟରେ ଏକ ପ୍ରତିଯୋଗିତା ଆରମ୍ଭ ହୋଇଯାଇଛି । ପ୍ରଥମରୁ ତ ଶକ୍ତିମନ୍ତ୍ରୀ ଅନଙ୍ଗଙ୍କ ନାମ ଏହି ପ୍ରତିଯୋଗିତାରେ ସାମିଲ ହୋଇଯାଇଥିଲା । ପରେ ଅନ୍ୟ ଯେଉଁ ଦୁଇଜଣ ମନ୍ତ୍ରୀ ଏଥିରେ ଯୋଡ଼ି ହୋଇଯାଇଛନ୍ତି ସେମାନେ ହେଲେ ଅର୍ଥମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ ଏବଂ ପୂର୍ତ୍ତମନ୍ତ୍ରୀ ନଳିନୀକାନ୍ତ ମହାନ୍ତି । ନିଷ୍ପତି ନେବା ପୂର୍ବରୁ ରାମକୃଷ୍ଣ ଏବଂ ନଳିନୀଙ୍କ ପରାମର୍ଶ ନବୀନ କୁଆଡ଼େ ନେଉଛନ୍ତି । ତେବେ କଥାଟି ଯେ ଏଇଠି ଶେଷ ହୋଇଯାଇଛି ତା' ନୁହେଁ । ନବୀନଙ୍କ ଅତି ପାଖଲୋକ ମାନେ କାନକୁହା ମନ୍ତ୍ରୀ କିଏ ହେବ ସେ ନେଇ ପ୍ରତିଯୋଗିତା ଆରମ୍ଭ ହୋଇଯାଇଛି । ଦେଖାଯାଉ ନବୀନ କାହା କାନକୁହା କଥାରେ ଶାସନ କରୁଛନ୍ତି ।

# ଅପ୍ରେଲ ଫୁଲ୍

ଇଂରେଜ ଅମଳରୁ ଅପ୍ରେଲ ପହିଲାକୁ ବୋକା ଦିବସ ଭାବେ ପାଳନ କରାଯାଉଛି । ଓଡ଼ିଶାରେ ମଧ ଏହାର ପ୍ରଭାବ କିଛି କମ୍ ନୁହେଁ । ଅପ୍ରେଲ ପହିଲା ସକାଳୁସକାଳୁ ମନ୍ତ୍ରୀଙ୍କ

ପାଖକୁ ଫୋନ୍ ଗଲା । ମୁଖ୍ୟମନ୍ତ୍ରୀ କଥା ହେବେ । ପି.ଏ. ସଙ୍ଗେସଙ୍ଗେ କହିଲେ ମନ୍ତ୍ରୀଙ୍କୁ ଦଉଛି । ଜବାବ୍ ମିଳିଲା- ଅପ୍ରେଲ ଫୁଲ୍ । ସଚିବଙ୍କ ନିକଟକୁ ଫୋନ୍ ଗଲା- ମୁଖ୍ୟ ଶାସନ ସଚିବ ଜରୁରୀ ବୈଠକ ଡାକିଛନ୍ତି । କିଛି କହିବା ବେଳକୁ ଶୁଣାଗଲା- ଅପ୍ରେଲ ଫୁଲ୍ । ଅପ୍ରେଲ ପହିଲାମାନେ ଉତ୍କଳ ଦିବସ ସକାଳୁସକାଳୁ କ୍ୟାପିଟାଲରେ ବହୁବ୍ୟକ୍ତି ଏଭଳି ଅପ୍ରେଲ ଫୁଲ୍ ଫୋନ୍ ପାଆନ୍ତି । ଯାହାକୁ ନେଇ ରାଜଧାନୀରେ ଚର୍ଚ୍ଚା ଚାଲେ ।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ଏଣିକି ଓଡ଼ିଆରେ ଫାଇଲ କାମ ହେବ ।

ଦ୍ୱିତୀୟ ବ୍ୟକ୍ତି : କେମିତି ଜାଣିଲୁ ?

ପ୍ରଥମ ବ୍ୟକ୍ତି : ମୁଖ୍ୟମନ୍ତ୍ରୀ ଓଡ଼ିଆ ଜାଣି ନଥିଲେ ବୋଲି ଓଡ଼ିଆରେ ଫାଇଲ କାମ ହେଉ ନଥିଲା । ଏବେ ସେ କହିଲେଣି- ଓଡ଼ିଆ ବୁଝୁଛନ୍ତି ଆଉ ଓଡ଼ିଆ କହୁଛନ୍ତି । ତେଣୁ ଫାଇଲ୍ କାମ ଓଡ଼ିଆରେ ହେବ ହିଁ ହେବ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

## ଶେଷ ସଲାମ୍

**ରା**ଜଧାନୀର ଯୁବକ ଯୁବତୀମାନେ ତାଙ୍କୁ ମା' ବୋଲି ଡାକୁଥିଲେ । ପ୍ରତି ବଦଳରେ ମା'ଠାରୁ ଆହୁରି ନିଜର ପରି ଦେଖିଲେ ସେ ସେମାନଙ୍କୁ । ଦିନ ହେଉ କି ରାତି ହେଉ ସୁଖ ହେଉ କି ଦୁଃଖ ହେଉ ଯେତେବେଳେ ତାଙ୍କୁ ଖବର ଦିଆଯିବ ତତ୍କ୍ଷଣାତ୍ ସେ ସେଠାରେ ହାଜର ହୁଅନ୍ତି । ସେ ହେଉଛନ୍ତି ଜ୍ଞାନଦା ପଟ୍ଟନାୟକ । ଅତି ଆକସ୍ମିକ ଭାବେ ତାଙ୍କର ମୃତ୍ୟୁ ଘଟିଲା । ଟେଲିଫୋନ୍ ରିଂ ହେଲା । ଜ୍ଞାନଦା ପଟ୍ଟନାୟକ ଟେଲିଫୋନ୍ ଉଠାଇଲେ । ଆଉ କଥା ହେଉହେଉ ତାଙ୍କର ପ୍ରାଣବାୟୁ ଚାଲିଗଲା । ଖବରଟି ସଙ୍ଗେସଙ୍ଗେ ପ୍ରଚାର ହୋଇଗଲା । ଜ୍ଞାନଦା ପଟ୍ଟନାୟକଙ୍କ ଶେଷ ଦର୍ଶନ ନିମନ୍ତେ ଜମା ହୋଇଗଲେ ଅସଂଖ୍ୟ ଲୋକ । କିଏ କେମିତି ତାଙ୍କଠାରୁ ସାହାଯ୍ୟ ପାଇଥିଲେ ସେହିଠାରେ ଆଲୋଚନା ହେଉଥାଏ । ଅନେକଙ୍କ ଆଖିରୁ ତ ଲୁହଧାର ଶୁଖୁ ନଥାଏ । କିନ୍ତୁ ଚିରନିଦ୍ରାରେ ଥିବା ଜ୍ଞାନଦା ପଟ୍ଟନାୟକ ଯେ ତାଙ୍କ ବିହୁନେ ଏପରି ଅବସ୍ଥା ହୋଇଥିବ ତାହା ଜାଣିବେ କେମିତି । ନହେଲେ ଯେଉଁମାନଙ୍କୁ ସେ ଭଲ ପାଉଥିଲେ ସେମାନେ ଯେ ତାଙ୍କୁ ତା'ଠାରୁ ଆହୁରି ଅଧିକ ଭଲ ପାଉଥିଲେ ତାହା ସେ ସେଦିନ ଅନୁଭବ କରିଥା'ନ୍ତେ । ଯାହା ହେଲେ

ବି ମଣିଷ ଜୀବନ ହେଉଛି ମରିଗଲା ପରେ ହୃଦୟ କାନ୍ଦେ ଆଉ ବୁଦ୍ଧି ଉଦୟ ହୁଏ । ଜ୍ଞାନଦା ପଟ୍ଟନାୟକଙ୍କର ଅଭାବ ରାଜଧାନୀର କୋଣ, ଅନୁକୋଣ ଅନୁଭବ କରିବ ହିଁ କହିବ । ବୋଉ ମା'ଙ୍କୁ ଶେଷ ସଲାମ୍ ।

## ଗୁଟ୍‌ଖା ଖାଆନ୍ତୁ

'ଗୁଟ୍‌ଖା ଖାଆନ୍ତୁ ଏବଂ ପୁରସ୍କାର ପାଆନ୍ତୁ' ଏଭଳି ଏକ ପ୍ରଚାରପତ୍ର ଭୁବନେଶ୍ୱରର ବିଭିନ୍ନ ସ୍ଥାନରେ ବଂଟାଯାଉଥିବାର ଦୃଷ୍ଟିକୁ ଆସିଛି । ଏଥିରେ ଲେଖା ହୋଇଛି ଯେ, ପ୍ରଥମ ପୁରସ୍କାର- କ୍ୟାନସର । ଦ୍ୱିତୀୟ ପୁରସ୍କାର- କିଡନୀ ଖରାପ । ତୃତୀୟ ପୁରସ୍କାର - ଅଳ୍ପ ବୟସରେ ବାର୍ଦ୍ଧକ୍ୟ । ଚତୁର୍ଥ ପୁରସ୍କାର - ଗାଲ ପଶିଯିବ ।ପ ମ ପୁରସ୍କାର- ମୁହଁ ଛୋଟ ହୋଇଯିବ । ଷଷ୍ଠ ପୁରସ୍କାର- ଦାନ୍ତ ଏବଂ ପାଟି ଖରାପ ହେବ । ବଧେଇ ପୁରସ୍କାର - ରାମ ନାମ ସତ୍ୟ ହେ । ପୁରସ୍କାର ପାଇବାର ସ୍ଥାନ- ଶ୍ମଶାନଘାଟ । ମୁଖ୍ୟ ଅତିଥି- ଯମରାଜ । ବିଶେଷ ଦ୍ରଷ୍ଟବ୍ୟ- ପ୍ରତ୍ୟେକ ଗୁଟ୍‌ଖା ସହିତ ନୂଆନୂଆ ରୋଗ ମାଗଣା । ପ୍ରଚାରପତ୍ର ପ୍ରସ୍ତୁତି ପାଇଁ ବୁଦ୍ଧି ଖଟାଉଥିବା ମହାନ୍ ବ୍ୟକ୍ତି ଏବେ ରାଜଧାନୀରେ ପ୍ରଶଂସା ଭାଜନର ପାତ୍ର ହୋଇଛନ୍ତି ।

## ସୁରଙ୍କ କ୍ରୋଧ

ଦୁଇ ପରସ୍ପର ବିରୋଧୀ ଦଳରେ ସୁର ନାମଧାରୀ ବ୍ୟକ୍ତିଙ୍କ ପ୍ରକୋପ ତହୁଁ ବଳି ତହୁଁ ବଳି । କେହି କାହାଠାରୁ ପଛରେ ପଡ଼ିବାର ନାହିଁ । ଏହି ଦୁଇଜଣ ହେଲେ କଂଗ୍ରେସର ସୁରେଶ କୁମାର ରାଉତରାୟ ଏବଂ ବିଜେଡିର ସୁରେନ୍ଦ୍ର ନାଥ ନାୟକ । ସୁରେଶ ରାଉତରାୟ ଦରକାର ପଡ଼ିଲେ ବାହୁରେ ବଳ ଅଛି ବୋଲି ମଧ୍ୟ ପ୍ରମାଣ ଦେବାକୁ ପଛଘୁଂଚା ଦିଅନ୍ତି ନାହିଁ । କିନ୍ତୁ ତାଙ୍କ ବିରୋଧୀ ଦଳର ସୁରେନ୍ଦ୍ର ନାଥ ନାୟକଙ୍କୁ ଦେଖିଲେ କେହି ତାଙ୍କର ବାହୁରେ ବଳ ଅଛି ବୋଲି ଭାବିବେ ନାହିଁ । କିନ୍ତୁ ସୁରେନ୍ଦ୍ର ନାୟକଙ୍କ ପାଟି ଆଗରେ ବାହୁବଳ ହାର ମାନିଯିବ । ଏଇ ସେଦିନର ଘଟଣା । ସୁରେନ୍ଦ୍ର ନାୟକ ଯାଉଥିଲେ କ୍ୟାପିଟାଲ ଭୁବନେଶ୍ୱରର ବ୍ଲକ ଅଫିସକୁ । ଓକିଲମାନଙ୍କୁ କୁଆଡ଼େ ତାଙ୍କର ଗସ୍ତ ଗନ୍ଧ ବାଜିଲା । ସଙ୍ଗେସଙ୍ଗେ ସେମାନେ ତୟାର ହୋଇଗଲେ । ସୁରେନ୍ଦ୍ର ନାୟକଙ୍କ ପାଟି କିଛି ମାନିଲା ନାହିଁ । ତାଙ୍କ ପାଟିରୁ ବାହାରିଲା ଅନର୍ଗଳ ବକ୍ତୃତା । ଚାହୁଁଚାହୁଁ ସେହି ସ୍ଥାନ କୁରୁକ୍ଷେତ୍ର ପାଲଟିଗଲା । କିନ୍ତୁ ସୁରେନ୍ଦ୍ର ନାୟକ ଛାଡ଼ିବାର ବ୍ୟକ୍ତି ନୁହନ୍ତି । ଶହଶହ ଓକିଲଙ୍କ ବାହୁବଳକୁ ତାଙ୍କ ପାଟି ଖାତିର କଲାନି । ସେ ରାଉତରାୟ ହୁଅନ୍ତୁ କି ନାୟକ ହୁଅନ୍ତୁ । ଯାହା ହେଲେ ବି ସେମାନେ ପାଇକ ପୁଅ ।

# ସଂପ୍ରସାରଣ ଏବଂ ରାତି ଅନିଦ୍ରା

**ରା**ତି ପାହିଲେ ମନ୍ତ୍ରିମଣ୍ଡଳ ସଂପ୍ରସାରଣ ହେବ ବୋଲି ବିଜେଡିର ବହୁ ବିଧାୟକ ସ୍ୱପ୍ନ ଦେଖୁଛନ୍ତି । ମନ୍ତ୍ରୀ ସ୍ୱପ୍ନ ଦେଖୁଥିବା ଅଧିକାଂଶ ବିଧାୟକ ଏବେ ରାତି ଅନିଦ୍ରା ହେଉଥିବାର ଦେଖାଯାଉଛି । ରାତି ୧୦ଟା ପରେ ସେମାନେ ଏ ଘରରୁ ସେ ଘରକୁ ଯାଉଛନ୍ତି । ମାନେ ବିଜେଡିର ଟାଣୁଆ ମନ୍ତ୍ରୀ ନଳିନୀ ମହାନ୍ତିଙ୍କ ଠାରୁ ଆରମ୍ଭ କରି ରାମକୃଷ୍ଣଙ୍କ ପର୍ଯ୍ୟନ୍ତ । ଏମିତି ବୁଲୁବୁଲୁ ମଧ ସକାଳ ହୋଇଯାଉଛି । ଯାହା ଦେଖାଯାଉଛି- ମନ୍ତ୍ରିମଣ୍ଡଳ ସଂପ୍ରସାରଣ ନହେବା ପର୍ଯ୍ୟନ୍ତ ବିଜେଡି ବିଧାୟକଙ୍କ ଏହିଭଳି ଅନିଦ୍ରା ପାଲା ଚାଲିଥିବ । ମାନିବାକୁ ପଡ଼ିବ ନବୀନଙ୍କୁ । ଲେଖକରୁ ନେତା । ପ୍ରକୃତ ଘଟଣା ଅଙ୍ଗେ ନ ନିଭାଇଲେ ଲେଖନୀ ଚାଳନା ହେବନାହିଁ । ମନ୍ତ୍ରୀ ଆଶାୟୀଙ୍କ ଏହି ରାତ୍ରି ଅନିଦ୍ରା ନବୀନଙ୍କ ନଜରକୁ ଆସିଲାଣି ନା ନାହିଁ ତାହା ଜଣାନାହିଁ। ଆଉ ଲେଖକ ଭାବେ ନବୀନ ତାହାକୁ ନେଇ ଅଙ୍ଗେନିଭା ଲେଖା ଲେଖୁଛନ୍ତି ନା ନାହିଁ ତାହା ଦେଖିବାକୁ ବାକି ରହିଛି।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ମନ୍ତ୍ରୀ ହେବାକୁ ହେଲେ ବିଧାୟକମାନଙ୍କୁ ଅସନ୍ତୁଷ୍ଟ ହେବାକୁ ପଡ଼ିବ ।

ଦ୍ୱିତୀୟ ବ୍ୟକ୍ତି : କାହିଁକି ?

ପ୍ରଥମ ବ୍ୟକ୍ତି : ଏଇ ଦେଖୁନ । ଅତୀତରେ ନବୀନଙ୍କ ବିରୋଧୀ ହୋଇଥିବା ବହୁ ବିଧାୟକ ମେଂଟ ସରକାରରେ ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ଥଣ୍ଡା ଓ ନବୀନ

**ନ**ବୀନ ପଟ୍ଟନାୟକ ସିନା ମୁଖ୍ୟମନ୍ତ୍ରୀ ମୁକୁଟଟି ପିନ୍ଧିଦେଲେ ହେଲେ ଏହି ଆସନକୁ ଯେ ଚାରିଆଡୁ ଶର ଛୁଟେ ତାହା ତାଙ୍କ ଧାରଣା ବାହାରେ ଥିଲା । ବିଜୟ ମହାପାତ୍ର ତାଙ୍କ ଆଡ଼କୁ ଓ.ଜି.ପି. ଶର ଛାଡ଼ିଲେ। ସେପଟେ ଦଳ ଭିତରେ ଅସନ୍ତୁଷ୍ଟ ବିଧାୟକମାନେ ମହୁମାଛି ପରି ତାଙ୍କୁ ବିନ୍ଧି ପକାଉଛନ୍ତି । କିନ୍ତୁ ନବୀନଙ୍କ ପାଇଁ ସବୁଠାରୁ ବିଡ଼ମ୍ବନାର ବିଷୟ ହେଉଛି ଯେଉଁ ରୋଗଟିକୁ ସେ ସବୁଠାରୁ ଅଧିକ ଭୟ କରନ୍ତି ସେଇଟି ତାଙ୍କ ଅସମୟରେ ଆକ୍ରମଣ କରିଦେବା । ସେଦିନ ବୀରଦର୍ପରେ ନବୀନ ଯାଜପୁର ଜିଲ୍ଲା ଗସ୍ତରେ ବାହାରିଲେ । ଦିନ ତମାମ ସେ ଜିଲ୍ଲାଗସ୍ତ କରିଲେ । ବିଜୁ ପୁତ୍ର ତଥା

ଜ୍ଞାନ ପଟ୍ଟନାୟକଙ୍କର ଗେଲବସର ସନ୍ତାନ ନବୀନଙ୍କର ଯେ ପିଲାଦିନ ଧୂଳି ଧୂସରରେ କଟି ନଥିଲା ତାହା ଯାଜପୁର ଜିଲ୍ଲାବାସୀ କେମିତି ଜାଣିବେ । ନହେଲେ ସେଦିନ ଧୂଳି ଉଡ଼ାଇ ତାଙ୍କ ପାଇଁ ଶୋଭାଯାତ୍ରା ସେମାନେ କରି ନଥା'ନ୍ତେ । ବଡ଼ ଆଗ୍ରହରେ ନବୀନ ସେଦିନ ଯାଜପୁର ଜିଲ୍ଲା ଗସ୍ତ କଲେ । ରାତିରେ ନବୀନ ନିବାସ ଫେରିବା ବେଳକୁ ଆଉ ନାକ ଫିଟୁନାହିଁ । ଛିଙ୍କ ପରେ ଛିଙ୍କ । ଡାକ୍ତର ରିପୋର୍ଟ କଲେ ବିଜୁ ପୁତ୍ରଙ୍କୁ ଥଣ୍ଡା ଘାରିଛି । ସଚିବାଳୟ କାର୍ଯ୍ୟାଳୟକୁ ନବୀନ ଗଲେ । ସଚିବାଳୟରେ କିନ୍ତୁ ଅଧିକ ସମୟ ରହିପାରିଲେନି । ଛିଙ୍କ, କାଶ, ଥଣ୍ଡା ସବୁ ଏକାଥରକେ ତାଙ୍କୁ ଗ୍ରାସ କରି ପକାଇଲା । କାନମୁଣ୍ଡା ଆଉଁସି ନବୀନ ନିବାସକୁ ଦଉଡ଼ିବାକୁ ତାଙ୍କୁ ତର ସହିଲା ନାହିଁ । ତିନିଦିନ ଧରି ସେ ବିଶ୍ରାମ ନେଲେ । କିନ୍ତୁ ଯେତିକି ସମୟ ସଚିବାଳୟକୁ ଯାଇଥିଲେ ସେ ସମୟ ମଧ୍ୟରେ ସେ ଥଣ୍ଡା ଜୀବାଣୁକୁ ତାଙ୍କ ସେକ୍ରେଟାରିଏଟ୍‌ରେ ଛାଡ଼ି ଦେଇଥିଲେ । ମୁଖ୍ୟମନ୍ତ୍ରୀଙ୍କ ପରେ ତାଙ୍କ ସଚିବ, ଯୁଗ୍ମ ସଚିବ, ଉପସଚିବ, ଲୋକସଂପର୍କ ଅଧିକାରୀ, ବ୍ୟକ୍ତିଗତ ସଚିବ ସମସ୍ତଙ୍କୁ ଥଣ୍ଡା । ସମସ୍ତେ କାଶୁଥା'ନ୍ତି, ଛିଙ୍କୁ ବି ଥା'ନ୍ତି । ଘଟଣାଟି ସମଗ୍ର ସଚିବାଳୟରେ ପ୍ରଚାରିତ ହୋଇଗଲା । ସେଇ କେତୋଟି ଦିନ ସଚିବାଳୟ କର୍ମଚାରୀ ପରସ୍ପରକୁ ଦେଖିବା ମାତ୍ରେ କହୁଥିବାର ଦେଖାଯାଉଥିଲା ସାବଧାନ-ମୁଖ୍ୟମନ୍ତ୍ରୀଙ୍କୁ ଥଣ୍ଡା ।

# ଅଶୋକ ନବୀନ କୋଳାକୋଳି

**ସେ**ଦିନ ମରୁଡ଼ି ପରିସ୍ଥିତି ସଂପର୍କରେ ଆଲୋଚନା କରିବା ପାଇଁ ସଚିବାଳୟରେ ସର୍ବଦଳୀୟ ବୈଠକ ବସିଥିଲା । ଦୀର୍ଘ ୪ ଘଂଟା ଧରି ବିରୋଧୀ ଦଳର ସଭ୍ୟମାନେ ସରକାରଙ୍କୁ ସମାଲୋଚନା କଲେ । ଅଶୋକ ଦାସ ମଧ ତାଙ୍କ ସ୍ୱଭାବ ସୁଲଭ ଢଙ୍ଗରେ ଉଚ୍ଚସ୍ୱରରେ ପାଟିତୁଣ୍ଡ କରିବାକୁ ମଧ ପଛାଉ ନଥିଲେ । ଆଲୋଚନା ଶେଷ ହେଲା । ସମ୍ମିଳନୀ କକ୍ଷରୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବାହାରି ଆସୁଥା'ନ୍ତି । ହଠାତ୍ ତାଙ୍କୁ କିଏ ଟାଣିଦେଲା । ମୁଖ୍ୟମନ୍ତ୍ରୀ ପଛକୁ ଅନାଇବା ପୂର୍ବରୁ ତାଙ୍କ ପିଠିକୁ କେହି ଥାପୁଡ଼ାଉଥିବାର ଦେଖାଗଲା । ନବୀନ ପଛକୁ ଚାହିଁଲା ବେଳକୁ ଦେଖିଲେ ଅଶୋକ ଦାସଙ୍କୁ । ଅଶୋକଙ୍କୁ ଲକ୍ଷ୍ୟକରି ବିଜୁ ପୁତ୍ର ନବୀନ କହିଲେ- ମୁଁ କିନ୍ତୁ ଛାଡ଼ିବିନି । ତମେ ମୋତେ ବାଡ଼େଇଲ । ତମ ନାଁରେ ମୋକଦମା କରିବି । ସଙ୍ଗେସଙ୍ଗେ ଅଶୋକ ଦାସ ଉତର ଦେଲେ- ଏହା ମାଡ଼ କି ଚାପୁଡ଼ା ନୁହେଁ । ତମ ପିଠିକୁ ଥାପୁଡ଼ଉଥିଲି । ମାନେ ସବୁ ଗେଲରେ ଚାଲିଛି । ମୋକଦମାର ପ୍ରଶ୍ନ ଉଠୁଛି କେଉଁଠୁ । ନବୀନ କିନ୍ତୁ କହି ଚାଲିଥା'ନ୍ତି- ନା, ନା, ମୋକଦମା ହେବ । ନବୀନଙ୍କ କଥା ନସରୁଣୁ ଅଶୋକ ତାଙ୍କୁ ଜୋରରେ ଜାବୁଡ଼ି ଧରିଲେ । ଦେଖଣାହାରିଏ ଆଉ ନହସି ରହିପାରିଲେ ନାହିଁ ।

# ଗୋଟିଏ ବାବୁ

**ଓ**ଡ଼ିଶା ରାଜନୀତିରେ ଆଉ କେହି ବାବୁ ନାହାନ୍ତି । ମାନେ କାହାକୁ ନବୀନ ବାବୁ, ଜାନକୀ ବାବୁ, ବିଶ୍ୱଭୂଷଣ ବାବୁ ଡକାଯାଇପାରିବ ନାହିଁ । ଏକଥା ଉଠାଉଛନ୍ତି ବିଜେଡି ସାଧାରଣ ସଂପାଦକ ଯଜ୍ଞେଶ୍ୱର ବାବୁ । ସେଦିନ ସୂଚନାଭବନ ପ୍ରାଙ୍ଗଣରେ ହରେକୃଷ୍ଣ ମହତାବ ଶତବାର୍ଷିକୀ ଜୟନ୍ତୀ ମହାସମାରୋହରେ ପାଳିତ ହେଉଥାଏ । ସ୍ୱାସ୍ଥ୍ୟ ରାଷ୍ଟ୍ରମନ୍ତ୍ରୀ ଦେବୀ ପ୍ରସାଦ ମିଶ୍ର ତାଙ୍କ ଭାଷଣରେ ମଂଚରେ ଥିବା ମୁଖ୍ୟମନ୍ତ୍ରୀଙ୍କ ସମେତ ଅନ୍ୟାନ୍ୟ ମନ୍ତ୍ରୀଙ୍କୁ ସେମାନଙ୍କ ନାମ ପଛରେ ବାବୁ ଉଚ୍ଚାରଣ କରି ସମ୍ବୋଧନ କରୁଥିଲେ । ଏହି ସମୟରେ ସେଠାରେ ଉପସ୍ଥିତ ଥିବା ଯଜ୍ଞେଶ୍ୱର ବାବୁ କହୁଥିବାର ଦେଖାଗଲା- ମତେ ଛାଡ଼ିଦେଲେ ଓଡ଼ିଶା ରାଜନୀତିରେ ଆଉ କେହି ବାବୁ ନାହାନ୍ତି । ଆଗରୁ ବନମାଳୀବାବୁ ଥିଲେ ଏବେ ମୁଁ । ମାନେ ଆମର ସାଙ୍ଗିଆ ହେଉଛି ବାବୁ । ମଂଚରେ ଯେତେ ଅତିଥି ଅଛନ୍ତି କାହାର ସାଙ୍ଗିଆ ବାବୁ ନୁହେଁ । କିଏ ପଟ୍ଟନାୟକ ତ କିଏ ମିଶ୍ର । କାହାର ହରିଚନ୍ଦନ ତ କାହାର କର । ଆଇନ୍ ଅନୁଯାୟୀ ସିଏ ହେଉଛନ୍ତି ପ୍ରକୃତ ବାବୁ । ଯଜ୍ଞେଶ୍ୱରଙ୍କ ଯୁକ୍ତିକୁ କିଏ ପ୍ରତିବାଦ କରିବ ଭଲା ।

# ଜୋକଙ୍କ ରାଲି

**ସା**ଧାରଣତଃ ମଣିଷମାନେ ରାଲି କରିଥା'ନ୍ତି ବୋଲି ଏକ ଧାରଣା ରହିଛି । କିନ୍ତୁ ଏଠାରେ ଯେଉଁ ରାଲି କଥା କୁହାଯାଉଛି ତାହା ମଣିଷଙ୍କର ନୁହେଁ। ଏହି ରାଲିକୁ ଅବାସ୍ତବ ବୋଲି ମଧ୍ୟ ଅନେକ କହିବେ । ତେବେ କ୍ୟାପିଟାଲ ଭୁବନେଶ୍ୱରରେ ଏଭଳି ରାଲି ସମ୍ଭବ । ରାଜଧାନୀରେ ଯୁଆଡ଼େ ଦେଖିବ ସବୁଆଡ଼େ ଜୋକଙ୍କର ଲମ୍ବାଧାଡ଼ି ଲାଗିଛି । ସେ ବଗିଚା ହେଉ କିମ୍ବା ଘର ହେଉ ସବୁଆଡ଼େ ଜୋକ । ପୁଣି ଏମାନଙ୍କର ଧାଡ଼ି ଅଧିକ ଲମ୍ବିଯାଏ ରାତିଅଧରେ । ସକାଳ ହେଲେ ସେମାନେ ମାଟିତଳକୁ ଚାଲିଯାଆନ୍ତି । ଏମାନଙ୍କୁ ନିଶାଚର କହିଲେ କିଛି ଅତ୍ୟୁକ୍ତି ହେବନାହିଁ । ଏମାନଙ୍କର ଖାଦ୍ୟ ହେଲା ବଗିଚାରେ ଥିବା ଫୁଲ ଏବଂ ଅନ୍ୟାନ୍ୟ ଗଛର ପତ୍ର । ଏମାନଙ୍କ ପାଇଁ ଯେତେ ପ୍ରତିକାର ବ୍ୟବସ୍ଥା କରାଗଲେ ମଧ୍ୟ ସେମାନଙ୍କ ବଂଶସଂଖ୍ୟା ହ୍ରାସ ପାଇବା ପରିବର୍ତ୍ତେ ବଢ଼ିଚାଲିଛି । ଏବେ ସେମାନେ ବଗିଚାରେ ନରହି ରାଜଧାନୀବାସୀଙ୍କ ବେଡ଼ରୁମ୍‌ର ସାଥୀ ବନିଗଲେଣି । ମାନେ ଶୋଇବା ଘରେ ମଧ୍ୟ ଜୋକଙ୍କ ପ୍ରାଦୁର୍ଭାବ । କୁଆଡ଼େ ୬୦ ଦଶକରେ କ୍ୟାପିଟାଲକୁ ଏକ ନାମଜାଦା ସର୍କସ ପାର୍ଟି ଆସିଥିଲା । ସେହି ସର୍କସରେ ଥିବା ପଶୁପକ୍ଷୀଙ୍କ ଖାଦ୍ୟ ପାଇଁ ଜୋକ ଅଣାଯାଉଥିଲା । ସର୍କସ ଭୁବନେଶ୍ୱରରୁ ଅନ୍ୟ ସ୍ଥାନକୁ ଚାଲିଗଲା । କିନ୍ତୁ କିଛି ଜୋକଙ୍କୁ

କ୍ୟାପିଟାଲବାସୀଙ୍କ ସମ୍ମାନାର୍ଥେ ସର୍କସ ପାର୍ଟି ଛାଡ଼ିଦେଇ ଚାଲି ଯାଇଥିଲେ । ଏବେ ଜୋକଙ୍କ ବଂଶ ବୃଦ୍ଧି ପାଇ କେଉଁ ଅବସ୍ଥାକୁ ଆସିଛି ତାହା କେବଳ ଅଙ୍ଗେ ନିଭାଉଥିବା କ୍ୟାପିଟାଲବାସୀ ହିଁ କହିପାରିବେ ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଓଡ଼ିଶାକୁ ଇଂରେଜ ସରକାର ଶାସନ କରିବାର ପୁଣି ବେଳ ଆସିଗଲା ।

ଦ୍ୱିତୀୟ ବ୍ୟକ୍ତି : କେମିତି ?



ପ୍ରଥମ ବ୍ୟକ୍ତି : ଇଷ୍ଟ ଇଣ୍ଡିଆ କମ୍ପାନୀ ବ୍ୟବସାୟ କରିବାକୁ ଆସି ସାରା ଭାରତର ଶାସନ ନିଜ କରାୟତକୁ ନେଇଥିଲା । ଏବେ ସେହିପରି ହେବାକୁ ଯାଉଛି ।

ଦ୍ୱିତୀୟ ବ୍ୟକ୍ତି : କିପରି ?

ପ୍ରଥମ ବ୍ୟକ୍ତି : ଓଡ଼ିଶାର ଶୋଚନୀୟ ଆର୍ଥିକ ଅବସ୍ଥାର ସୁଯୋଗ ନେଇ ଇଂରେଜ ସରକାର ରାଜ୍ୟ ସରକାରଙ୍କୁ କୋଟିକୋଟି ଟଙ୍କା ସାହାଯ୍ୟ ଦେଇଛନ୍ତି । ମାନେ ସାହୁକାର ବନିଛନ୍ତି । ତାଙ୍କ ପାଖରେ ଓଡ଼ିଶା ବନ୍ଧା ପଡ଼ିଛି । ରାଜ୍ୟର ଋଣଭାର ୨୦ ହଜାର କୋଟି ଟଙ୍କାରେ ପହଂଚିଲାଣି । ସରକାରଙ୍କ ଟଙ୍କା ନାହିଁ ଋଣ ଶୁଝିବାକୁ । ତେଣୁ ଜାଣ ଓଡ଼ିଶା ଟେକି ହୋଇଗଲା ଇଂରେଜଙ୍କ ହାତକୁ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ନବୀନଙ୍କ ନିବାସ

**ନ**ବୀନ ନିବାସ ପ୍ରସଙ୍ଗ ଉଠିଲେ ସମସ୍ତେ ଜାଣନ୍ତି ଏୟାରପୋର୍ଟ ସମ୍ମୁଖରେ ଥିବା ବିଜୁ ପଟ୍ଟନାୟକଙ୍କ ଘର । ବିଜୁ ନିଜ ପ୍ଲାନରେ ଏହି ଘରଟି ନିର୍ମାଣ କରିଥିଲେ ଏବଂ ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ଏହି ଘରେ ରହିଥିଲେ । ବଡ଼ପୁଅ ପ୍ରେମ୍‌ଙ୍କ ନାମରେ ଘରର ନାମକରଣ ନହୋଇ ଅଳିଅଳ ସାନପୁଅ ନବୀନଙ୍କ ନାମରେ ଏହି ଘରର ନାମକରଣ ହୋଇଥିଲା । ବିଜୁଙ୍କ ବର୍ତ୍ତମାନରେ ନବୀନ କାଁ ଭାଁ ନବୀନ ନିବାସ ମାଟି ମାଡୁଥିଲେ । ମୁଖ୍ୟମନ୍ତ୍ରୀ ହେବା ପରେ ନବୀନ ନିବାସ ହେଲା ନବୀନଙ୍କ ଆବାସସ୍ଥଳୀ । ମାନେ ଏଠାରେ ସେ ରହିଲେ ଏବଂ ଏହିଠାରୁ ସେ ବିଜେଡି ରାଜନୀତିକୁ ନିୟନ୍ତ୍ରଣ କଲେ ଓ ରାଜ୍ୟର ଶାସନ ମଧ୍ୟ କଲେ । ବିଜୁଙ୍କ ପ୍ଲାନ କୁଆଡ଼େ ବାବୁ ନବୀନଙ୍କ ପସନ୍ଦକୁ ଆସିନାହିଁ ବୋଲି ଜଣାପଡ଼ୁଛି । ତାଙ୍କ ନାମରେ ଘରର

ନାମକରଣ ହୋଇଥିବ ଅଥଚ ଘରଟି ତାଙ୍କ ପସନ୍ଦଯୋଗ୍ୟ ହୋଇ ନଥିବ । ଏହା କିପରି ସମ୍ଭବ । ନବୀନ ନିଜ ପସନ୍ଦ ମୁତାବକ ଘର ତିଆରି ମଧ କଲେ । ଅବଶ୍ୟ ଘରଟି ସେଇ ପ୍ରାଙ୍ଗଣରେ ରହିଲା ମାନେ ଠିକ୍ ନବୀନ ନିବାସ ପଛରେ । ନୂତନ ଘରଟିର ନିର୍ମାଣ କାର୍ଯ୍ୟ ଯୁଦ୍ଧକାଳୀନ ଭିତିରେ ହୋଇଥିଲା । ଘରଟି ବାହାରକୁ ବେଶ୍ ଚାକଚକ୍ୟ ଦେଖାଯାଉଛି । କୁଆଡ଼େ ଏଇଟି ହେବ ନବୀନଙ୍କ ପାଇଁ ପ୍ରକୃତ ନିବାସ । ସେଠାରେ ହିଁ ସେ ବସବାସ କରିବେ । ପୂଜାର୍ଚ୍ଚନା କରାଯାଇ ଗୃହ ପ୍ରବେଶ ହେବ । ସବୁ ଗ୍ରିଷ୍ଟକୁ ଶାନ୍ତ ପାଇଁ ଶାସ୍ତ୍ର ଅନୁଯାୟୀ ବ୍ୟବସ୍ଥା ହେବ । ଯାହା ହେଲେ ବି ସେ ବିଜୁ ପୁତ୍ରଟି । ପଥକୁ ନିଷ୍କଂଟକ କରିବାକୁ କିଏ ନଚାହେଁ ଭଲା ।

## ଜେ.ବି. ଫର୍ମୁଲା

**ପି**.ସି.ସି. ସଭାପତି ପଦକୁ ନେଇ ରାଜ୍ୟ କଂଗ୍ରେସ ଦଳ ମଧ୍ୟରେ କିଛି ମାସ ଧରି ଚାଲିଥିବା ବିବାଦର ହଠାତ୍ ଯବନିକା ପଡ଼ିଗଲା । ନିର୍ଦ୍ୱନ୍ଦ୍ୱରେ ଜାନକୀ ବଲ୍ଲଭ ପଟ୍ଟନାୟକ (ଜେ.ବି.) ପି.ସି.ସି. ସଭାପତି ହେଲେ । ସବୁ ବିରୋଧୀ ବାଲାଙ୍କ ମୁହଁ ଚୁପ୍ । ବହୁ ଟାଣୁଆ ନେତା ଏବଂ ବିଧାୟକମାନଙ୍କ ବିରୋଧ ସତ୍ତ୍ୱେ ଜେ.ବି. ପୁଣି ସଭାପତି ହେଲେ କେମିତି ଏହା ମଧ ପ୍ରଶ୍ନବାଚୀ ହେବା ସ୍ୱାଭାବିକ୍ । ଏହାର ଉତର ଖୋଜିବାକୁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ଦୁଇଟି ଫର୍ମୁଲାକୁ ପ୍ରୟୋଗ କରି ଜେ.ବି. ହିରୋ । ଗୋଟିଏ ହେଉଛି ବିରୋଧୀ ବାଲାଏ ଜିଲ୍ଲାରେ ଡେରା ପକାଇଥିବା ବେଳେ ପିସିସି କମିଟିକୁ ତାଙ୍କ ସମର୍ଥକମାନଙ୍କୁ ନିର୍ବାଚିତ କରାଇବାରେ ଜେ.ବି. ସଫଳତାର ସହିତ ଗୋଟିଚାଳନା କରିଥିଲେ । ମାନେ ବିରୋଧୀ ବାଲାଙ୍କ ଅବସ୍ଥା ବାପ, ପୁଅ, ରାତି ଅନିଦ୍ରା... ପରି ହେଲା । ଅନ୍ୟ ଫର୍ମୁଲାଟା ହେଲା ଓ.ଜି.ପି.। ଅର୍ଥାତ୍ ଜେ.ବି. ସଭାପତି ନହେଲେ ତାଙ୍କ ସମର୍ଥକମାନେ ଅସନ୍ତୁଷ୍ଟ ହେବେ ଏବଂ ଯେକୌଣସି ମୁହୂର୍ତରେ ସେମାନେ ଓଜିପିକୁ ଚାଲିଯିବେ । ମାନେ ଗଛ ଲଗାଇବ କଂଗ୍ରେସ ଆଉ ଫଳ ଖାଇବ ଓଜିପି । ଜେ.ବି.ଙ୍କ ଦୁଇଟି ଯାକ ଫର୍ମୁଲା ଦିଲ୍ଲୀ ୧୦, ଜନପଥକୁ ବେଶ୍ କାଟୁକଲା । ଯାହା ହେଲେ ମଧ ଓଡ଼ିଶା ରାଜନୀତିରେ ଜେ.ବି. ହେଉଛନ୍ତି ପିତାମହ ଭୀଷ୍ମ । ଏହାକୁ କେହି ଅସ୍ୱୀକାର କରିବ ଭଲା ।

## ବିଶ୍ୱଭୂଷଣଙ୍କ ଭୋଜି

**ହ**ଠାତ୍ ଡାକରା ଆସିଲା ରାଜସ୍ୱମନ୍ତ୍ରୀ ବିଶ୍ୱଭୂଷଣଙ୍କ ଭୋଜି ଖାଇବାକୁ । ଏହି ଭୋଜି ପୁଣି ଖାସ୍ ସାମ୍ବାଦିକଙ୍କ ପାଇଁ ଉଦ୍ଦିଷ୍ଟ ଥିଲା । ମାନେ ସାମ୍ବାଦିକଙ୍କୁ ଛାଡ଼ିଦେଲେ ଭୋଜି

ସ୍ଥଳକୁ କେହି ଯାଇ ପାରିବେନି । ଭୋଜି ସ୍ଥଳରେ ସାମ୍ବାଦିକଙ୍କ ସମସ୍ତ ପ୍ରଶ୍ନକୁ ବିଶ୍ୱଭୂଷଣ ଏଡ଼ାଇ ଯାଉଥିଲେ । ହସିହସି ସେ ଉତର ଦେଉଥିଲେ - ଆଜି କେବଳ ଭୋଜି । ଅନ୍ୟ ପ୍ରସଙ୍ଗ ନୁହେଁ । ଭୁରି ଭୋଜନ କରି ସାମ୍ବାଦିକମାନେ ଯିଏ ଯାହାର ବାଟରେ ଚାଲିଲେ । ବିଶ୍ୱଭୂଷଣ ହରିଚନ୍ଦନ ଭୁବନେଶ୍ୱର ବିଧାୟକଭାବେ ପ୍ରଥମ ଥର ନିର୍ବାଚିତ ହେବାବେଳେ ମଧ ସାମ୍ବାଦିକଙ୍କୁ ଭୁରି ଭୋଜନ ଦେଇଥିଲେ । ପୁଣି ମଝିରେ ମଝିରେ ସୁବିଧା ଦେଖି ସାମ୍ବାଦିକଙ୍କୁ ଭୋଜି ଦେବାରେ ବିଶ୍ୱଭୂଷଣ ଆଦୌ କାର୍ପଣ୍ୟ କରି ନଥା'ନ୍ତି । ସାମ୍ବାଦିକଙ୍କୁ ଭୋଜି ଦେବାରେ ପୂର୍ବତନ ମୁଖ୍ୟମନ୍ତ୍ରୀ ହେମାନନ୍ଦ ବିଶ୍ୱାଳଙ୍କ ଠାରୁ ପରମ୍ପରା ରହି ଆସିଛି । ମାନେ ତାଙ୍କ ନିର୍ବାଚନମଣ୍ଡଳୀରେ ଖାସି ବୁହାଯାଇ ଭୁବନେଶ୍ୱର ଅଣାଯିବ । ଭୋଜି ପ୍ରିୟ ସାମ୍ବାଦିକମାନେ ତାଙ୍କ ବାସଭବନ ପ୍ରାଙ୍ଗଣରେ ଥିବା ଦୁଇ ଚାରିଦିନ ଜୀବନ୍ତ ଛେଳିଙ୍କ ଚିତ୍କାର ଶୁଣିବେ । ତା'ପରେ ଯାଇ ମହାଭୋଜି । ମାନେ ରାଜଧାନୀରେ ଭେଜାଲ ଖାସି ମାଂସ ଖାଉଥିବା ସାମ୍ବାଦିକମାନଙ୍କୁ ବଣ ପାହାଡ଼ ଅ ଳରେ ସବୁଜପତ୍ର ଖାଉଥିବା ଖାସିଙ୍କର ମାଂସ ଖାଇବାର ସୁଯୋଗ ହେମାନନ୍ଦ ଦିଅନ୍ତି । ହେମାନନ୍ଦ ଏବଂ ବିଶ୍ୱଭୂଷଣଙ୍କ ଦେଖାଦେଖି କେତେକ ନେତା ଓ ମନ୍ତ୍ରୀ ମଧ ଭୋଜିର ଆୟୋଜନ କରୁଥିବାର ଦେଖାଗଲାଣି ।

## ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଆଉ କ'ଣ ରାଜ୍ୟରେ ପାଠପଢ଼ା ହେବନି ?

ଦ୍ୱିତୀୟ ବ୍ୟକ୍ତି : କାହିଁକି ?

ପ୍ରଥମ ବ୍ୟକ୍ତି : ଅର୍ଥମନ୍ତ୍ରୀ ଘୋଷଣା କରି ସାରିଲେଣି ଯେ ଦୁଇବର୍ଷ ମଧରେ ଅନୁଦାନ ଦିଆଯାଇପାରିବ ନାହିଁ ।

ଦ୍ୱିତୀୟ ବ୍ୟକ୍ତି : ଏଥିସହିତ ପାଠପଢ଼ାର କି ସମ୍ପର୍କ ?

ପ୍ରଥମ ବ୍ୟକ୍ତି : ଅନୁଦାନ ପାଇବା ଦାବିରେ ଶିକ୍ଷକମାନେ ତ ରାଜଧାନୀରେ ଆନ୍ଦୋଳନ କରିବାକୁ ଡେରା ପକାଇଛନ୍ତି । ପୁଣି ଅନୁଦାନ ନମିଳିବା ପର୍ଯ୍ୟନ୍ତ ଏହି ଆନ୍ଦୋଳନ ଚାଲୁ ରହିବ ବୋଲି ସେମାନେ କହିଲେଣି । ଆଉ ସ୍କୁଲ ଖୋଲିବ ଯେ ପିଲା ପାଠ ପଢ଼ିବେ ?



ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ନିଦାଗ ବିଷ୍ଣୁ

**ନ**ବୀନଙ୍କ ମନ୍ତ୍ରିମଣ୍ଡଳରେ ଅନେକ ମନ୍ତ୍ରୀଙ୍କ ନୂତନ ନାମକରଣ ହୋଇଛି । ନାମ ବାଛିଛନ୍ତି ପଂଚାୟତିରାଜ ମନ୍ତ୍ରୀ ସୁରେନ୍ଦ୍ରନାଥ ନାୟକ ଏବଂ ନାମ ନେଇଛନ୍ତି ପୂର୍ତ୍ତମନ୍ତ୍ରୀ ନଳିନୀକାନ୍ତ ମହାନ୍ତି । ସେଦିନ କ୍ୟାବିନେଟ ବୈଠକ ଶେଷ ହେବାମାତ୍ରେ ସୁର ଟମଟମ ହୋଇ ମନ୍ତ୍ରୀ କରିଡ଼ରରେ ଥିବା ତାଙ୍କ କାର୍ଯ୍ୟାଳୟକୁ ଚାଲିଗଲେ । ସୁରଙ୍କର କାହିଁକି ମୁଡ୍ ଅଫ୍ ହୋଇଛି ତାହା ଜାଣିବା ପାଇଁ ତାଙ୍କ ପିଛା ଧରିଥା'ନ୍ତି ସାମ୍ବାଦିକମାନେ । ସୁର ଆଉ ଥୟ ଧରି ରହିପାରିଲେ ନାହିଁ । କହୁକହୁ କହି ପକାଇଲେ - ନଳିନୀଙ୍କୁ ଚିହ୍ନିଚ । ଏଇ ଆମ ପୂର୍ତ୍ତମନ୍ତ୍ରୀ । ଆଜିର କ୍ୟାବିନେଟ ବୈଠକ ପରେ ତାଙ୍କର ନୂଆ ନାମକରଣ ହୋଇଛି । ନାମଟି ହେଲା- ନିଦାଗ ବିଷ୍ଣୁ । ମାନେ ସେ ଏମିତି କାମ କରିବେ ଯେ ତାଙ୍କ ଦେହରେ ଦାଗ ରହିବ ନାହିଁ । କଥାଟି ଯାଇ ନଳିନୀଙ୍କ କାନରେ ପହଂଚିଲା । ସଙ୍ଗେସଙ୍ଗେ ନଳିନୀ ଡାକ ପକାଇଲେ ସୁରଙ୍କୁ । ଡକରା ପାଇ ସୁର ତୁରନ୍ତ ଯାଇ ନଳିନୀଙ୍କ ପାଖରେ ହାଜର ହେଲେ । ନଳିନୀ କହିଲେ - କେମିତି ସେ ନିଦାଗ ହେଲେ ବୁଝାଇ ଦିଅ । ସୁର ଅତି ସରଳ ଏବଂ ସଂସ୍କୃତିପୂର୍ଣ୍ଣ ଭାଷାରେ ବୁଝାଇ ଦେଲେ ନିଦାଗ ସମ୍ପର୍କରେ । ନଳିନୀ ହସିଲେ, ସୁର ବି ହସିଲେ । ହସରେ ଉଚ୍ଛୁଳି ପଡ଼ିଲା ନଳିନୀଙ୍କ ପ୍ରକୋଷ୍ଠଟି । ମାନେ ନିଦାଗ ନାମକରଣକୁ ନେଇ ନଳିନୀ ଖୁସ୍ ସୁର ବି ଖୁସ୍ ।

# ସେସ୍‌କୋର ପ୍ରହସନ

**ବି**ଜୟ ବାବୁ ହେଉଛନ୍ତି ସଚିବାଳୟର ସେକ୍ସନ ଅଫିସର । ମାନେ ବଡ଼ବାବୁ । ସେଦିନ ବିଜୟ ବାବୁଙ୍କ ଘରୁ ହଠାତ୍ ଡାକରା ଆସିଲା । ଶୀଘ୍ର ଆସି ଘରେ ହାଜିରା ପକାଅ । ସେସ୍‌କୋବାଲା ଘର ଭିତରେ ପଶି ତାଣ୍ଡବଲୀଳା ଚଳାଇଛନ୍ତି । ବିଜୟବାବୁ ପ୍ରଥମେ କିଛି ବୁଝିପାରିଲେନି । ଯେହେତୁ ପତ୍ନୀଙ୍କ ଡାକରା ଆସିଛି ତେଣୁ ନଯିବାକୁ ଚାରା ନାହିଁ । ଘରେ ପହଂଚିବା ବେଳକୁ ସେସ୍‌କୋବାଲା ଘରେ କେତେ ପଏଂଟ ଅଛି ହିସାବ କରିସାରିଥା'ନ୍ତି । ଏଣିକି ବିଦ୍ୟୁତ୍ ବିଲ୍ ମାସକୁ ୧୨୦୦ ଟଙ୍କା ପଡ଼ିବ । ପୁଣି ତାହା ପିଛିଲା ତାରିଖରୁ । ଆଉ ଏହା ସହିତ ମଧ ଜୋରିମାନା ଦେବାକୁ ହେବ । ବିଜୟ ବାବୁଙ୍କ ମୁଣ୍ଡ ଘୁରେଇ ଦେଲା । ବିଦ୍ୟୁତ୍ ବିଲ୍ ବାବଦରେ ଯଦି ଏତେ ଟଙ୍କା ଦେବେ ତେବେ ଘର ଚାଲିବ କେମିତି । ବିଜୟ ବାବୁ ମଧ ସେସ୍‌କୋ ସହିତ ଯୁକ୍ତି କଲେ । ମିଟର ତ ଚାଲିଛି । ମିଟରରେ ଯାହା ଉଠିବ ତେଣିକି ୟୁନିଟ୍ ପିଛା ପଇସା ହିସାବ । ପଏଂଟ କଥା ଉଠିଲା କେଉଁଠୁ । ଯେତେ ନେହୁରା ହେଲେ ମଧ ବିଜୟ ବାବୁଙ୍କ କଥା ସେସ୍‌କୋବାଲା ଶୁଣିଲେନି ।

ସେସ୍‌କୋ ଭାରି କଡ଼ା । କଥା, କଥାକେ କଡ଼ାଗଣ୍ଡା ହିସାବ କରିନେବ । ବିଜୟ ବାବୁ 'ଥ' ହୋଇଗଲେ । ହଠାତ୍ ପଡ଼ିଶା ଘରର ଲୋକ ଆସି ତାଙ୍କ କାନରେ ଫୁସ୍‌ଫୁସ୍ ହୋଇ ଦୁଇପଦ କ'ଣ କହିଲେ । ବିଜୟ ବାବୁ ସଙ୍ଗେସଙ୍ଗେ ଚେଙ୍ଗା ହୋଇଉଠିଲେ । ସେସ୍‌କୋ ବାଲାଙ୍କୁ ଡାକି ନେଇ ଶହେ ଟଙ୍କା ହାତଗୁଞ୍ଜା ଦେଲେ । ସେସ୍‌କୋବାଲା ଏତିକି ହେବନି ବୋଲି କହିବାରୁ ବିଜୟ ବାବୁ ଆଉ ଶହେ ଟଙ୍କା ବଢ଼ାଇଦେଲେ । କଥାଯାଇ ତୁଟିଲା ୩୦୦ ଟଙ୍କାରେ । ସବୁର ସମାଧାନ ସେଇଠି ହୋଇଗଲା । ସେସ୍‌କୋବାଲା କହିଲେ ସବୁ ଠିକ୍ ଅଛି । ମିଟରରେ ଯାହା ବିଲ୍ ଉଠିବ ସେଇ ଅନୁଯାୟୀ ପଇସା ଦେବ । ମାନେ ହାତଗୁଞ୍ଜା ପାଇଁ ଏତେ ସମୟ ଧରି ସେସ୍‌କୋର ପ୍ରହସନ ଚାଲିଥିଲା ।

## ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ନବୀନ ସରକାର ଅକାଳରେ ଭାଙ୍ଗିବାର ସୂଚନା ମିଳିଲାଣି ।

ଦ୍ୱିତୀୟ ବ୍ୟକ୍ତି : କେମିତି ?

ପ୍ରଥମ ବ୍ୟକ୍ତି : ଏଇ ସଚିବାଳୟର ମହୁଫେଣା ।

ଦ୍ୱିତୀୟ ବ୍ୟକ୍ତି : ମହୁଫେଣା ?



ପ୍ରଥମ ବ୍ୟକ୍ତି : ମହୁଫେଣା କଥା ଜାଣିନୁ । ସଚିବାଳୟର ସାଧାରଣ ପ୍ରଶାସନ ବିଭାଗ ନିକଟରେ ମହୁଫେଣା ହେଲା ଯେ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାର ଭାଙ୍ଗିଲା । ପୁଣି ଶିକ୍ଷ ବିଭାଗ ନିକଟରେ ମହୁଫେଣା ହେବାରୁ ଗିରିଧର ଗମାଙ୍ଗ ସରକାର ଭାଙ୍ଗିଲା । ଏବେ କ୍ରୀଡ଼ା ଓ ଯୁବ ବ୍ୟାପାର ବିଭାଗ ସମ୍ମୁଖରେ ମହୁଫେଣା । ନବୀନ ସରକାର ଅକାଳରେ ଭାଙ୍ଗିବାର ଏହି ମହୁଫେଣା ଆଗୁଆ ସୂଚନା ଦେଉନି କି ?

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

## କୁକୁରର ବିଧାନସଭା ପ୍ରୀତି

**କ**ଡ଼ା ପହରା ମଧ୍ୟରେ ବିଧାନସଭା ଅଧିବେଶନ ଚାଲେ । କେବଳ ସେତିକି ନୁହେଁ ବିଧାନସଭା ପ୍ରାଙ୍ଗଣକୁ ଯିବାକୁ ହେଲେ ମଧ୍ୟ ପାଶ୍ ଦରକାର । ସେମିତି ଲବି ପାଇଁ ପାଶ୍ । ଗୃହର କାର୍ଯ୍ୟକ୍ରମ ଦେଖିବା ପାଇଁ ପାଶ୍ । ମନ୍ତ୍ରୀ ଏବଂ କାର୍ଯ୍ୟାଳୟ ପାଇଁ ମଧ୍ୟ ପାଶ୍ । ସେଦିନ ଏକ ଅଜବ ଦୃଶ୍ୟ ଦେଖିବାକୁ ମିଳିଥିଲା । ମନ୍ତ୍ରୀଙ୍କ ପ୍ରକୋଷ୍ଠ ଥିବା ପ୍ରଥମ ମହଲା ବାରଣ୍ଡାରେ ୪ଟି କୁକୁର ଏ ମୁଣ୍ଡରୁ ସେ ମୁଣ୍ଡ ପର୍ଯ୍ୟନ୍ତ ବୁଲୁଥିଲେ । ବେଳେବେଳେ

କୁକୁରଗୁଡ଼ିକ ମନ୍ତ୍ରୀଙ୍କ ପ୍ରକୋଷ୍ଠ ମଧ୍ୟକୁ ପଶି ଯାଆନ୍ତି ତ ପୁଣି କିଛି ସମୟ ପରେ ବାହାରକୁ ଚାଲି ଆସନ୍ତି । କୁକୁରଙ୍କର ଏହି ଆଚରଣ ଦେଖଣାହାରୀଙ୍କ ମଧ୍ୟରେ ବେଶ୍ କୌତୁହଳ ସୃଷ୍ଟି କରିଥିଲା । କେବଳ ସେତିକି ନୁହେଁ ଜଣେ ଜଣେ ମନ୍ତ୍ରୀ ସିଡ଼ିରେ ତଳକୁ ଓହ୍ଲାଉଥିବା ବେଳେ ମଧ୍ୟ କୁକୁରଗୁଡ଼ିକ ତାଙ୍କର ପିଛା କରୁଥିବାର ଦେଖାଯାଉଥିଲା । ସିଡ଼ି ତ୍ୱଳେ ମନ୍ତ୍ରୀଙ୍କୁ ବିଦାୟ ଦେଇ କୁକୁରଗୁଡ଼ିକ ପୁଣି ଉପର ମହଲାକୁ ଚାଲି ଆସୁଥିଲେ । ଏହି ଦୃଶ୍ୟ ନିରାପତାରକ୍ଷୀଙ୍କ ଦୃଷ୍ଟିକୁ ଯେ ଆସିନାହିଁ ତା' ନୁହେଁ । ସେଦିନ କେତେକ ବ୍ୟକ୍ତି କୁକୁରକୁ ଘଉଡ଼ାଇବା ପାଇଁ ନିରାପତାରକ୍ଷୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ । ନିରାପତାରକ୍ଷୀ କିନ୍ତୁ ଏହାକୁ ଆଦୌ ଗୁରୁତ୍ୱ ଦେଲେନି । କୁଆଡ଼େ ଏହି କୁକୁରଗୁଡ଼ିଙ୍କର ଆବସସ୍ଥଳୀ ହେଉଛି ବିଧାନସଭା ପ୍ରାଙ୍ଗଣ । ବର୍ଷକୁ ଦୁଇମାସ ସିନା ବିଧାନସଭା ଅଧିବେଶନ ବସୁଛି ହେଲେ ବର୍ଷକ ବାରମାସ ଏହି କୁକୁରଗୁଡ଼ିକ ବିଧାନସଭା ପ୍ରାଙ୍ଗଣରେ ରହନ୍ତି । ବିଧାନସଭା ହେଉଛି ସେମାନଙ୍କର ପୈତୃକ ସମ୍ପତି । ଦୁଇମାସ ପାଇଁ ସେମାନଙ୍କ ଅତିଥି ସତ୍କାର ଠିକ୍ ଭାବେ ଚାଲିଛି କି ନାହିଁ ତାହାକୁ ତଦାରଖ କରିବା ପାଇଁ ବିଧାନସଭାରେ କୁକୁର ବୁଲିଲେ ତାହାକୁ କ'ଣ କେହି ଅପ୍ରାସଙ୍ଗିକ ବୋଲି କହିପାରିବ କି ।

# ଷଣ୍ଢ ଉବାଚ

**ସ**ଚିବାଳୟ ବାରଣ୍ଡାରେ ଷଣ୍ଢ ବୁଲୁଥିବାର ଦୃଶ୍ୟ ତ ଅନେକ ସମୟରେ ଦେଖିବାକୁ ମିଳିଥାଏ । କିନ୍ତୁ ଷଣ୍ଢ ଯେ ଲିଫ୍ଟରେ ଯିବା ପାଇଁ ଜିଦ୍ ଧରି ବସିବ ତାହା କାନକୁ ଅଡୁଆ ଲାଗିବ ହିଁ ଲାଗିବ । ଏଇ ସେଦିନର ଘଟଣା । ସମୟ ସେତେବେଳକୁ ପ୍ରାୟ ଦିନ ୧୦ଟା ୧୫ ମିନିଟ୍ । ନିଜନିଜ ବିଭାଗକୁ ଯିବା ପାଇଁ କର୍ମଚାରୀମାନେ ତରତର ହେଉଥା'ନ୍ତି । ପ୍ରଥମ ଓ ଦ୍ୱିତୀୟ ମହଲାକୁ ଯିବା ପାଇଁ ଲିଫ୍ଟ ନିକଟରେ ହାଜର ହେବା ବେଳକୁ ଏକ ଅଜବ ଦୃଶ୍ୟ ଦେଖିବାକୁ ମିଳିଲା । ଲିଫ୍ଟ ଭିତରେ ଷଣ୍ଢ । ଯେତେ ଘଉଡ଼ାଇଲେ ମଧ୍ୟ ଷଣ୍ଢଟି ଲିଫ୍ଟରୁ ବାହାରକୁ ଆସୁନି । ସେତେବେଳକୁ ଲିଫ୍ଟ ଚାଳକ ଝାଳରେ ଜୁଡୁବୁଡୁ । ଅନନ୍ୟୋପାୟ ହୋଇ ଚାଳକଟି ଲିଫ୍ଟ ଭିତରୁ ବାହାରକୁ ଚାଲିଆସିଲା । ହଠାତ୍ କେହି ଜଣେ ପ୍ରସ୍ତାବ ଦେଲେ - ଷଣ୍ଢକୁ ଲିଫ୍ଟରେ ଉପରକୁ ନେଇ ତଳକୁ ଅଣାଯାଉ । ପ୍ରସ୍ତାବ ତୁରନ୍ତ କାର୍ଯ୍ୟକାରୀ ହେଲା । ଷଣ୍ଢକୁ ନେଇ ଲିଫ୍ଟ ଚାଲିଲା ଉପରକୁ । ପୁଣି ଯେତେବେଳେ ଲିଫ୍ଟଟି ତଳକୁ ଆସିଲା ଦେଖାଗଲା ଷଣ୍ଢଟି ଆପେଆପେ ଲିଫ୍ଟରୁ ବାହାରକୁ ଚାଲିଆସିଲା । ଯଦି ମଣିଷମାନେ ଲିଫ୍ଟରେ ଯିବା ଆସିବା କରିବେ ତେବେ ଷଣ୍ଢ କାହିଁକି ସେଥିରୁ ବାଦ୍ ପଡ଼ିବ । ଯାହା ହେଲେ ବି ଦେବ ଦେବ ମହାଦେବଙ୍କର ସେ ବାହନଟି ।

# ଜେ.ବି. ବନାମ ହେ.ବି.

**କଂ**ଗ୍ରେସ ରାଜନୀତିରେ ଜେ.ବି. ଏବଂ ହେ.ବି. ନାମ ବେଶ୍ ପରିଚିତ । ମାନେ ଜେ.ବି. ହେଲେ ଜାନକୀ ବଲ୍ଲଭ ପଟ୍ଟନାୟକ ଏବଂ ହେ.ବି. ହେଲେ ହେମାନନ୍ଦ ବିଶ୍ୱାଳ । ଉଭୟେ ପୂର୍ବତନ ମୁଖ୍ୟମନ୍ତ୍ରୀ । ରାଜ୍ୟ କଂଗ୍ରେସରେ ଏହି ଦୁଇଜଣଙ୍କର ଗ୍ରୁପ୍ ରହିଛି । ମାନେ ସେଦିନ ଜେ.ବି. ସାମ୍ବାଦିକ ସମ୍ମିଳନୀରେ କହିଲେ ତେହଲକା ଡଟ୍ କମ୍ ଇସ୍ୟୁକୁ ନେଇ ବାଜପାୟୀ ସରକାରର ଦୁର୍ନୀତି ସମ୍ପର୍କରେ ଜନସାଧାରଣଙ୍କୁ ସଚେତନ କରାଇବା ପାଇଁ ଅଭିଯାନ ଆରମ୍ଭ ହେବ । ପରେପରେ ହେ.ବି.ଙ୍କ ସାମ୍ବାଦିକ ସମ୍ମିଳନୀ । ସେଇ ଏକା ପ୍ରସଙ୍ଗ । ମାନେ ଜେ.ବି. ଆଗେଆଗେ ତ ହେ.ବି. ପଛେପଛେ । ଦଳୀୟ କର୍ମୀଙ୍କ ମତ କିନ୍ତୁ ଭିନ୍ନ । ସେମାନେ ଜେ.ବି. ଏବଂ ହେ.ବି. ପ୍ରସଙ୍ଗ ନଉଠାଇ କହୁଛନ୍ତି କଂଗ୍ରେସରେ ଆଗପଛ ରାଜନୀତି ଚାଲିଛି ।

# ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ଏଣିକି ବର୍ଷକର ଦରମା ନେବ ଆଉ ପନ୍ଦର ଦିନର କାମ କରିବ ।

ଦ୍ୱିତୀୟ ବ୍ୟକ୍ତି : କିଛି ବୁଝିହେଲା ନାହିଁ ।

ପ୍ରଥମ ବ୍ୟକ୍ତି : ଅତି ସରଳ । ଏଇ ମାର୍ଚ୍ଚ ମାସ କଥା । ୧୫ ତାରିଖ ପରେ ସବୁ ବିଭାଗରେ ଦିନରାତି କାମ । ବର୍ଷ ତମାମ ଟଙ୍କା ନଥିଲା । ସମସ୍ତେ ହାତଟେକି ବସିଥିଲେ । ଆର୍ଥିକ ବର୍ଷ ଶେଷ ବେଳକୁ ବିଭାଗକୁ ଆସିଲା କୋଟିକୋଟି ଟଙ୍କା । ପୁଣି ମାର୍ଚ୍ଚ ୩୧ ତାରିଖ ମଧ୍ୟରେ ଖର୍ଚ୍ଚ ହେବ ନହେଲେ ଫେରିଯିବ । ବର୍ଷଯାକର କାମ ୧୫ ଦିନ ମଧ୍ୟରେ ହେବ । ମାନେ ବର୍ଷକ ମଧ୍ୟରୁ ୩୪୭ ଦିନ କାମ କରିବାର ଆବଶ୍ୟକତା ନାହିଁ । ୧୫ ଦିନର କାମରେ ବର୍ଷକର କାମ ଶେଷ । ଦରମା ବର୍ଷକର ଆଉ କାମ ୧୫ ଦିନର ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ଲେଖକ ନବୀନ

**ରା**ଜନୀତିକୁ ଆସିବା ପୂର୍ବରୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ଲେଖକ ଭାବେ ବେଶ୍ ଖ୍ୟାତି ଥିଲା । ନବୀନଙ୍କର ବହି ଲେଖିବା ଏକ ସଉକ ଥିଲା । ସାଂସଦ, କେନ୍ଦ୍ରମନ୍ତ୍ରୀ,

ବିଧାୟକ, ମୁଖ୍ୟମନ୍ତ୍ରୀ ହେବାପରେ ନବୀନଙ୍କ ଏହି ସଉକ୍ ବାଧାପ୍ରାପ୍ତ ହୋଇଛି । ମାନେ ସେ ଚାହିଁଲେ ମଧ୍ୟ କଲମ ଚାଳନା କରିପାରୁନାହାନ୍ତି । ଯେତେବେଳେ କିଛି ଲେଖିବା ପାଇଁ ସେ କଲମ ବାହାର କରୁଛନ୍ତି ସେତେବେଳେ ତାଙ୍କୁ ଚାତକ ପରି ଚାହିଁ ରହିଥାଏ ଫାଇଲ୍ । ନବୀନ ଏବେ ପୁସ୍ତକ ଲେଖା ଭୁଲିଗଲେଣି । ସୃଜନଶୀଳ ଲେଖା ଛାଡ଼ି କେବଳ ଦସ୍ତଖତ ଅଭ୍ୟାସ ସେ କରି ଚାଲିଛନ୍ତି । ଏଇ ସେଦିନ । ନବୀନ କହୁକହୁ କହି ପକାଇଲେ- ଭଲ ରାଜନୀତିରେ ପଶିଲି ଯେ ଲେଖାଲେଖି ଚୁଲିକୁ ଗଲା । ନବୀନଙ୍କର ଗୁରୁ ହେଉଛନ୍ତି ଅଟଳ୍ ବିହାରୀ ବାଜପାୟୀ । ନବୀନ ତାଙ୍କ ଗୁରୁଙ୍କଠାରୁ ଏ ଦିଗରେ ତାଲିମ ନେବାର ଆବଶ୍ୟକତା ରହିଛି । ଗୁରୁ ବାଜପାୟୀ ଯେମିତି ରାଜନୀତି ସହିତ ଲେଖନୀ ଚାଳନା ଅବ୍ୟାହତ ରଖିଛନ୍ତି ସେହିପରି ହେବାକୁ ସେ ଉଦ୍ୟମ କରନ୍ତୁ । ବ୍ୟସ୍ତ ରାଜନୀତି ଜୀବନରୁ କିଛି ସମୟ ପାଇଁ ଅବ୍ୟାହତ ନେଇ ବାଜପାୟୀଙ୍କ ପରି ନବୀନ ଛୁଟି କଟାନ୍ତୁ । ସେହି ସମୟରେ ଲେଖନୀ ଚାଳନା କରନ୍ତୁ ।

## ନଳିନୀଙ୍କ ନିମନ୍ତ୍ରଣ

**ବିଜୁ** ଜନତା ଦଳର କାର୍ଯ୍ୟକାରୀ ସଭାପତି ଏବଂ ମେଂଟ ସରକାରର ପୂର୍ତ୍ତ, ଗୃହ, ସଂସଦୀୟ ବ୍ୟାପାର ମନ୍ତ୍ରୀ ଦୁଇ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଦାୟିତ୍ୱ ସଫଳତାର ସହିତ ନଳିନୀ ମହାନ୍ତି ତୁଲାଇ ଚାଲିଛନ୍ତି । ଦିନକୁ ଦିନ ନଳିନୀଙ୍କର ଲୋକସମ୍ପର୍କ ବଢ଼ି ଚାଲିଛି । କ୍ରମେ ତାଙ୍କର ଚିହ୍ନା ପରିଚୟ ବ୍ୟକ୍ତିଙ୍କ ସଂଖ୍ୟା ଏତେ ବୃଦ୍ଧି ପାଇଲାଣି ଯେ ଯୁଆଡ଼କୁ ଚାହିଁବ ସିଆଡ଼େ ନଳିନୀଙ୍କ ଲୋକ । ଏହି ଲୋକସମ୍ପର୍କ ନଳିନୀଙ୍କ ପାଇଁ ସମସ୍ୟା ହୋଇପଡ଼ିଛି । ମାନେ ଉତ୍ସବ, ବାହାଘର ପ୍ରଭୃତିରେ କାହାକୁ ନିମନ୍ତ୍ରଣ ପତ୍ର ଦିଆଯିବ ସେ ନିଷ୍ପତି ନଳିନୀ ନେଇପାରୁନାହାନ୍ତି । ନିମନ୍ତ୍ରଣ ପତ୍ର ବଂଟାଗଲାବେଳେ କେହି ନା କେହି ତାଙ୍କ ଚିହ୍ନା ପରିଚୟ ବ୍ୟକ୍ତି ନିମନ୍ତ୍ରଣ ପାଇବାରୁ ବଂଚିତ ହେବେ ହିଁ ହେବେ । ନିମନ୍ତ୍ରଣ ପତ୍ର ଦିଆଯିବା ଉପରେ ନଳିନୀ ଏକ ଫର୍ମୁଲା ବାହାର କରିଛନ୍ତି । ମାନେ ନିମନ୍ତ୍ରଣ ପତ୍ର ବଂଟାଯିବ ନାହିଁ । ଯାହାକୁ ଦେଖା ହେବ ତାଙ୍କୁ ନିମନ୍ତ୍ରଣ କରାଯିବ । କେବଳ ଶୋକସମ୍ବାଦ ଜଣାଇବା ପାଇଁ ପତ୍ର ଯିବ । ନଳିନୀଙ୍କ ଫର୍ମୁଲାଟି କେତେଦୂର ସଫଳ ହେଉଛି ତାହା ଦେଖିବାକୁ ବାକି ରହିଛି ।

## ଦିଲ୍ଲୀପଙ୍କ ମୌନ ଭଙ୍ଗ

ବିଜୁଙ୍କ ଶେଷ ଜୀବନର ବନ୍ଧୁ ଦିଲ୍ଲୀପ ରାୟ ମୌନବ୍ରତରେ ଅଛନ୍ତି । ଓଡ଼ିଶାରେ ବିଜେଡି- ବିଜେପି ମେଂଟ କରିବାରେ ଦିଲ୍ଲୀପଙ୍କ ଅବଦାନ ଗୁରୁତ୍ୱପୂର୍ଣ୍ଣ ଥିଲା । ବିଜୁ ଜନତା ଦଳ

ଗଠନ କରିବାରେ ମଧ୍ୟ ସେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । କିନ୍ତୁ ଅତି ଆକସ୍ମିକ ଭାବେ କେନ୍ଦ୍ର ମନ୍ତ୍ରିମଣ୍ଡଳରୁ ସେ ବିଦା ହୋଇଗଲେ । ସମସ୍ତେ ଆଶା କରୁଥିଲେ ଏହି ଘଟଣା ପରେ ଦିଲ୍ଲୀପଙ୍କ ରାଗ ପଂଚମରେ ପହଂଚିବ । ସେ ପାଟି ଖୋଲିବେ । ପ୍ରତିକ୍ରିୟା ପ୍ରକାଶ କରିବେ । କିନ୍ତୁ ଦିଲ୍ଲୀପ ଯେଉଁ ଶାନ୍ତକୁ ସେଇ ଶାନ୍ତ । ଯାହାସବୁ ଘଟିଗଲା ତାହା ଯେପରି ସେ କିଛି ଜାଣନ୍ତି ନାହିଁ । ସାମ୍ବାଦିକମାନେ ତାଙ୍କୁ ଯେତେ ଚିମୁଟିଲେ ମଧ୍ୟ ତାଙ୍କ ପାଟିରୁ ନବୀନଙ୍କ ବିରୋଧରେ ପଦଟିଏ କଥା ମଧ୍ୟ ବାହାରିଲା ନାହିଁ । କିନ୍ତୁ ଦିଲ୍ଲୀପ ଯେଉଁ ଚେଙ୍ଗ ବାଣଟି ଛାଡ଼ିଦେଇଛନ୍ତି ତାହା ବିସ୍ଫୋରକ ପରିସ୍ଥିତି ସୃଷ୍ଟି କରିଛି । ଏହି ଚେଙ୍ଗ ବାଣ ହେଲା- ଆଉ ମାସକ ପରେ ସେ ପାଟି ଖୋଲିବେ । ତେବେ ଦିଲ୍ଲୀପ ତାଙ୍କର ମୌନବ୍ରତ ଭଙ୍ଗ କରିବେ କି ନାହିଁ ତାହା ଜଣାପଡୁନାହିଁ । ଦେଖାଯାଉ ଦିଲ୍ଲୀପ କେବେ ମୌନବ୍ରତ ଭଙ୍ଗ କରୁଛନ୍ତି ।

## ଚିଲିକାର ଉପବାସ

ହଠାତ୍ ଦେଖାଗଲା ରାଜଧାନୀ ଭୁବନେଶ୍ୱରରେ ଚିଲିକା ମାଛ ଉଭାନ ହୋଇଗଲେ । ମାନେ ଚିଲିକା ମାଛ ରାଜଧାନୀରେ ଦୁଃସ୍ୱପ୍ନ ହୋଇଗଲା । ରାଜଧାନୀ ବାସିନ୍ଦା ଚିଲିକା ମାଛ କିଣିବାକୁ ପାଇଲେ ନାହିଁ । ମାଛ ବେପାରୀ କହିଲେ ଚିଲିକା ଉପବାସ କରିଛି । କିନ୍ତୁ ପ୍ରକୃତ ତଥ୍ୟ ହେଲା ଅଶାନ୍ତ ଚିଲିକାକୁ ଶାନ୍ତ କରିବାକୁ କାଳୀଜାଇ ପୀଠରେ ମହାଯଜ୍ଞର ଆୟୋଜନ ହୋଇଛି । ଯଜ୍ଞ ପା ଦିନ ଧରି ଚାଲିବ । ଏହି ସମୟରେ ଚିଲିକାରେ ମାଛ ମରାଯିବ ନାହିଁ । ଚିଲିକାକୁ ଶାନ୍ତ କରିବାକୁ ଏଭଳି ଯଦି ପ୍ରତ୍ୟହ ଯଜ୍ଞ ହୁଅନ୍ତା ତେବେ ଆଉ କେହି ହୁଅନ୍ତୁ କି ନାହିଁ ମାଛମାନେ ଅନ୍ତତଃ ଶାନ୍ତିରେ ନିଃଶ୍ୱାସ ନେଇପାରନ୍ତେ । ଅକାଳ ମୃତ୍ୟୁର ଆଶଙ୍କା ରହନ୍ତା ନାହିଁ ।

## ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଆଉ କିଛିଦିନ ପରେ ବିଜେଡି-ବିଜେପି ମେଂଟ ସରକାରର ପତନ ଘଟିବ ?

ଦ୍ୱିତୀୟ ବ୍ୟକ୍ତି : କେମିତି ?

ପ୍ରଥମ ବ୍ୟକ୍ତି : ଏଇ ସେଦିନ ବିଜେପି ରାଜ୍ୟ ସଭାପତି ମନମୋହନ ସାମଲ ଯାହା କହିଲେ । ଏଣିକି ବିଜେପି ନିଜ ଗୋଡ଼ରେ ଠିଆ ହେବ । ମାନେ ବିଜେପି ସରକାର ଗଢ଼ିବ । ଯେତେବେଳେ ଦଳର ସଭାପତି ଏହା କହିଲେଣି ଆଉ ମେଂଟ ସରକାର ରହିବାର ପ୍ରଶ୍ନ କେଉଁଠୁ ଉଠୁଛି ?

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।



# ଦିଲ୍ଲୀ ଷ୍ଟାଇଲ

ଓଡ଼ିଶାକୁ ଦିଲ୍ଲୀ ଷ୍ଟାଇଲ ଘାରିଛି । ମାନେ ଡ୍ରେସ୍ ପିନ୍ଧନ୍ତୁ ତାହା ଦିଲ୍ଲୀ ଷ୍ଟାଇଲ । ମାର୍କେଟିଂ କରନ୍ତୁ ତାହା ଦିଲ୍ଲୀ ଷ୍ଟାଇଲ । ରାଜନୀତି କରନ୍ତୁ ତାହା ବି ଦିଲ୍ଲୀ ଷ୍ଟାଇଲ । ଆଗରୁ 'ଇଫତାର' ରାଜନୀତି ଦିଲ୍ଲୀରେ ଚାଲୁଥିଲା । ଏହା ଓଡ଼ିଶାକୁ ସଂକ୍ରମିତ ହୋଇଛି । ୧୪ ବର୍ଷକାଳ ମୁଖ୍ୟମନ୍ତ୍ରୀ ପଦରେ ରହିଥିବାବେଳେ ଜାନକୀ ବଲ୍ଲଭ ପଟ୍ଟନାୟକ କେବେ ବି ଇଫତାର ପାର୍ଟିଟିଏ ଡାକିଥିବାର ଦେଖାଯାଇ ନଥିଲା । ହଠାତ୍ ନିମନ୍ତ୍ରଣ ପତ୍ର ବଂଟାଗଲା । ଜାନକୀ ଇଫତାର ପାର୍ଟି ଡାକିଛନ୍ତି । ଜାନକୀଙ୍କ ପାଖ ଲୋକମାନେ ମଧ୍ୟ ଏହାକୁ ବିଶ୍ୱାସକୁ ନେଇପାରିଲେନି । ବୁଝିଲାବେଳକୁ କିନ୍ତୁ କଥାରେ ସତ୍ୟତା ଅଛି । ମାନେ ଜାନକୀଙ୍କୁ ଦିଲ୍ଲୀ ଷ୍ଟାଇଲ ଘାରିଛି । ଜାନକୀ ଇଫତାର ପାର୍ଟି ନିମନ୍ତ୍ରଣ ପତ୍ର ବାଂଟିଦେଇ ଓଡ଼ିଶା ରାଜନୀତିରେ ଏକ ଚେଙ୍ଗ ବାଣ ଛାଡ଼ିଦେଲେ । ଜାନକୀଙ୍କ ଷ୍ଟାଇଲ ଦେଖି ଅନ୍ୟମାନଙ୍କର ଚେତା ପଶିଲା । ସେମାନେ ବି କାହିଁକି ପଛେଇ ଯିବେ । ସଙ୍ଗେସଙ୍ଗେ ତାଙ୍କର ମୁଖ୍ୟ ପ୍ରତିଦ୍ୱନ୍ଦ୍ୱୀ ହେମାନନ୍ଦ ବିଶ୍ୱାଳ ଜାନକୀଙ୍କ ଇଫତାର ପାର୍ଟି ପୂର୍ବରୁ ଏକ ଇଫତାର ପାର୍ଟି ଡାକିଲେ । ପରେ ବିଜୁ ଜନତା ଦଳ ମଧ୍ୟ ଇଫତାର ପାର୍ଟି ଡାକିଲା । ତା ପରେ ଦେଖାଗଲା ଇଫ୍‌ତାର ପାର୍ଟିର ଧାଡ଼ି ଲମ୍ବି ଚାଲିଥିବାର । ତେବେ ଆଉକିଛି ହେଉ କି ନହେଉ କିନ୍ତୁ ଦିଲ୍ଲୀର ଇଫତାର ପାର୍ଟି ଷ୍ଟାଇଲଟି ଓଡ଼ିଶାର ନେତାମାନଙ୍କର ବେଶ୍ ପସନ୍ଦ ହୋଇଛି ।

# ବୃତି ଟିକସ କୀଳା

ବୃତି ଟିକସ ବିଲ୍‌ଟି ଯେ, ଏକ କୀଳା ତାହାକୁ ଅନ୍ୟ କେହି ଜାଣନ୍ତୁ କି ନାହିଁ ଦୁଇଜଣ କିନ୍ତୁ ଭଲ ଭାବେ ବେଶ୍ ହୃଦୟଙ୍ଗମ କରିଛନ୍ତି । ଜଣେ ହେଲେ ତତ୍କାଳୀନ କଂଗ୍ରେସ ସରକାରର ଅର୍ଥମନ୍ତ୍ରୀ ବସନ୍ତ ବିଶ୍ୱାଳ ଏବଂ ଅନ୍ୟଜଣକ ହେଉଛନ୍ତି ବ ମାନର ମେଂଟ ସରକାରର ଅର୍ଥମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ । ବାବୁ ବସନ୍ତ ଏହି ବିଲଟିକୁ ବିଧାନସଭାରେ ଆଣି ଯେପରି ଅପଦସ୍ଥ ହୋଇଥିଲେ ସେହି ତିକ୍ତ ଅନୁଭୂତିକୁ ସେ କେବେ ବି ପାସୋରି ପାରିବେ ନାହିଁ । ଶେଷରେ ତାଙ୍କୁ ଏହି ବିଲ୍‌କୁ ପ୍ରତ୍ୟାହାର କରିବାକୁ ପଡ଼ିଥିଲା । ଆଉ ରାମକୃଷ୍ଣଙ୍କ ଅବସ୍ଥା ତ ସମସ୍ତେ ଜାଣନ୍ତି । ସଂଖ୍ୟା ଅଧିକ ଥିବା ଦୃଷ୍ଟିରୁ ବିଲ୍‌ଟିକୁ ବିଧାନସଭାରେ ଗୃହୀତ କରାଇବାରେ ସେ ସଫଳ ହୋଇଗଲେ । କିନ୍ତୁ କୀଳାକୁ ନେଇ ରଖିବେ କେଉଁଠି । ବୃତି ଟିକସ ରାମକୃଷ୍ଣଙ୍କ ପାଇଁ କୀଳା ସାଜିଛି । ଓକିଲ ଷ୍ଟ୍ରାଇକ୍, ଓଡ଼ିଶା ବନ୍ଦ ସବୁ ବୃତି ଟିକସକୁ ନେଇ । ବୃତି ଟିକସ କୀଳାକୁ ରାମକୃଷ୍ଣ କିପରି ଏବଂ କେତେଦିନ ସମ୍ଭାଳୁଛନ୍ତି ତାହା ଦେଖିବାକୁ ବାକି ରହିଛି ।

# ନବୀନଙ୍କ ଆସର

**ବି**ଜୁ ପୁତ୍ର ନବୀନଙ୍କର ଆସର । ଏହାକୁ ସହଜରେ କେହି ଗ୍ରହଣ କରିବେ ନାହିଁ । କିନ୍ତୁ ନବୀନଙ୍କ ନିରାପତାରକ୍ଷୀଙ୍କ କଥାକୁ ତ କେହିକେହି ବିଶ୍ୱାସ କରିବେ ହିଁ କରିବେ । ରାତି ଯେତେ ଅଧିକ ହୁଏ ନବୀନଙ୍କ ନିରାପତାରକ୍ଷୀଙ୍କ ଚିନ୍ତା କୁଆଡ଼େ ସେତେ ବଢ଼ିବଢ଼ି ଯାଏ । ନବୀନ କୁଆଡ଼େ ରଜା-ରାଜୁଡ଼ାଙ୍କ ପଦାଙ୍କ ଅନୁସରଣ କରୁଛନ୍ତି । ମାନେ ରଜାଙ୍କ ପରି ସେ ମଧ କୁଆଡ଼େ ଅନ୍ଧାରୀ ବିଜେ କରନ୍ତି । ପ୍ରଜାମାନେ ତାଙ୍କ ସମ୍ପର୍କରେ କ'ଣ ଆଲୋଚନା କରନ୍ତି ତାହା ଜାଣିବା ପାଇଁ ନବୀନଙ୍କର ଏହି ଅନ୍ଧାରୀ ବିଜେ ନୁହେଁ । ଏହି ଅନ୍ଧାରୀ ବିଜେ କୁଆଡ଼େ ସାଙ୍ଗସାଥୀଙ୍କୁ ନେଇ ମଉଜ ମଜଲିସ୍ କରିବା ପାଇଁ । ଯାହାକୁ ସମ୍ପୂର୍ଣ୍ଣ ଅନ୍ଧକାରରେ ରଖିବାକୁ ନବୀନ ଚାହାଁନ୍ତି । ଯେଉଁଥିପାଇଁ ଏହି ବିଜେ ସମୟରେ ସେ ସାଙ୍ଗରେ ନିରାପତାରକ୍ଷୀ କିମ୍ବା ସରକାରୀ ଯାନବାହନ ନିଅନ୍ତି ନାହିଁ । ନବୀନଙ୍କ ଏହି ଅନ୍ଧାରୀ ବିଜେ ସମ୍ପର୍କରେ ତାଙ୍କ ନିରାପତାରକ୍ଷୀଙ୍କ ମଧରେ ଆଲୋଚନା ହେଉ ହେଉ ତାହା ବିଲେଇ ମୁହଁରୁ ମୁଣା ଖସିଯିବା ପରି ହୋଇଯାଇଛି । ମାନେ ଅନ୍ଧାରୀ ବିଜେ ପ୍ରସଙ୍ଗଟି ଆଉ ନିରାପତାପକ୍ଷୀଙ୍କ ନିକଟରେ ସୀମାବଦ୍ଧ ହୋଇ ରହିନାହିଁ । ତାହା କ୍ୟାପିଟାଲବାସୀଙ୍କ ପାଇଁ ଆଲୋଚନାର ପ୍ରସଙ୍ଗ ହୋଇଯାଇଛି ।

# ଚତୁର ଚତୁରେ

**କ**ଥାରେ ଅଛି ଚତୁର ଚତୁରେ କୋଳାକୋଳି । କେଉଁ ଯୁଗରୁ ଏହି ପ୍ରବାଦଟି ରହିଆସିଛି । ରାଜ୍ୟ କଂଗ୍ରେସ ପାଇଁ ଏହି ପ୍ରବାଦଟି ବେଶ୍ ପ୍ରଯୁଜ୍ୟ । ମାନେ ଏହି ଦଳର ନେତାମାନେ ହେଉଛନ୍ତି ଚତୁର । ଯେତେ ଶତ୍ରୁତା ଥାଉ ପଛେ ଡାକିଦେଲେ ପାଖରେ ଆସି ହାଜର ହୋଇଯିବେ । ହସିହସି ଦୁଇପଦ କଥା ହେବେ । କୋଳାକୋଳି ହେବେ । ପୁଣି ସେଠାରୁ ଚାଲିଆସିବା ପରେ ଆରମ୍ଭ ହୋଇଯାଏ ଯୁଦ୍ଧଂ ଦେହି ଡାକରା । ଏଇ ସେଦିନର ଘଟଣା । ଜାନକୀ ଡାକିଲେ ଇଫ୍‌ତାର ପାର୍ଟି । ପାର୍ଟିରେ ଜାନକୀଙ୍କ ଜଣାଶୁଣା ଶତ୍ରୁଙ୍କ ଧାଡ଼ି ଲାଗିଲା । ମାନେ କାହ୍ନୁଚରଣ ଲେଙ୍କା, ବସନ୍ତ ବିଶ୍ୱାଳ, ହେମାନନ୍ଦ ବିଶ୍ୱାଳ, ହବିବୁଲ୍ଲା ଖାଁ ଯାଇ ପାର୍ଟିରେ ଆଗ ହାଜିରା ପକେଇଲେ । ଜାନକୀଙ୍କ ବିରୋଧରେ ଏହି ନେତାମାନେ ଯେଭଳି ଗଳାଫଟାଇ ଚିତ୍କାର କରୁଥିଲେ ତାହା ସମସ୍ତେ ଜାଣନ୍ତି । କିନ୍ତୁ ଇଫ୍‌ତାର ପାର୍ଟିରେ ସେମାନେ ଜାନକୀଙ୍କ ସହ ମିଠାମିଠା କଥା ହେଲେ । ହାତ ମିଳାଇଲେ । ଜାନକୀ ହସିଲେ, ସେମାନେ ବି ହସିଲେ । ଦେଖଣାହାରୀଙ୍କ ଆଖି କିନ୍ତୁ ଟେର । ଯାହାହେଲେ ବି କଂଗ୍ରେସ ରାଜନୀତିଟି ।

## ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଏଥର ଗୋଟିଏ ନୁହେଁ ଦୁଇଟି ମୁଖ୍ୟମନ୍ତ୍ରୀ ପଦ ରହିବ ।

ଦ୍ୱିତୀୟ ବ୍ୟକ୍ତି : ପାଗଳଙ୍କ ପରି କ'ଣ ଏମିତି ଗପୁଛୁ ?

ପ୍ରଥମ ବ୍ୟକ୍ତି : ବିଧାନସଭାରେ ଯାହା ଘଟିଲା ତାହା କ'ଣ ମନେପଡୁନି କି ?



ଦ୍ୱିତୀୟ ବ୍ୟକ୍ତି : କେଉଁ ବିଷୟ ?

ପ୍ରଥମ ବ୍ୟକ୍ତି : ମୁଖ୍ୟମନ୍ତ୍ରୀଙ୍କ ଆସନରେ ଅର୍ଥମନ୍ତ୍ରୀ ରାମକୃଷ୍ଣ ବସିପଡ଼ିଲେ ।

ଦ୍ୱିତୀୟ ବ୍ୟକ୍ତି : ସେଇଠୁ କ'ଣ ହେଲା ?

ପ୍ରଥମ ବ୍ୟକ୍ତି : ବିଧାନସଭାରେ ଯାହା ହୁଏ ତାହା ଆଇନ୍ । ଏଣିକି ଦୁଇ ଦୁଇଟି ମୁଖ୍ୟମନ୍ତ୍ରୀ ପଦ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

## ଡୋଂଟ ଓରି, ବି ହାପି

**ଡି**ସେମ୍ବର ୩୧ ତାରିଖ । ରାତି ବାରଟା । କ୍ୟାପିଟାଲ ଭୁବନେଶ୍ୱରରେ ଥିବା କ୍ଲବ ଏବଂ ହୋଟେଲଗୁଡ଼ିକରେ ଚାଲିଥାଏ ଆସର ନୂଆବର୍ଷ ୨୦୦୧କୁ ସ୍ୱାଗତ ଜଣାଇବା ପାଇଁ । ସବୁଠି ମଦ, ନାଚ, ଗୀତ ସହ ଖାନା, ପିନା । ଆସରକୁ ଦେଖିଲେ କେହି କେବେ ଭାବିପାରିବନି ଯେ ରାଜ୍ୟରେ ପ୍ରଳୟଙ୍କରୀ ମହାବାତ୍ୟାରେ ଶହଶହ ଲୋକଙ୍କର ମୃତ୍ୟୁ ଘଟିଛି ଏବଂ ଲକ୍ଷଲକ୍ଷ ଲୋକ ବାସହରା ହୋଇଛନ୍ତି । ପୁଣି ବେଢ଼ି ଉପରେ କୋରାଡ଼ା ମାଡ଼ ପରି ମହାବାତ୍ୟା ପରେପରେ ରାଜ୍ୟବାସୀଙ୍କ ଉପରେ ଦାଉ ସାଧିଛି ମରୁଡ଼ି । କେବଳ ସେତିକି ନୁହେଁ ରାଜ୍ୟର ଋଣଭାର ମଧ୍ୟ ୧୮ ହଜାର କୋଟି ଟଙ୍କାରେ ପହଂଚିଛି । ସବୁ ଦୁର୍ଦ୍ଦିନକୁ ସାଥିରେ ନେଇ ଚାଲିଥିବା ଓଡ଼ିଶାବାସୀ ଯେ ଡିସେମ୍ବର ୩୧ ତାରିଖ ରାତି ଅଧର ନାଚଗୀତ, ଖାନା, ପିନାରେ ମସଗୁଲ ହେବା ପାଇଁ ଲକ୍ଷଲକ୍ଷ ଟଙ୍କା ଖର୍ଚ୍ଚ କରିବେ ଏହା ଧାରଣା ବାହାରେ । ସେଇ ଅଧରାତିର ଦୃଶ୍ୟକୁ ଦେଖିଲେ ହିନ୍ଦୀ ସିନେମାର ପ୍ରଖ୍ୟାତ ଅଭିନେତା ଅମିତାଭ ବଚ୍ଚନଙ୍କ ଏକ ସଂଳାପ ମନେ ପଡ଼ିବ ହିଁ ପଡ଼ିବ । ତାହା ହେଲା- ଡୋଂଟ ଓରି... ବି ହାପି.. । ଲୋକେ ବାତ୍ୟାରେ ମରନ୍ତୁ, ବାସହରା ହୁଅନ୍ତୁ, ମରୁଡ଼ି ଯୋଗୁ ଖାଇବାକୁ ନପାଇ ଅନାହାରରେ ମରନ୍ତୁ ସେଥିରେ କାହାର ଯାଏ କେତେ ଆସେ କେତେ । ନିଜେ ବଂଚିଲେ ହିଁ ବାପର ନାଁ । ସବୁବେଳେ ହସଖୁସିରେ ମାତିଥାଅ ।

# ଜେବିଙ୍କ ଦିନ, ରାତି

**ଓ**ଡ଼ିଶା ରାଜନୀତିର ଚାଣକ୍ୟ ସାଜିଥିବା ଜାନକୀ ବଲ୍ଲଭ ପଟ୍ଟନାୟକ (ଜେବି)ଙ୍କ ପାଇଁ ଏବେ ଦିନ, ରାତି ଅଲଗା ହୋଇଯାଇଛି । ମାନେ ବାବୁ ଜାନକୀ ଦିନରେ ଗୋଟିଏ ସ୍ଥାନରେ ରହୁଛନ୍ତି ତ ରାତିରେ ଆଉ ଏକ ସ୍ଥାନରେ । ମାନେ ଦିନ କଟୁଛି ରାଜଧାନୀ ଭୁବନେଶ୍ୱରରେ ଏବଂ ରାତି କଟୁଛି ନିଜ ଗ୍ରାମ ରାମେଶ୍ୱରରେ । ବାବୁ ଜାନକୀ ଦିନ ଓ ରାତିରେ ଅଲଗା ଅଲଗା ସ୍ଥାନରେ ରହିବାର ମଧ୍ୟ ରହସ୍ୟ ଅଛି । ଜାନକୀ ଦିନରେ ରାଜନୀତି କରୁଛନ୍ତି ଆଉ ରାତିରେ ଫେରିଯାଉଛନ୍ତି ବହୁ ପୁରୁଣା ପେଶାକୁ ମାନେ ସାହିତ୍ୟକୁ । ଜେ.ବି. ବିଳମ୍ବିତ ରାତିରେ ରାମେଶ୍ୱରରେ ପହଂଚି ବିଶ୍ରାମ ନିଅନ୍ତି । ସକାଳୁ ଉଠି 'ଭାଗବତ' ଲେଖନ୍ତି । ମାତ୍ର ଦୁଇଜଣଙ୍କ ବ୍ୟତୀତ ତୃତୀୟଙ୍କର ସେଠାରେ ସ୍ଥାନ ନାହିଁ । ଜେ.ବି. ଡିକ୍ଟେସନ ଦିଅନ୍ତି ଆଉ ଭାଗବତ ଟିପନ୍ତି ଡକ୍ଟର ଗୋବିନ୍ଦ ଭୂୟାଁ । କୁଆଡ଼େ ଭୁବନେଶ୍ୱରରେ ରହିଲେ ସବୁବେଳେ ତାଙ୍କୁ ଚେଲା, ଚାମୁଣ୍ଡା ଘେରି ରହୁଥିବାରୁ ଭାଗବତ ଲେଖିବା ମୁସ୍କିଲ ହୋଇପଡ଼ିଲା । ଶେଷରେ ଜେ.ବି. ଭାଗବତ ଲେଖିବା ପାଇଁ ରାମେଶ୍ୱରକୁ ଆଶ୍ରା କରିଛନ୍ତି । କ୍ଷମତାରେ ନଥିବା ବେଳେ ଜେ.ବି. ଏହିପରି ଗ୍ରନ୍ଥ ରଚନା କରିବାର ଦୃଷ୍ଟାନ୍ତ ରହିଛି । ପୂର୍ବରୁ ରାମାୟଣ, ମହାଭାରତ ରଚନା କରିଥିବା ବେଳେ ଏବେ ଭାଗବତ ।

# ନଳିନୀଙ୍କ ଯୋଗ

**ବି**ଜୁ ପୁତ୍ର ନବୀନ ସରକାରରେ ଟାଣୁଆ ମନ୍ତ୍ରୀ ହେଲେ ନଳିନୀ ମହାନ୍ତି । ଏକରେ ତ ବିଜୁ ଜନତା ଦଳର ସେ ହେଉଛନ୍ତି କାର୍ଯ୍ୟକାରୀ ସଭାପତି ପୁଣି ହାତରେ ରହିଛି ପୂର୍ତ୍ତ, ଗୃହ ଏବଂ ସଂସଦୀୟ ବ୍ୟାପାର ବିଭାଗ । ମାନେ ସେ ଚାହିଁଲେ ସାରା ରାଜ୍ୟରେ ରାସ୍ତାଘାଟ, ବାସଗୃହ ନିର୍ମାଣ ହେବ । ସେ ନଚାହିଁଲେ ବିଧାନସଭା ଅଧିବେଶନ ବସିପାରିବ ନାହିଁ । ମନ୍ତ୍ରୀ ଦାୟିତ୍ୱ ନେବା ସମୟରେ ବାବୁ ନଳିନୀଙ୍କ ଏକ ଅଭ୍ୟାସ ଥିଲା- ସନ୍ଧ୍ୟା ହେବା ମାତ୍ରେ ସେ ଖେଦି ଯିବେ ଲନ୍‌ଟେନିସ୍ ପଡ଼ିଆକୁ । ବୁହେ ଟେନିସ୍ ଖେଳିବେ । ତା'ପରେ ଘରକୁ ଲେଉଟିବେ । ଏବେ କିନ୍ତୁ ନଳିନୀଙ୍କଠାରେ ଆଉ ଏକ ଅଭ୍ୟାସ ଦେଖିବାକୁ ମିଳିଛି । ତାହା ହେଲା 'ଯୋଗ' । ସକାଳୁ ନଳିନୀ ଯୋଗରେ ବସି ପଡୁଛନ୍ତି ସାଢ଼େ ଆଠଟା ପର୍ଯ୍ୟନ୍ତ । ତା'ପରେ ଗାଧୁଆ ପାଧୁଆ । ନଳିନୀ ଯୋଗ ଏବଂ ଟେନିସ୍ କାହିଁକି ଖେଳୁଛନ୍ତି ତା'ର ଉତ୍ତର ଖୋଜିବାକୁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ମାନେ ନଳିନୀଙ୍କୁ ଲୋକମାନେ ବସେଇ ଉଠେଇ ଦଉନାହାନ୍ତି । ସକାଳ ହେଲାମାତ୍ରେ ଲୋକ ଆସି ନଳିନୀଙ୍କ ଘରେ

ହାଜର । ପୁଣି ରାତି ଅଧ ପର୍ଯ୍ୟନ୍ତ ଅଧିଆ । ଲୋକଙ୍କୁ ଦେଖି ନଳିନୀଙ୍କ ଟେନ୍‌ସନ୍ ବଢ଼ିଯାଉଛି । ଟେନିସ୍ ନୁହେଁ ଯୋଗ କଲେ ଏହି ଟେନ୍‌ସନ୍‌ରୁ ମୁକ୍ତି ପାଇବେ ବୋଲି ଚିକିତ୍ସକ ପରାମର୍ଶ ଦେବା ପରେ ନଳିନୀଙ୍କୁ ଏବେ ଯୋଗ ନିଶା ଘାରିଛି ।

# କ୍ୟାପିଟାଲ ଷଣ୍ଢ

**ସ**ବୁ ଷଣ୍ଢ ପରି କ୍ୟାପିଟାଲ ଷଣ୍ଢ ନୁହନ୍ତି । କ୍ୟାପିଟାଲ ଷଣ୍ଢ ମାରଣା ନୁହନ୍ତି । ସେମାନେ କଥା କହିଲେ ବୁଝନ୍ତି । ମଣିଷର ସୁଖ, ଦୁଃଖ ସହ ସେମାନେ ମଧ୍ୟ ସାମିଲ ହୁଅନ୍ତି । ଏମିତି ଏକ ଉଦାହରଣ ଏଠାରେ ଦିଆଯିବାର ଆବଶ୍ୟକତା ରହିଛି । ସ୍ଥାନଟି ହେଲା ଶ୍ରୀୟା ଟକିଜ୍ ନିକଟସ୍ଥ ମାଳିସାହି ହାଟ । ସେଠାକୁ ଏକ ଷଣ୍ଢ ସବୁଦିନ ଆସେ । ହାଟରେ ବୁଲେ । କିନ୍ତୁ ପରିବାପତ୍ରରେ ମୁହଁ ମାରେନା । ପରିବା ଦୋକାନୀ ଷଣ୍ଢ ଉପରେ ଭାରି ଖୁସ୍ । ଷଣ୍ଢର ପ୍ରକୃତି ହେଉଛି ଜବରଦସ୍ତ ଖାଇଯିବା । କିନ୍ତୁ ଏହି ଷଣ୍ଢଟି ଭାରି ସ୍ୱାଭିମାନୀ । ଯଦି କିଏ ତା' ପାଟିକୁ ଦେଲା ତ ସିଏ ଖାଇଲା ନହେଲେ ଉପବାସ । ପରିବା ଦୋକାନୀମାନେ ଷଣ୍ଢର ପ୍ରକୃତି ଦେଖି ଆଶ୍ଚର୍ଯ୍ୟ । ସ୍ୱାଭିମାନୀ ଷଣ୍ଢ ଆସିଲା ମାତ୍ରେ ସମସ୍ତେ ତା' ପାଟିକୁ ବଢ଼ାଇ ଦିଅନ୍ତି ପନିପରିବା । କିଛିଦିନ ତଳେ ଷଣ୍ଢଟିର ଅକାଳ ମୃତ୍ୟୁ ହୋଇଗଲା । ଖବରଟି ପ୍ରଚାରିତ ହେବାମାତ୍ରେ ହାଟ ପରିବା ଦୋକାନୀଙ୍କ ମଧ୍ୟରେ ଖେଳିଗଲା ଶୋକର ଛାୟା । କାହା ଆଖିରୁ ଲୁହ ଗଡ଼ିଗଲା ତ କିଏ ଆହା ଚୁ, ଚୁ କଲା । ଷଣ୍ଢଟିକୁ ଫୁଲମାଳରେ ସଜାଇ ଦିଆଗଲା । ବିରାଟ ଶୋଭାଯାତ୍ରା ହେଲା । ବ୍ରାହ୍ମଣ ଆସିଲେ ଆଉ ଷଣ୍ଢର ମୁଣ୍ଡରେ ସିନ୍ଦୁର ବୋଳାଗଲା । ଗାତ ଖୋଳାଗଲା । ଷଣ୍ଢକୁ ମର୍ଯ୍ୟାଦାର ସହ ପୋତାଗଲା । ଯେତେ ହେଲେ କ୍ୟାପିଟାଲ ଷଣ୍ଢଟି ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଏଥର କିନ୍ତୁ ମନ୍ତ୍ରିମଣ୍ଡଳ ନିଶ୍ଚିତ ସଂପ୍ରସାରଣ ହେବ ।

ଦ୍ୱିତୀୟ ବ୍ୟକ୍ତି : କେମିତି ଜାଣିଲୁ ?

ପ୍ରଥମ ବ୍ୟକ୍ତି : ଦେଖୁନୁ, ବିଜେପି, ବିଜେଡି ଦଳର ସବୁ ବିଧାୟକ ଏବେ ମନ୍ତ୍ରୀ ହେବା ପାଇଁ ଗୋଡ଼ରେ ଅଳତା ଲଗେଇ ବସିଛନ୍ତି ?



ଦ୍ୱିତୀୟ ବ୍ୟକ୍ତି : କିନ୍ତୁ ମୁଖ୍ୟମନ୍ତ୍ରୀ ଚାହିଁଲେ ତ ?

ପ୍ରଥମ ବ୍ୟକ୍ତି : ଦଳର ସବୁ ବିଧାୟକ ଯଦି ମନ୍ତ୍ରୀ ହେବାକୁ ଚାହିଁବେ, ମୁଖ୍ୟମନ୍ତ୍ରୀ ଯିବେ କୁଆଡ଼େ ? ସେମାନଙ୍କୁ ନେଇ ତ ସେ ମୁଖ୍ୟମନ୍ତ୍ରୀ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ଜଗନ୍ନାଥ ବନାମ ଆଇ.ଏ.ଏସ୍.

**ଶ୍ରୀ**କ୍ଷେତ୍ର ପୁରୀରେ ଜଗନ୍ନାଥଙ୍କ ଦର୍ଶନ କରିବାର ସୁଯୋଗ ତ ଭକ୍ତଙ୍କୁ ମିଳିଥାଏ । ମାନେ ଭକ୍ତ ଚାହିଁଲେ ଜଗନ୍ନାଥଙ୍କ ଦର୍ଶନ ମିଳେ । ସେ ମନ୍ଦିରରେ ହେଉ କିମ୍ବା ସ୍ୱପ୍ନରେ ହେଉ । କିନ୍ତୁ କ୍ୟାପିଟାଲ ଭୁବନେଶ୍ୱରରେ ରହୁଥିବା ଆଇ.ଏ.ଏସ୍. ଅଫିସରଙ୍କ ଜଗନ୍ନାଥଙ୍କ ପ୍ରୀତି ଭକ୍ତମାନଙ୍କ ଠାରୁ ସମ୍ପୂର୍ଣ୍ଣ ଭିନ୍ନ । ଜଗନ୍ନାଥ ମନ୍ଦିରକୁ ସେମାନେ ଭକ୍ତ ଭାବେ ଯାଆନ୍ତି ନି । ଯାଆନ୍ତି ଆଇ.ଏ.ଏସ୍. ଅଫିସର ଭାବେ । ପୁଣି ସମସ୍ତ କ୍ଷମତାକୁ ସାଙ୍ଗରେ ଧରି । ସେମାନେ ଜଗନ୍ନାଥ ଦର୍ଶନ କରିବାକୁ ଚାହିଁଲେ ସେଥିପାଇଁ ଏକ ଆଗୁଆ କାର୍ଯ୍ୟକ୍ରମ ପ୍ରସ୍ତୁତ ହୁଏ । ପୁରୀରେ ଥିବା ସଂପୃକ୍ତ ବିଭାଗର ଅଧିକାରୀମାନଙ୍କୁ ତାଙ୍କର ଜଗନ୍ନାଥ ଦର୍ଶନ ସମ୍ପର୍କରେ ଆଗୁଆ ଖବର ଦିଆଯାଏ । ମାନେ ସେ ଜଗନ୍ନାଥ ଦର୍ଶନ କରିବାକୁ ଯିବା ସମୟରେ ତାଙ୍କ ପାଇଁ ପ୍ରଶାସନ ପୁରା ଦମ୍‌ରେ ପ୍ରସ୍ତୁତ । ସେ ହିଁ ପାଲଟି ଯାଆନ୍ତି ବିଭାଗୀୟ ଅଧିକାରୀଙ୍କ ପାଇଁ ଜଗନ୍ନାଥ । ସେମାନଙ୍କୁ ଦର୍ଶନ କରିବାକୁ ବିଭାଗୀୟ ଅଧିକାରୀଙ୍କ ଧାଡ଼ି ଲାଗେ । ଦର୍ଶନ ସମୟରେ ଯଦି ତାଙ୍କ ହାତରୁ ଫୁଲଟିଏ ଖସିଗଲା ତେବେ ଫଳଟିଏ ଖସିଗଲା ବୋଲି କୁହାଯାଇ ତୁରନ୍ତ ତାହା ଯୋଗାଇ ଦିଆଯାଏ । ଜଣେ ବରିଷ୍ଠ ଆଇ.ଏ.ଏସ୍. ଜଗନ୍ନାଥଙ୍କ ଦର୍ଶନ କରିବାକୁ ଶ୍ରୀକ୍ଷେତ୍ର ଗଲେ । ଖବର ପାଇ ବିଭାଗୀୟ ଅଧିକାରୀମାନେ ତୁରନ୍ତ ସେଠାରେ ହାଜିରା ପକାଇଲେ । ଆଇ.ଏ.ଏସ୍. ବାବୁ ମନ୍ଦିରକୁ ଗଲେ ଆଉ ଜଗନ୍ନାଥ ଦର୍ଶନ କଲେ । ବାଇଶି ପାହାଚରେ ଓହ୍ଲାଉ ଓହ୍ଲାଉ କହିଲେ ତାଙ୍କ ହାତ ଘଂଟାଟି ମନ୍ଦିରରେ କେଉଁଠି ଖସିପଡ଼ିଲା । ଏଇ ଦେଖୁନ ହାତ ଖାଲି । ସଙ୍ଗେସଙ୍ଗେ ଅନେକ ବିଭାଗୀୟ ଅଧିକାରୀ ଦଉଡ଼ିଲେ ଘଂଟା ଦୋକାନକୁ । ଆଉ ଦାମୀ ଘଂଟାଟିଏ ଆଣି ବରିଷ୍ଠ ଆଇ.ଏ.ଏସ୍ ଅଫିସରଙ୍କ ହାତରେ ପିନ୍ଧାଇଦେଲେ । କିଛିଦିନ ପରେ ଏହି ଆଇ.ଏ.ଏସ୍. ବାବୁ ପୁଣି ଗଲେ ଜଗନ୍ନାଥ ଦର୍ଶନ କରିବାକୁ । ଏଥର କିନ୍ତୁ ବାବୁଙ୍କର ଘଂଟା ନୁହେଁ ଛତା ହଜିଗଲା । ଶ୍ରୀକ୍ଷେତ୍ରରେ ବିକ୍ରି ହେଉଥିବା ସବୁଠାରୁ ଦାମୀ ଛତା ଉପହାର ପାଇଲେ ଆଇ.ଏ.ଏସ୍. ବାବୁ । ଆଇ.ଏ.ଏସ୍.ଙ୍କ ଜଗନ୍ନାଥ ଦର୍ଶନର ଏହା ହେଉଛି ଭାତ ହାଣ୍ଡିରୁ ଗୋଟିଏ ପରି ।

# ମାଉସୀ

**କ**ଥାରେ ଅଛି ମା'ଠାରୁ ମାଉସୀ ଆହୁରି ନିଜର । କିନ୍ତୁ ଏହି ପ୍ରବାଦଟି ରାଜଧାନୀବାସୀଙ୍କ ପାଇଁ ସମ୍ପୂର୍ଣ୍ଣ ଓଲଟା ସାଜିଛି । ରାଜଧାନୀରେ ଯଦି କିଏ କାହାଘରକୁ ଯାଇ ମାଉସୀ ଡାକିଦିଏ ତେବେ ତତ୍‌କ୍ଷଣାତ୍ କବାଟ ବନ୍ଦ ହୋଇଯାଉଛି । ଏମିତି ଅନେକ ଘଟଣା

ଘଟିଲାଣି କ୍ୟାପିଟାଲରେ ।  ୯ ନମ୍ବରର ଘଟଣା । ମୁହଁ ସନ୍ଧ୍ୟା ହୋଇ ଆସୁଥାଏ । ଦୁଇଜଣ ଯୁବକ ଏକ କ୍ୱାର୍ଟରକୁ ଯାଇ ମାଉସୀ... ମାଉସୀ... ବୋଲି ଡାକିଲେ । ଘର ଭିତରେ ଥିବା ମହିଳା ଜଣଙ୍କ କବାଟ ଫିଟାଇବା ମାତ୍ରେ ସେମାନଙ୍କ ମଧ୍ୟରୁ ଜଣେ କହିବାକୁ ଲାଗିଲା- ମାଉସୀ, ଅଫିସରୁ ମଉସା ଆସିନାହାନ୍ତି କି । କଥା ପଦଟି ପାଟିରୁ ନସରୁଣୁ ଅନ୍ୟ ଯୁବକଟି ଚିଲ ଝାମ୍ପିଲା ପରି ମହିଳାଙ୍କ ବେକରେ ଥିବା ସୁନାହାରଟିକୁ ଝାମ୍ପି ନେଲା । ମହିଳାଙ୍କ ପାଟି ଖନି ମାରିଗଲା । ସେ 'ଥ' ହୋଇଗଲେ । ଚୋର, ଚୋର ବୋଲି ପାଟି କରିବା ବେଳକୁ ସୁନାହାର ଧରି ଦୁଇ ଯୁବକ ଚମ୍ପଟ ମାରିଥିଲେ । ଏଭଳି ଘଟଣା ରାଜଧାନୀର ବିଭିନ୍ନ ସ୍ଥାନରେ ଘଟୁଥିବାରୁ ଏବେ 'ମାଉସୀ' ଡାକ ଶୁଣିବା ମାତ୍ରେ ରାଜଧାନୀ ମହିଳାମାନେ ଘର ଭିତରକୁ ଦୌଡ଼ିଯାଇ କବାଟ କିଳି ଦେଉଥିବାର ଦେଖାଯାଉଛି ।

# ନବୀନଙ୍କ ଉତାପ

ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେବାର ଇତିମଧ୍ୟରେ ବର୍ଷେ ପୂରିବାକୁ ଯାଉଛି । ଏହି ବର୍ଷକ ମଧ୍ୟରେ ନବୀନ କେବେ ଅସୁସ୍ଥ ହୋଇଥିବାର ସାଧାରଣ ଲୋକ ଜାଣନ୍ତି ନାହିଁ । ମାନେ ନବୀନ ହେଉଛନ୍ତି ଜଣେ ଫିଟ୍‌ଫାଟ୍ ମୁଖ୍ୟମନ୍ତ୍ରୀ । ନବୀନ ଜିଲ୍ଲା ଗସ୍ତରେ ବାହାରିଲେ । ଆଉ ଥଣ୍ଡା, ଛିଙ୍କ ରୋଗରେ ଆକ୍ରାନ୍ତ ହେଲେ । ଏହି ରୋଗ କେବଳ ତାଙ୍କ ନିକଟରେ ସୀମିତ ରହିଲାନି । ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟକୁ ମଧ ଏହି ରୋଗ ତୀବ୍ର ବେଗରେ ବ୍ୟାପି ଯାଇଥିଲା । ପ୍ରାୟ ଚାରିଦିନ ନବୀନ ସଚିବାଳୟକୁ ଯିବା ବନ୍ଦ କରିଦେଇଥିଲେ । ଏହାର କିଛି ଦିନ ପରେ ନବୀନ 'ଜ୍ୱର'ରେ ଆକ୍ରାନ୍ତ ହେଲେ । ମୁଖ୍ୟମନ୍ତ୍ରୀ ଅସୁସ୍ଥ । ତାଙ୍କର ସବୁ କାର୍ଯ୍ୟକ୍ରମ ବାତିଲ କରାଗଲା ବୋଲି ଘୋଷଣା ହେଲା । ନବୀନ ନିବାସରେ ଶାସନ ଏବଂ ରାଜନୀତି ଠାରୁ ଦୂରରେ ରହି ନବୀନ ବିଶ୍ରାମ ନେବାକୁ ଚାହିଁଲେ । ଖବରଟି ବିଦ୍ୟୁତ୍ ବେଗରେ ପ୍ରଚାର ହୋଇଗଲା । ନବୀନ ନିବାସକୁ ଛୁଟିଲେ ମନ୍ତ୍ରୀ ଆଉ ନେତାମାନେ । ନବୀନ ବିଶ୍ରାମ କରିବେ କ'ଣ ମନ୍ତ୍ରୀ, ନେତାଙ୍କୁ ଦେଖା କରିବାକୁ ତର ସହିଲାନି । ପରଦିନର ଘଟଣା- ଦେହରେ ଉତାପ । ଡାକ୍ତର ପରୀକ୍ଷା କରି କହିଲେ- ଜ୍ୱର । ବିଶ୍ରାମ ନେବାକୁ ହେବ । କିନ୍ତୁ ନବୀନ ନିର୍ଦ୍ଦେଶ ଦେଲେ ସବୁ ପ୍ରୋଗ୍ରାମ ସେ ଆଟେଣ୍ଡ କରିବେ । ନବୀନଙ୍କ ନିଷ୍ପତି ମନ୍ତ୍ରୀ, ନେତା, କର୍ମୀଙ୍କୁ ତାଜୁବ କରିଥିଲା । ଅସୁସ୍ଥ ହେବା ପରେ ନବୀନଙ୍କୁ ବୋଧହୁଏ ଆଉ ଏକ ନୂତନ ଅଭିଜ୍ଞତା ମିଳିଲା । ଦେହରେ ଉତାପ ଥାଉ କି ଜ୍ୱର ହେଉଥାଉ ସେଥିରୁ କିନ୍ତୁ ନିସ୍ତାର ମିଳିବ  କିନ୍ତୁ ନେତାମାନଙ୍କ କବଳରୁ ନୁହେଁ ।

# ଅଗ୍ନି ଉତ୍ସବ

ମହାବାତ୍ୟା ପରେ ବୋଧହୁଏ ରାଜଧାନୀବାସୀ ଅଧିକ ଆସ୍ତିକବାଦୀ ହୋଇପଡ଼ିଛନ୍ତି । ଆଉ ଯାହା ହେଉନା କାହିଁକି ରାଜଧାନୀବାସୀଙ୍କୁ ଭଗବାନଙ୍କ ନାମ ଜପିବା ଏବଂ ପୂଜା, ପ୍ରାର୍ଥନା କରିବାର ରାହା ଯୋଗାଇ ଦେଲା ମହାବାତ୍ୟା । ଗାଁ ଗହଳିରେ ଅଗ୍ନି ଉତ୍ସବ ଲୋପ ପାଇବାକୁ ବସିଲାଣି କହିଲେ ଚଳେ ତେଣିକି ରାଜଧାନୀ କଥା ପଚାରେ କିଏ । ହଠାତ୍ ଦେଖାଗଲା ରାଜଧାନୀର କୋଣ ଅନୁକୋଣରେ ଅଗ୍ନି ଉତ୍ସବ ପାଳିତ ହେଉଛି । ମାନେ ନିଆଁ ଜଳିବ ଆଉ ବ୍ରାହ୍ମଣମାନେ ଅଗ୍ନିଦେବୀଙ୍କୁ ପୂଜା କରିବେ । ନିଆଁ ଭିତରକୁ ବିଭିନ୍ନ ପନିପରିବା, ଫଳ ଫୋପଡ଼ାଯିବ । ପୁଣି ନିଆଁରୁ ସେ ସବୁକୁ ଉଦ୍ଧାର କରିବା ପରେ ଭକ୍ଷଣ କରାଯିବ । ଏହା ହେଲେ ଅଗ୍ନିଦେବତା ଶାନ୍ତ ହେବେ । ଦୁର୍ବିପାକ କମିବ । ସେଦିନ ସନ୍ଧ୍ୟା ନଇଁ ଆସିବା ମାତ୍ରେ ରାଜଧାନୀର ବିଭିନ୍ନ ଅଂଚଳରେ ନଡ଼ା ଗଦା ହୋଇଗଲା ଏବଂ ଅଗ୍ନିଦେବତା ତା' ମଧ୍ୟରେ ପ୍ରବେଶ କଲେ । ଅଗ୍ନିଦେବତାଙ୍କ ଆଲୋକରେ ରାଜଧାନୀ ପ୍ରଜ୍ଜ୍ୱଳିତ ହୋଇଉଠିଲା ।

## ଧେଡ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଓଡ଼ିଶାର ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ହେଉଛନ୍ତି ଦେଶର ସବୁଠାରୁ ଶ୍ରେଷ୍ଠ ମୁଖ୍ୟମନ୍ତ୍ରୀ ।

ଦ୍ୱିତୀୟ ବ୍ୟକ୍ତି : କେମିତି ଜାଣିଲୁ ?

ପ୍ରଥମ ବ୍ୟକ୍ତି : ଅର୍ଥମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକଙ୍କ ବକ୍ତବ୍ୟ ଶୁଣିନୁ ?

ଦ୍ୱିତୀୟ ବ୍ୟକ୍ତି : ଅଧଃସ୍ତନ କର୍ମଚାରୀ ଉପରିସ୍ଥ ଅଧିକାରୀଙ୍କୁ ପ୍ରଶଂସା କରିବା ପରି ମନ୍ତ୍ରୀ ଭାବେ ରାମକୃଷ୍ଣଙ୍କର ଏହା ହେଉଛି ଗୁଣଗାନ ।

ପ୍ରଥମ ବ୍ୟକ୍ତି : ଦେଶର ସବୁ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟକଳାପ ସହିତ ଅବଗତ ହେବାପରେ ନବୀନଙ୍କୁ ରାମକୃଷ୍ଣ ଏହି ସାର୍ଟିଫିକେଟ୍ ଦେଇଛନ୍ତି ।



ଦ୍ୱିତୀୟ ବ୍ୟକ୍ତି : ଧେଡ୍ ବାଜେକଥା ।

# ଚୁପ୍ ବିଧାନସଭା ଚାଲିଛି

ବିଧାନସଭା ଅଧିବେଶନ ଆସିଯିବା ମାତ୍ରେ ରାଜଧାନୀ ଭୁବନେଶ୍ୱର ଚଳଚଂଚଳ ହୋଇଉଠେ । ସରକାରୀ କର୍ମଚାରୀଙ୍କ ପାଟିରେ ଏହି ସମୟରେ କେବଳ ଗୋଟିଏ କଥା-

ତାହାହେଲା - ଚୁପ୍ ବିଧାନସଭା ଚାଲିଛି । ମାନେ କାହାରିକୁ କିଛି ତଥ୍ୟ ଦିଅନାହିଁ । କି ସରକାରଙ୍କ ଦୋଷ ଦୁର୍ବଳତା ପ୍ରକାଶ କରନାହିଁ । ଅର୍ଥାତ୍ ବିଧାନସଭା ଚାଲିଥିବା ସମୟତକ ରାଜ୍ୟବାସୀ ଜାଣିବେ ଯେ ସରକାର ଠିକ୍ ଚାଲିଛି ବୋଲି । ସରକାରଙ୍କ ଦୋଷ ଦୁର୍ବଳତା ବୋଲି କିଛି ନାହିଁ ଆଉ ସବୁଆଡ଼େ ସୁଶାସନ । ପୋଲିସବାଲାଏ ତ ଆଉ ପାଦେ ଆଗରେ । ଆଇନ ଶୃଙ୍ଖଳା ପରିସ୍ଥିତି ଚରମ ସୀମାରେ ପହଂଚିଯାଉ ପଛେ ସେମାନଙ୍କୁ ପଚାରିଲା ମାତ୍ରେ ଉତର ମିଳିବ- ପାଣିପାଗ ସମ୍ପୂର୍ଣ୍ଣ ଶୁଖିଲା । ଘଟଣା ନାହିଁ କି ଅଘଟଣ ନାହିଁ । ମାନେ ଚୋରି, ଡକାୟତି, ରାହାଜାନୀ, ଧର୍ଷଣ, ହତ୍ୟା, ସଂଘର୍ଷ ଯାହା ଘଟୁପଛେ ପୋଲିସ୍ ଖାତାରେ ତାହା ଉଠେ ନାହିଁ କି ଅନୁସନ୍ଧାନ ମଧ ହୁଏନାହିଁ । କାଦୁଅରେ ପଶିବ ନାହିଁ କି ଗୋଡ଼ ଧୋଇବ ନାହିଁ । ଘଟଣା ଲୋକଲୋଚନକୁ ଆସିଲେ ସିନା ବିଧାନସଭା ପଡ଼ିବ ଉଠିବ । ନହେଲେ ସବୁ ଶାନ୍ତ । ତେବେ ଏହାର ସୁଯୋଗ ଚୋର, ଡକାୟତ ଏବଂ ଅପରାଧୀମାନେ ନେଉଛନ୍ତି । ସେମାନେ ବିଧାନସଭା ଚାଲିବା ସମୟରେ ରାଜଧାନୀକୁ ଅପରାଧ ଘଟାଇବା ପାଇଁ ମୁଖ୍ୟସ୍ଥଳ ଭାବେ ବାଛି ନେଉଛନ୍ତି । ସତେ ଯେମିତି ଚୋର ପୋଲିସ୍ ରାଜଧାନୀରେ ଏକକାର ।

# ଅଭିନବ ଆନ୍ଦୋଳନ

**ଶି**କ୍ଷକମାନେ ନୂତନ ଢାଂଚାରେ ଆନ୍ଦୋଳନ କରୁଥିବାର ଦେଖାଯାଉଛି । ମାନେ ଆନ୍ଦୋଳନ ଅନ୍ୟ କୌଣସି ସମୟରେ ହେବନାହିଁ । କେବଳ ବିଧାନସଭା ଚାଲିବା ସମୟରେ ଆନ୍ଦୋଳନ ହେବ । ଆନ୍ଦୋଳନ ପୁଣି ଏଠି ସେଠି ନୁହେଁ ଖୋଦ୍ ବିଧାୟକଙ୍କ ଘର ସମ୍ମୁଖରେ । ବିଧାୟକଙ୍କ ଘରକୁ ଘେରାଉ କରିବେ ଶିକ୍ଷକ । ମାନେ ଯେତିକି ଶିକ୍ଷକ ଅଛନ୍ତି ସେମାନେ ବାଂଟି ହୋଇ ଚାଲିଯିବେ ବିଧାୟକଙ୍କ ଘରକୁ । ବିଧାନସଭାକୁ ଯିବା ପାଇଁ ଯେତେବେଳେ ବିଧାୟକମାନେ ଘରୁ ବାହାରିବେ ସେତେବେଳେ ସେମାନେ ତାଙ୍କୁ ଘେରାଉ କରିବେ । ସେମାନଙ୍କ ଦାବି ବିଧାନସଭାରେ ଉଠାଇବେ ବୋଲି ବିଧାୟକ ପ୍ରତିଶ୍ରୁତି ଦେଲେ ସେମାନେ ତାଙ୍କୁ ଘେରାଉରୁ ମୁକ୍ତ କରିବେ । ଶିକ୍ଷକମାନଙ୍କ ଘେରାଉରୁ ମୁକ୍ତି ପାଇବା ପରେ ବିଧାୟକମାନେ ବିଧାନସଭାରେ ବାଚସ୍ପତିଙ୍କୁ ମଧ ଛାଡ଼ୁନାହାନ୍ତି । ବିଧାନସଭାରେ ଶିକ୍ଷକମାନଙ୍କ ପ୍ରସଙ୍ଗ ଜଣେ ବିଧାୟକ ଉଠାଇବା ମାତ୍ରେ ଜଣକ ପରେ ଜଣେ ବିଧାୟକ ସେଥିରେ ସାମିଲ ହୋଇଯାଆନ୍ତି । ବିଧାୟକଙ୍କ ପ୍ରଶ୍ନବାଣରେ ବାଚସ୍ପତି ମଧ ଜର୍ଜରିତ ହୋଇପଡ଼ନ୍ତି । ଯାହା ହେଉ ପଛେ ଶିକ୍ଷକମାନଙ୍କୁ ଏହି ବୁଦ୍ଧି ଦେଇଥିବା ବ୍ୟକ୍ତି ଶହେ ସଲାମ ପାଇବା ଉଚିତ୍ ।

# ସବୁଦିନିଆ ବିଧାନସଭା

**ବ**ର୍ଷକ ବାରମାସ ଅର୍ଥାତ୍ ୩୬୫ ଦିନ ବିଧାନସଭା ଅଧିବେଶନ ଚାଲିବା ପାଇଁ ଗୋଟିଏ ମହଲ ଦାବି କରିଛନ୍ତି । ଦାବି କରିଥିବା ମହଲଟି ଯେ କିଏ ହୋଇଥିବ ତାହା ବେଶ୍ ଅନୁମେୟ । ଅର୍ଥାତ୍ ଏହି ଅଧିବେଶନ ଚାଲିଲେ ଯେଉଁମାନେ ବେଶ୍ ଦୁଇ ପଇସା ରୋଜଗାର କରନ୍ତି ମାନେ ବରା, ପିଆଜିଠାରୁ ଆରମ୍ଭ କରି ଦହିବରା, ଭୁଗୁନି, ଚାଓମିନ୍, ରୋଲ ବିକୁଥିବା ଏପରିକି ରାସ୍ତା କଡ଼ରେ ଥିବା ଚାଳିଆ ହୋଟେଲର ମାଲିକମାନେ ଏହି ଦାବି କରିଛନ୍ତି । ବିଧାନସଭା ଅଧିବେଶନ ଆସିଗଲେ ରାଜ୍ୟର ବିଭିନ୍ନ ଆଡୁ ଲୋକଙ୍କର ସୁଅ ଛୁଟେ ରାଜଧାନୀକୁ । ଏହି ସମୟରେ ରାସ୍ତାକଡ଼ ଦୋକାନ ଓ ଠେଲାଗାଡ଼ିରେ ବିକ୍ରି ବଢ଼ିଯାଏ । ଆଉ ବିଧାନସଭା ଅଧିବେଶନ ଶେଷ ହୋଇଗଲେ ଏମାନଙ୍କ ବ୍ୟବସାୟ ମାନ୍ଦା ହୋଇଯାଏ । ଦେଖାଯାଉ ଭଗବାନ ଏମାନଙ୍କର ଡାକ କେବେ ଶୁଣୁଛନ୍ତି ।

# ବିଧାୟକଙ୍କ କ୍ରିକେଟ୍ ନିଶା

**ଦ୍ୱା**ଦଶ ବିଧାନସଭାକୁ ଅଧିକ ଯୁବନେତା ନିର୍ବାଚିତ ହୋଇଥିବାରୁ ବୋଧହୁଏ ସେଥିପାଇଁ ଅଧିକାଂଶଙ୍କର କ୍ରିକେଟ୍ ପ୍ରତି ଦୁର୍ବଳତା ରହିଛି । ବୟସ୍କ ବିଧାୟକ ତାଙ୍କ ସ୍କୁଲ ସମୟରେ ଫୁଟ୍‌ବଲ ବ୍ୟତୀତ ଅନ୍ୟ କେଉଁ ଖେଳ ସମ୍ପର୍କରେ ଜାଣି ନଥିଲେ । କିନ୍ତୁ ଯୁବ ବିଧାୟକମାନେ ଓଳିଆରୁ ପଡ଼ି ଗଜା ହେବା ପରି କ୍ରିକେଟ୍ ଖେଳ ନଖେଳନ୍ତୁ ପଛେ କିନ୍ତୁ କ୍ରିକେଟ୍ ନିଶାରେ ଉବୁଟୁବୁ ହେଉଛନ୍ତି । ଏହା ଜଣାପଡ଼ିଲା ଯେଉଁଦିନ ବିଧାୟକମାନେ ବିଧାନସଭା ଅଧିବେଶନକୁ ଦିନଟିଏ ବାତିଲ କରିବା ପାଇଁ ବାଚସ୍ପତିଙ୍କୁ ପ୍ରସ୍ତାବ ଦେଲେ । ବୁଝୁବୁଝୁ ଜଣାପଡ଼ିଲା ବିଧାୟକମାନେ ସେଦିନ ଭାରତ-ଜିମ୍ବାୱେ ମ୍ୟାଚ୍ ଦେଖିବାକୁ କଟକ ବାରବାଟୀ ଷ୍ଟାଡ଼ିୟମ ଯିବେ । ବିଧାନସଭାରେ ମରୁଡ଼ି, ଦୁର୍ନୀତି ଆଲୋଚନା ଅପେକ୍ଷା ବାରବାଟୀ ଷ୍ଟାଡ଼ିୟମରେ କ୍ରିକେଟ୍ ମ୍ୟାଚ୍ ଦେଖିଲେ ବରଂ ମନ ପୂର୍ତ୍ତି ହେବ । ବିଧାୟକଙ୍କ ଅନୁରୋଧ ରକ୍ଷାକରି ବାଚସ୍ପତି ମଧ୍ୟ ସେଦିନର ଅଧିବେଶନକୁ ବାତିଲ କରିଦେଲେ । ଯାହା ହେଲେ ବି କ୍ରିକେଟ୍ ନିଶାଟି ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଆଉ ମାସକ ପାଇଁ କେଉଁ ମନ୍ତ୍ରୀ କି ବିଧାୟକଙ୍କ ବିରୋଧରେ କିଛି କହିହେବ ନାହିଁ ।

ଦ୍ୱିତୀୟ ବ୍ୟକ୍ତି : କାହିଁକି ?

ପ୍ରଥମ ବ୍ୟକ୍ତି : ଜାଣିନୁ ଗୋଟିଏ ମାସ ପର୍ଯ୍ୟନ୍ତ ବିଧାନସଭା ଚାଲିବ ।

ଦ୍ୱିତୀୟ ବ୍ୟକ୍ତି : ସେଇଠୁ କ'ଣ ହେଲା ?

ପ୍ରଥମ ବ୍ୟକ୍ତି : ଏହି ସମୟରେ ବିଧାୟକଙ୍କ ଅଖଣ୍ଡ କ୍ଷମତା ।



ଦ୍ୱିତୀୟ ବ୍ୟକ୍ତି : ମାନେ

ପ୍ରଥମ ବ୍ୟକ୍ତି : ଏହି ସମୟରେ ସେମାନେ ଯେତେ ବେଆଇନ କାମ କଲେ ମଧ୍ୟ ପୋଲିସ୍ ତାଙ୍କୁ ଗିରଫ କରିପାରିବନି । ଯଦି କିଏ ତାଙ୍କ ବିରୋଧରେ ପାଟି ଫିଟାଇଲା ତେବେ ବିଧାନସଭାରେ ସ୍ୱାଧିକାର ଭଙ୍ଗ ନୋଟିସ୍ ଆସିବ । କାହିଁକି କିଏ ବିଧାନସଭାର କାଠଗଡ଼ାକୁ ଯିବ ଭଲା...

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ଅଫିମ ନିଶା

**କ**ଥାରେ ଅଛି ଯିଏ ଥରେ ଅଫିମ ଚାଖିଲା ତାକୁ ସବୁବେଳେ ଅଫିମ ନିଶା ଘାରିବ । ଏଭଳି ଏକ ପ୍ରସଙ୍ଗ ମୁଖ୍ୟମନ୍ତ୍ରୀଙ୍କ ଅଭିଯୋଗ ଦପ୍ତରକୁ ଆସିଛି । ଲୋକଟିର ଘର ହେଉଛି ବଡ଼ମ୍ବା-ନରସିଂହପୁର ଅଂଚଳରେ । ଅଫିମ ଅଭାବରୁ ଏବେ ତାକୁ ମୃତ୍ୟୁ ଗ୍ରାସିବାକୁ ଯାଉଛି । ମୁଖ୍ୟମନ୍ତ୍ରୀ- ମହୋଦୟ ଜୀବନ ରକ୍ଷା କରନ୍ତୁ ବୋଲି ଦର୍ଶାଇ ଏକ ପତ୍ର ସଂପୃକ୍ତ ବ୍ୟକ୍ତି ଜଣକ ମୁଖ୍ୟମନ୍ତ୍ରୀଙ୍କୁ ଦେଲେ । ମୁଖ୍ୟମନ୍ତ୍ରୀଙ୍କ ଦପ୍ତର ତାହାକୁ ଅଭିଯୋଗ ପ୍ରକୋଷ୍ଠକୁ ପଠାଇଦେଲେ । ଅଭିଯୋଗ ପ୍ରକୋଷ୍ଠ ତାହା ଉପରେ 'ଖ' ଶ୍ରେଣୀ ଷ୍ଟାମ୍ପ ମାରିଲେ । ମାନେ ଏକମାସ ମଧ୍ୟରେ ଅବକାରୀ ବିଭାଗ ତାହା ଉପରେ ପଦକ୍ଷେପ ନେବ । ଅବକାରୀ ବିଭାଗକୁ ବୁଦ୍ଧି ଦିଶିଲା ନାହିଁ । ଜଣଙ୍କୁ ଅଫିମ ଦେବା ପାଇଁ ବିଭାଗ ପତ୍ର ଲେଖିପାରିବ କି ନାହିଁ ସେ ସମ୍ପର୍କରେ ଆଇନକାନୁନ୍ ଖୋଜାଗଲା । ବିହାର-ଓଡ଼ିଶା ଅବକାରୀ ଆଇନ ବହିର ପୃଷ୍ଠା ପରେ ପୃଷ୍ଠା ଓଲଟାଗଲା । ଏମିତି ୨୯ ଦିନ ବିତିଗଲା । ଅବକାରୀ ବିଭାଗକୁ କିଛି ସୁରାକ୍ ମିଳିଲା ନାହିଁ । ୩୦ ଦିନରେ ଯଦି ସମସ୍ୟା ସମାଧାନ ହୋଇ ନଥିବ ତେବେ ମୁଣ୍ଡକାଟ୍ । ଆଉ କାଳ ବିଳମ୍ବ ନକରି କଟକ ଜିଲ୍ଲା ଅବକାରୀ ଅଧିକ୍ଷକଙ୍କୁ କୁହାଗଲା ସମସ୍ୟା ସମାଧାନ କର । ଅଧିକ୍ଷକ ମହାଶୟ ସେହିବ୍ୟକ୍ତିଙ୍କୁ କିଛି ଅଧିକ ପରିମାଣର ଅଫିମ ଯୋଗାଇ ଦିଆଯିବାର ବ୍ୟବସ୍ଥା କଲେ । ଏହାପରେ ପୁଣି ସେହି ନିବେଦନ ପତ୍ର । ଅଫିମ ଅଭାବରୁ ମୃତ୍ୟୁ ହେବାକୁ ଯାଉଛି । ଏଭଳି ସମସ୍ୟାର ସ୍ଥାୟୀ ସମାଧାନ ପାଇଁ ଯେତେ ଉଦ୍ୟମ ହେଲେ ମଧ୍ୟ ତା'ର ପନ୍ଥା ବାହାରି ପାରୁନାହିଁ । ଯାହା ହେଲେ ଅଫିମ ନିଶାଟି ।

# ନାଗ, ଢମଣା ଓ ଧୋତି

**ନା**ଗ ଆଉ ଢମଣା । ଏ ଦୁହିଁଙ୍କୁ ଏକତ୍ର ଖେଳୁଥିବାର ଦେଖିଲେ କୁଆଡ଼େ ଶୁଭ ବୋଲି କୁହାଯାଏ । କିନ୍ତୁ ରାଜଧାନୀ ଭୁବନେଶ୍ୱର ଯେଉଁଠି ଗାଡ଼ି ମୋଟର ପେପାଁ ଶବ୍ଦରେ କୋଳାହଳ ହୋଇ ଉଠେ ସେଠାରେ ନାଗ, ଢମଣା ଏକାଠି ହୋଇ ଖେଳିବା ଅସମ୍ଭବ । ସେଦିନ ଏଭଳି ଏକ ଅଭାବନୀୟ ଦୃଶ୍ୟ ଦେଖିବାକୁ ମିଳିଲା ୪ ନମ୍ବରରେ । କେମିତି କେଜାଣି ନାଗ, ଢମଣା ଏକାଠି ହୋଇ ରାସ୍ତା ନିକଟରେ ଥିବା ପଡ଼ିଆରେ ଖେଳିଲେ । କେହି ଜଣେ ଏହି ଦୃଶ୍ୟ ଦେଖିଦେଲେ । ଖବରଟି କ୍ୟାପିଟାଲ ସାରା ପ୍ରଚାରିତ ହୋଇଗଲା । ଚାହୁଁ ଚାହୁଁ ଶହ ଶହ ଲୋକ ସେଠାରେ ଜମିଗଲେ । କିଏ ନୂଆ ଧୋତି ବିଛାଇ ଦେଲାଣି ତ କିଏ ଶାଢ଼ୀ ଆଉ କିଏ ଗାମୁଛା । ନାଗ, ଢମଣା ଯେଉଁ ବସ୍ତ୍ର ଉପରେ ଖେଳିବେ ତାହା କୁଆଡ଼େ ଶୁଭ ବସ୍ତ୍ର ପାଲଟିଯିବ । ଯେତେ ଅସମ୍ଭବ ହେଉପଛେ ସେହି ବସ୍ତ୍ରକୁ ପିନ୍ଧି ସେହି କାମରେ ହାତ ଦେଲେ ତାହା ସୁରୁଖୁରୁରେ ହୋଇଯିବ । ଏମିତି ଦେଖୁ ଦେଖୁ ଏକ ଧୋତି ଉପରକୁ ନାଗ, ଢମଣା ମାଡ଼ି ଆସିଲେ । ତା'ପରେ ଦେଖଣାହାରୀଙ୍କ ମଧ୍ୟରେ ଲାଗିଲା ଠେଲାପେଲା । ସଙ୍ଗେସଙ୍ଗେ ନିଲାମ ଡକା ଚାଲିଲା । କିଏ କହିଲାଣି ଧୋତିକୁ ହଜାରେ ଟଙ୍କାରେ କିଣିବ ତ କିଏ କହିଲାଣି ୨ ହଜାର ଆଉ କିଏ ୧୦ ହଜାର ଟଙ୍କା ବଢ଼ାଇ ଦେଲାଣି । ଜଣେ କିଏ ବଡ଼ ପାଟିରେ କହୁଥାଏ ୫୦ ହଜାର ଟଙ୍କା ଦେବି ଧୋତିଟି ମୋତେ ଦିଅ । ଧୋତିଟି ଯିଏ ବିଛାଇଥିଲେ ସେ ନିକଟରେ ଥିବା ଏକ ଝୁମ୍ପୁଡ଼ି ଘରେ ରହନ୍ତି । ହଜାର ହଜାର ଟଙ୍କାର ପ୍ରଲୋଭନ କିନ୍ତୁ ତାକୁ ବଶୀଭୂତ କରିପାରି ନଥିଲା । ସେ କହୁଥିଲେ ଟଙ୍କା ତ ସମସ୍ତେ ରୋଜଗାର କରୁଛନ୍ତି । କିନ୍ତୁ କ୍ୟାପିଟାଲରେ ଶୁଭ ଧୋତି ପିନ୍ଧି ଖୁସିରେ ଜୀବନ କେତେଜଣ ବିତାଉଛନ୍ତି । ଛୁଆ, ପିଲାଙ୍କୁ ଧରି ସେ ଟିକିଏ ଖୁସିରେ ଜୀବନ ବିତାଇବାକୁ ଚାହୁଁଛନ୍ତି । ଯେଉଁ ଧୋତି ଉପରେ ନାଗ ଢମଣା ଖେଳିଥିଲେ ସେହି ଧୋତିଟିକୁ ସେ କାହାରିକୁ ଦେବେନାହିଁ ବୋଲି କହିଲେ । ଲୋକଟି ଧୋତିଟି ନିଜ ପାଖରେ ରଖିବା ପାଇଁ ସେଠାରେ ଜମା ହୋଇଥିବା ଲୋକମାନଙ୍କୁ ଯେପରି ହାତଯୋଡ଼ି ନିବେଦନ କରୁଥିଲା ସେହି ଦୃଶ୍ୟଟି ବେଶ୍ ହୃଦୟଙ୍ଗମ ହୋଇଥିଲା ।

# କୁବେରଙ୍କ କୋପ

**ଯୋ**ଗାଣ ବିଭାଗ ପ୍ରତି ଏବେ କୁବେରଙ୍କ କୋପ ଦୃଷ୍ଟି ପଡ଼ିଛି । ଏପ୍ରିଲ ।।ସ ଆରମ୍ଭ ହେଉହେଉ ହଠାତ୍ ଦେଖାଗଲା ଯୋଗାଣ ବିଭାଗର 'କାର୍' ଉପବାସରେ ଦିନ କାଟୁଛନ୍ତି । ବୁଝୁବୁଝୁ ଜଣାପଡ଼ିଲା- ପେଟ୍ରୋଲ ଟାଙ୍କି ପେଟ୍ରୋଲ ଦେଉନାହିଁ ଏବଂ ଯୋଗାଣ ବିଭାଗ

ମନ୍ତ୍ରୀଙ୍କ ଠାରୁ ଆରମ୍ଭ କରି ସଚିବ, ଅତିରିକ୍ତ ଶାସନ ସଚିବଙ୍କୁ ଯୋଗାଇ ଦିଆଯାଇଥିବା କାର୍‌ଗୁଡ଼ିକ ଆଉ ହାତେ ଗଡ଼ୁ ନାହାନ୍ତି । କେମିତି କେଜାଣି ଅର୍ଥ ବିଭାଗକୁ ଯାଇଥିବା ଫାଇଲ୍‌ଟି ମଞ୍ଜୁର ହେଲାନାହିଁ । ମାନେ ପ୍ରଭୁ କୁବେରଙ୍କର ଏହି ବିଭାଗ ପ୍ରତି ସନ୍ଦେହଜାତ ହେଲା । ବିଭାଗରେ ଥିବା ଡିଜେଲ ଗାଡ଼ିକୁ ଖାଇବାକୁ ଦିଆଗଲା କିନ୍ତୁ ପେଟ୍ରୋଲ ଗାଡ଼ି ଉପବାସ ।

# ତରଭୁଜ ପ୍ରୀତି

**ରା**ଜଧାନୀର ଉତାପ ଯେତେ ବଢ଼େ ତରଭୁଜ ବିକାଳୀଙ୍କ ମନ ସେତିକି ପ୍ରଫୁଲ୍ଲ ରହେ। ମାନେ ଗରମ ଯେତିକି ଅଧିକ ହେବ ତରଭୁଜ ବିକ୍ରି ସେତିକି ବଢ଼ି ଚାଲିବ । ଉତାପ ଅଧିକ ହେଲେ ରାସ୍ତାକଡ଼ରେ ଥିବା ତରଭୁଜ ବେପାରୀଙ୍କ ନିକଟରେ ଅସମ୍ଭବ ଭିଡ଼ ହୁଏ । ସତେ ଯେମିତି ତରଭୁଜ ଖାଇବା ପାଇଁ ଏକ ପ୍ରତିଯୋଗିତା ଚାଲେ । ଦୀପାବଳୀରେ ବାଣ, ନୂଆବର୍ଷରେ ଗ୍ରୀଟିଙ୍ଗସ୍ କାର୍ଡ଼ ଦୋକାନ ଯେମିତି ବଢ଼ିବାରେ ଲାଗିଛି ରାଜଧାନୀରେ ଏବେ ଖରାଦିନରେ ତରଭୁଜ ଦୋକାନ ମଧ୍ୟ ବୃଦ୍ଧି ପାଇ ଚାଲିଛି । ଆଉ କିଛି ହେଉ କି ନହେଉ ତରଭୁଜ ଖାଇ ରାଜଧାନୀବାସୀ ବେଶ୍ ସ୍ୱାସ୍ଥ୍ୟବାନ ହୋଇପଡ଼ିଲେଣି । ରାଜଧାନୀର ଉତାପ ନବଢ଼ିଥିଲେ କ'ଣ ରାଜଧାନୀ ବାସିନ୍ଦାଙ୍କ ସ୍ୱାସ୍ଥ୍ୟରେ ପରିବ ^ନ ଆସିଥା'ନ୍ତା ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ଏଥର ଆରମ୍ଭ ହୋଇଗଲା ସରକାରୀ ସଂସ୍ଥା ଓ ସରକାରୀ ବିଭାଗ ମଧ୍ୟରେ ଯୁଦ୍ଧ ।

ଦ୍ୱିତୀୟ ବ୍ୟକ୍ତି : କିଛି ବୁଝି ହେଲାନି ।

ପ୍ରଥମ ବ୍ୟକ୍ତି : ଏଇ ଅବକାରୀ ବିଭାଗ ଏବଂ ମଦ ନିଗମ ।

ଦ୍ୱିତୀୟ ବ୍ୟକ୍ତି : କ'ଣ ହେଲା ।

ପ୍ରଥମ ବ୍ୟକ୍ତି : ଦୁଇଟି ଯାକ ସରକାରୀ ସଂସ୍ଥା । କିନ୍ତୁ ଅବକାରୀ ବିଭାଗ ମଦ ନିଗମ ଡିପୋ ଉପରେ ଚଢ଼ାଉ କଲା ।

ଦ୍ୱିତୀୟ ବ୍ୟକ୍ତି : ଏଭଳି କାହିଁକି ହେଲା ?

ପ୍ରଥମ ବ୍ୟକ୍ତି : ସରକାରୀ ସଂସ୍ଥାର ରାଗ ସରକାରୀ ସଂସ୍ଥା ଉପରେ ନହୋଇ ଆଉ କ'ଣ ବେସରକାରୀ ସଂସ୍ଥା ଉପରେ ହେବ ?

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ରାମକୃଷ୍ଣ ଅବତାର

**ମା**ହଭାରତ ପ୍ରସଙ୍ଗ ଆସିଲେ କୃଷ୍ଣ ଅବତାର ସମ୍ପର୍କରେ ଜାଣିବାକୁ ହୁଏ । ସେହିପରି ନବୀନ ସରକାର ପ୍ରସଙ୍ଗ ଆସିଲେ ରାମକୃଷ୍ଣ ଅବତାର ଉପରେ ଜାଣିବାକୁ ପଡ଼ିବ । ମାନେ ରାମକୃଷ୍ଣଙ୍କ ହାତରେ ହିଁ ରାଜ୍ୟ ଭଣ୍ଡାର ଘରର ଚାବିକାଠି । ଆଉ ତାଙ୍କୁ ଛାଡ଼ି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଯିବେ କୁଆଡ଼େ । ସେଦିନ ପ୍ରଥମ ଅତିରିକ୍ତ ବଜେଟ୍ ବିଧାନସଭାରେ ଆଗତ କରିବା ପରେ ରାମକୃଷ୍ଣ ସାମ୍ବାଦିକ ସମ୍ମିଳନୀ ଡାକିଥା'ନ୍ତି । ସାମ୍ବାଦିକମାନେ ତାଙ୍କଠାରୁ ଉତ୍ତର ପାଇବା ପାଇଁ ବ୍ୟସ୍ତ । ରାମକୃଷ୍ଣ କହୁଥା'ନ୍ତି ସାମ୍ବାଦିକମାନଙ୍କୁ ଯଦି କିଏ ଅଧିକ ଚିହ୍ନିଥାଏ ତେବେ ସେ ହେଉଛି ଏଇ ଅଧମ । ସାମ୍ବାଦିକମାନେ ପଚାରିଲେ କେବେ ଦୁର୍ନୀତିର ଛାଇ ଆସିବ । ରାମକୃଷ୍ଣ ଉତ୍ତର ଦେଲେ- ସେ ଛାଇ ଏ ଆଡ଼କୁ ଆସିବ ନାହିଁ । ସେମିତି ଯଦି କିଛି ଅଭିଯୋଗ ଆସେ ତେବେ ତାକୁ କେହି ବିଶ୍ୱାସ କରିବେ ନାହିଁ । ସାମ୍ବାଦିକ ପ୍ରଶ୍ନ କଲେ- ଏହି ଜିତାପଟ କ'ଣ ଆପଣଙ୍କ ନିର୍ବାଚନମଣ୍ଡଳୀ କୋଦଳାବାସୀଙ୍କ ପାଇଁ । ରାମକୃଷ୍ଣ କହିଲେ- କୋଦଳା ତ ଘର କଥା ମୁଁ ଆଉ କୋଦଳାରେ ସୀମିତ ନୁହେଁ । ମୁଁ ଯାହା କହେ ଏବଂ କରେ ତାହା ରାଜ୍ୟପାଇଁ । ସାମ୍ବାଦିକମାନେ ନଛୋଡ଼ ବନ୍ଧା । ଯେତେବେଳେ ହେଲେ ଛାଇ ଆସିବ ବୋଲି କହିବାରୁ ରାମକୃଷ୍ଣ ଖୁବ୍ ଚତୁରତାର ସହିତ ଉତ୍ତର ଦେଲେ, ସେ ନିଜେ ସୂର୍ଯ୍ୟ ଆଉ ନିଜେ ମେଘ ତେଣୁ ଛାଇ ଆସିବାର ପ୍ରଶ୍ନ ଉଠୁନାହିଁ । ମାନିବାକୁ ପଡ଼ିବ ରାମକୃଷ୍ଣଙ୍କୁ । ଯାହା ହେଲେ ବି ରାମକୃଷ୍ଣ ଅବତାରଟି ।

# ରଜ ମଉଜ

**କ୍ୟା**ପିଟାଲ ଭୁବନେଶ୍ୱରଟା ହୋଇଯାଇଛି ଖାଲି ଖାଁ ଖାଁ । ମାନେ ଗଳି, କନ୍ଦି, କଲୋନୀରେ ଲୋକମାନେ ଦେଖାଯାଉ ନାହାନ୍ତି । ଜଣାପଡ଼ିଲା ଯେ ତିନିଦିନ ଛୁଟି ମିଳିବାରୁ କ୍ୟାପିଟାଲର ଅଧିକାଂଶ ସରକାରୀ କର୍ମଚାରୀମାନେ ରଜ ପାଳିବାକୁ ଗାଁକୁ ଯାଇଛନ୍ତି । ପୂର୍ବରୁ ରଜ ପର୍ବ କ୍ୟାପିଟାଲରେ ବେଶ୍ ଜାକଜକମରେ ପାଳିତ ହେଉଥିଲା । ମହାବାତ୍ୟା ପରେ କ୍ୟାପିଟାଲରେ ରଜ ଆଉ ପୂର୍ବପରି ଜମୁନାହିଁ । ଗଛ ତ ନାହିଁ ଦୋଳି ଖେଳ ହେବ କେମିତି । ଗାଁରେ ଗଛ ଅଛି ଆଉ ପିଠାପଣା ପରମ୍ପରା ମଧ ଅବ୍ୟାହତ ରହିଛି । ଦୋଳି ଖେଳ ସହିତ ପୋଡ଼ପିଠା ଖିଆ ଏବଂ ତାସ୍ ଖେଳ ଗାଁରେ ବେଶ୍ ଜମିଯିବ । ସରକାର ମଧ ରାଜଧାନୀବାସୀଙ୍କ ମନକୁ ଛୁଇଁବା ପରି ନିଷ୍ପତିଟିଏ ନେଇଗଲେ ।

ରବିବାରକୁ ମିଶାଇ ତିନିଦିନ ଛୁଟି । ଯାହାହେଲେ ବି କ୍ୟାପିଟାଲବାସୀଟି । ସେମାନେ ଯାହା ଚାହିଁବେ ସରକାର ତାହା କରିବେ ହିଁ କରିବେ ।

## ବିଚରା ଶରତ

**ତାଙ୍କ** ନାମ ହେଉଛି ଶରତ ପଟ୍ଟନାୟକ । ସଚିବାଳୟରେ ଏକ ଛୋଟ ଚାକିରି କରି ଗୁଜୁରାଣ ମେଂଟାଉଥିଲେ । କିନ୍ତୁ ସଉକ ତାଙ୍କର ଅଦ୍ଭୁତ । ଲକ୍ଷଲକ୍ଷ ସମ୍ବାଦପତ୍ର କଟିଂ କରି ସେ ସାଇତି ରଖିଛନ୍ତି । ଗଦା ହୋଇଗଲାଣି ପେପର କଟିଂ । ରଖିବାକୁ ସ୍ଥାନ ନାହିଁ । କିନ୍ତୁ ଶରତ ଏହି ସଉକରୁ ଓହରି ନାହାନ୍ତି । ତାଙ୍କର ନିଷ୍ଠାପର ଉଦ୍ୟମ ପାଇଁ ସେ ଆନ୍ତର୍ଜାତିକ ସ୍ତରରେ ସୁନାର ମେଡ଼ାଲ ବି ପାଇଲେଣି । କିନ୍ତୁ ଦୁର୍ଭାଗ୍ୟ ଯେ ତାଙ୍କର ଗୁଣକୁ ଓଡ଼ିଶା ସରକାର ଚିହ୍ନି ନାହାନ୍ତି । ଚାକିରିରୁ ଅବସର ଗ୍ରହଣ କରିବା ପରେ ତାଙ୍କୁ ମିଳିଥିବା ସରକାରୀ କ୍ୱାର୍ଟରରେ ପେପର କଟିଂ ରଖିବା ପାଇଁ ସରକାରଙ୍କୁ ନିବେଦନ କରିଥିଲେ ଶରତ । କିନ୍ତୁ ସରକାର କ'ଣ ବୁଝିଲେ କେଜାଣି କ୍ୱାର୍ଟର ଛାଡ଼ି ଦେବା ପାଇଁ ନିର୍ଦ୍ଦେଶ ଦେଲେ । ପୁଣି କ୍ୱାର୍ଟର ଜବରଦଖଲ କରିଥିବାରୁ ତାଙ୍କ ଉପରେ ୨୮ ହଜାର ଟଙ୍କା ଜୋରିମାନା ଦଣ୍ଡ । ଶରତ ବିଶ୍ୱସ୍ତରରେ ସିନା ଖ୍ୟାତି ଅର୍ଜନ କରିଛନ୍ତି କିନ୍ତୁ ରାଜ୍ୟ ସରକାରଙ୍କ ନିକଟରେ ଖ୍ୟାତି କେମିତି ପହଂଚିବ ସେ ରାସ୍ତା ତାଙ୍କୁ ମାଲୁମ୍ ନାହିଁ । ଯେଉଁଥିପାଇଁ ଜୋରିମାନା ଦେଇ କ୍ୱାର୍ଟର ଛାଡ଼ିଲେ । ବିଚରା ଶରତ ।

## ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : କଳିଯୁଗ ଶେଷ ହେବା ଉପରେ ।

ଦ୍ୱିତୀୟ ବ୍ୟକ୍ତି : କେମିତି ଜାଣିଲୁ ?

ପ୍ରଥମ ବ୍ୟକ୍ତି : ଏଇ ସ୍ନାନ ପୂର୍ଣ୍ଣିମା ଆସିଲା । ପ୍ରଭୁ ଜଗନ୍ନାଥ ସ୍ନାନ ମଣ୍ଡପକୁ ବିରାଜିଲେ । ଆଉ ପୁରୀରେ ବର୍ଷା ଏମିତି ହେଲା ଯେ ଶ୍ରୀମନ୍ଦିରଠାରୁ ଆରମ୍ଭ କରି ଗୁଣ୍ଡିଚା ମନ୍ଦିର ପର୍ଯ୍ୟନ୍ତ ଯାଇଥିବା ରାସ୍ତାରେ ଅଂଟାଏ ପାଣି ।



ଦ୍ୱିତୀୟ ବ୍ୟକ୍ତି : ସେଇଠୁ କ'ଣ ହେଲା ?

ପ୍ରଥମ ବ୍ୟକ୍ତି : ସତ୍ୟଯୁଗରେ ହିଁ ଏପରି ହେଉଥିଲା ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# ମନ୍ତ୍ରୀଙ୍କ ଦରମା ଚୋରି

କଡ଼ା ନିରାପତା ମଧରେ ସଚିବାଳୟରେ ସବୁ ଗେଟ୍‌ରେ ପୋଲିସ୍ । ମନ୍ତ୍ରୀ ଗଳିକୁ ଯିବାକୁ ହେଲେ ପୋଲିସ୍‌ର ଚେକିଂ ଦେଇ ଯିବାକୁ ହେବ । କିନ୍ତୁ ସେଦିନ ଯେଉଁ ଘଟଣାଟି ଘଟିଗଲା ତାହା ସଚିବାଳୟ ଇତିହାସରେ କେହି କେବେ ବି ଦେଖି ନଥିବେ । ନବୀନ ସରକାରରେ ସେ ହେଉଛନ୍ତି ସବୁଠାରୁ କାବୁଆ ମନ୍ତ୍ରୀ । ମାନେ ପାୱାରଫୁଲ୍ । ମନ୍ତ୍ରୀ ଯାଇଥିଲେ ମୁଖ୍ୟମନ୍ତ୍ରୀଙ୍କ ତୃତୀୟ ମହଲା କାର୍ଯ୍ୟାଳୟକୁ । ଅଧଘଂଟାକ ପରେ ନିଜ କାର୍ଯ୍ୟାଳୟକୁ ଫେରିଲେ । ପତ୍ନୀଙ୍କ ଫୋନ୍ ଆସିଲା ଶୀଘ୍ର ଆସ । ମନ୍ତ୍ରୀ ଦରମା ଟଙ୍କାକୁ ପକେଟ୍‌ରେ ରଖିବା ପାଇଁ ଟେବୁଲର ଡ୍ର ଖୋଲିଲେ । ମନ୍ତ୍ରୀ ଥ' ହୋଇଗଲେ । କିଛି ସମୟ ପରେ କଲିଂବେଲ୍ ବଜାଇ ପିଅନକୁ ଡାକିଲେ ଆଉ କହିଲେ ପିଇବାକୁ ପାଣି ଆଣେ । ସତେ ଯେମିତି ମନ୍ତ୍ରୀ ଶୋଷରେ ଆଉଟ ପାଉଟ । ପିଅନ ଗ୍ଲାସ୍‌ରେ ପାଣି ଆଣି ଦେଲା । ମନ୍ତ୍ରୀ ପଚାରିଲେ ଡ୍ର' କିଏ ଖୋଲିଥିଲା । ପିଅନର ଉତର ହେଲା- ଆପଣ ନାହାନ୍ତି ତ ପ୍ରକୋଷ୍ଠ ଭିତରକୁ କାହାରିକୁ ଛଡ଼ାଯାଇ ନାହିଁ । ମୁଁ ବି ଆସିନାହିଁ । ମନ୍ତ୍ରୀଙ୍କ ରାଗ ଚରମରେ ପହଂଚିଲା । ତାଙ୍କ ପାଟିରୁ ବାହାରିଲା- ଆବେ କେହି ତ ଆସି ନଥିଲେ ଦରମା ଟଙ୍କା ଗଲା କୁଆଡ଼େ । ପିଅନ ଜିଭ କାମୁଡ଼ି ପକାଇ ଦୁଇଥର ବସ୍ ଉଠ ହୋଇଗଲା । ମନ୍ତ୍ରୀଙ୍କ ଗୋଡ଼ ଧରି ପକାଇ କହିଲା- ସାର୍, ମୁଁ ସେଭଳି ଲୋକ ନୁହେଁ । ଆପଣ ପୋଲିସ୍‌ରେ ଖବର ଦେଇ ଦିଅନ୍ତୁ । ମନ୍ତ୍ରୀ ତାଙ୍କ ଦରମା ଚୋରି କଥା ପୋଲିସ୍ କିମ୍ବା କାହାରିକୁ ଜଣାଇଲେ ନାହିଁ । ଯାହାହେଲେ ବି ମନ୍ତ୍ରୀ । ପୁଣି ମୁଖ୍ୟମନ୍ତ୍ରୀ ନବୀନଙ୍କର ସେ ଖାସ୍ ମନ୍ତ୍ରୀ । ଦରମା ମାତ୍ର କେଇଟି ଟଙ୍କା କିନ୍ତୁ ଚଉକି ଥିଲେ କେତେ ହଜାର ହଜାର ଟଙ୍କା ପାଖରେ ଆସି ପହଂଚି ଯିବ । ଏହାକୁ ବୁଝାଇଦେଲେ ମନ୍ତ୍ରୀଙ୍କ କାନକୁହା ଲୋକ । ମନ୍ତ୍ରୀ ଖୁସ୍ । ତାଙ୍କ ଦରମା ଚୋରି କଥା ମଧ କାହାରି କାନକୁ ଗଲା ନାହିଁ । ସମସ୍ତେ ଜାଣିପାରିବେଣି ସେହି ମନ୍ତ୍ରୀ ଜଣଙ୍କ କିଏ ବୋଲି । ସେହି ମନ୍ତ୍ରୀ ଜଣଙ୍କ ହେଲେ ରାମକୃଷ୍ଣ ପଟ୍ଟନାୟକ ।

# ଜଳ ଅଛି ସମ୍ପଦ ନାହିଁ

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କ ମନ୍ତ୍ରିମଣ୍ଡଳର ପ୍ରଥମ ସଂପ୍ରସାରଣ କଲେ । ଏଥିରେ ଆଉ କିଏ ଖୁସ୍ ହୁଅନ୍ତୁ କି ନହୁଅନ୍ତୁ ମଙ୍ଗଳା କିଷାନ୍ କିନ୍ତୁ ଖୁସ୍ । ସତେଯେମିତି ସ୍ୱର୍ଗ ଖସି ଆସିଲା ପରି ତାଙ୍କ ପାଖକୁ ଜଳସମ୍ପଦ ବିଭାଗ ଚାଲି ଆସିଛି । ଏହି ବିଭାଗଟିକୁ ପାଇବା ପାଇଁ ସବୁ ମନ୍ତ୍ରୀ ଆଶାୟୀ ଥିଲେ । ଏମିତି ତ ଅନେକ ଠାକୁରଙ୍କ ପାଖରେ ଫୁଲଚନ୍ଦନ ଦେଇ ପୂଜା କରିଥିଲେ । କଂଗ୍ରେସ ସରକାରରେ ଏହି ବିଭାଗକୁ ନେଇ ବସନ୍ତ ବିଶ୍ୱାଳ

ବହୁ କ୍ଷମତାଶାଳୀ ହୋଇଥିଲେ । ଆଉ ନବୀନ ସରକାରରେ ଖୋଦ୍ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତ ଏହି ବିଭାଗଟିକୁ ନିଜ ହାତରେ ରଖିଥିଲେ । ଅତି ଆକସ୍ମିକ ଭାବେ ବିଭାଗଟି ମଙ୍ଗଳାଙ୍କ ନିକଟକୁ ଆସିଗଲା । ମଙ୍ଗଳା ଖୁସିରେ ଗଦଗଦ ହୋଇ କିଛିଦିନ କାମ କଲା ପରେ ଜାଣିଲେ ଯେ ସେ କେବଳ ଜଳସମ୍ପଦ ବିଭାଗର ଫାଇଲ କାମ କରିବେ । ଆଉ ନିଷତି ନେବେ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟ । ଏହାପରେ ମଙ୍ଗଳାଙ୍କୁ ଜଳସମ୍ପଦ ମନ୍ତ୍ରୀ ବୋଲି ଯେତେ ପ୍ରଶଂସା କରାଗଲେ ସେଥିରେ ସେ ଖୁସି ହୁଅନ୍ତି ନାହିଁ । ଓଲଟି କହନ୍ତି- ତାଙ୍କ ପାଖରେ ଜଳ ଅଛି କିନ୍ତୁ ସମ୍ପଦ ନାହିଁ । ସମ୍ପଦ ତୃତୀୟ ମହଲାରେ ।

## ନବୀନ, ଚକୋଲେଟ୍ ଓ ମହାରଥୀ

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ କିପରି ବଶ କରିବାକୁ ହୁଏ ସେ ଉପାୟ ବେଶ୍ ଭଲ ଭାବେ ପିପିଲି ବିଧାୟକ ପ୍ରଦୀପ ମହାରଥୀଙ୍କୁ ଜଣା । ପ୍ରଦୀପ ଜାଣନ୍ତି ନବୀନ ଜଣେ ଚକୋଲେଟ୍ ପ୍ରେମୀ । ସେଥିପାଇଁ ସେ ନିଜ ପକେଟ୍‌ରେ ଦୁଇପୁଂଜା ଚକୋଲେଟ୍ ଧରି ବୁଲୁଥା'ନ୍ତି । ଏଇ ଯେମିତି ସେଦିନ । ପ୍ରଦୀପଙ୍କୁ ଦେଖୁଦେଖୁ ନବୀନ କହି ପକାଇଲେ- ମହାରଥୀ ହୋୟାର ଇଜ୍ ମାଇଁ ଚକୋଲେଟ୍ । ସଙ୍ଗେସଙ୍ଗେ ମହାରଥୀ ପକେଟ୍‌ରୁ ଚକୋଲେଟ୍ ବାହାର କରି ଅତି ବିନମ୍ରତା ସହ ବଢ଼ାଇ ଦେଉଦେଉ କହିଲେ- 'ଦିସ୍ ଇଜ୍ ଫର୍ ୟୋର ସାର୍' । ନବୀନ କହିଲେ- 'ନାଇସ୍ ମହାରଥୀ, ନାଇସ୍' । ସେଠି ଉପସ୍ଥିତ ଥିବା ଅନ୍ୟ ଦଳୀୟ ନେତାଙ୍କ ଆଖି ଏହି ଦୃଶ୍ୟକୁ ଦେଖି ଟେରା ହୋଇଯାଇଥିଲା ।

## ବିଜେପିର ଅନ୍ଦର ବାହାର୍

କେଜାଣି କାହିଁକି ବିଜେପି ନେତାଙ୍କର ପେଟରେ ଗୋଟିଏ କଥା ତ ମୁହଁରେ ଆଉ ଗୋଟିଏ କଥା । ମନ୍ତ୍ରୀ ଗୋଲକ ନାୟକଙ୍କ ଘରେ ଅନୁଷ୍ଠିତ ସଭାରେ ଜଣକ ପରେ ଜଣେ ବିଜେପି ବିଧାୟକ ଅଲମ୍ପିକ୍ସରେ ଦୌଡ଼ିଲା ଭଳି ନବୀନଙ୍କୁ ସମାଲୋଚନାରେ ପୋତି ଦେଇଗଲେ । ଜଣେ ଅଧେ ବିଧାୟକ ତ ଆଖି ତମ୍ ତମ୍ କରି ଏ ସରକାରରେ ରହି ହିନସ୍ତା ହେଲୁଣି ଆଉ ଅଧିକ ଦିନ ରହିଲେ ଆତ୍ମହତ୍ୟା କରିବାକୁ ପଡ଼ିବ ବୋଲି କହି ପକାଇଲେ । ମାତ୍ର ଦଳର ସଭାପତି ମନମୋହନ ନବୀନଙ୍କୁ ଭେଟିବା ପରେ କି କାନଫୁଙ୍କା ପାଇଲେ ଯେ ସମସ୍ତଙ୍କ ସାମନାରେ ସାମ୍ବାଦିକଙ୍କ ମୁଣ୍ଡ ଉପରେ ଦୋଷ ଲଦିଦେଲେ । ସେ କହିଲେ- ଆମ ଭିତରେ ଏମିତି ସମ୍ପର୍କ ଯେ ପାଣି ଗଳି ତଳେ ପଡୁନି । ଯେଉଁ ଫାଟ ଦେଖାଯାଉଛି ତାହା ଏହି ସାମ୍ବାଦିକଙ୍କ କାରସାଦି । ଏଇ କଥା ପଦକ ମନମୋହନଙ୍କ ମୁହଁରୁ ନା ପେଟରୁ ବାହାରିଲା ତାହା ଜଣାପଡୁନାହିଁ ।

# ବିଶ୍ୱଭୂଷଣଙ୍କ ଲେମ୍ବୁ ସରବତ୍

**ମ**ନ୍ତ୍ରୀଙ୍କ ଘରକୁ ଗଲେ ସାଧାରଣତଃ ଏକ ଧାରଣା ଅଛି ଯେ କିଛି ମିଳେନାହିଁ ବୋଲି। ଯେଉଁଠି ମିଳେ ତାହା ପୁଣି ଅତି ବେଶିରେ ଚା' କିମ୍ବା କଫି । ମାତ୍ର ବିଶ୍ୱଭୂଷଣଙ୍କ କଥାଟା ନିଆରା । ରାଜ୍ୟ ରାଜସ୍ୱର ମାଲିକ ସିଏ । ମାନେ ରାଜସ୍ୱ ମନ୍ତ୍ରୀ । ତାଙ୍କ ଘରକୁ ଗଲେ ମିଳେ ଲେମ୍ବୁ ସରବତ୍ । ଖାଂଟି ୧୦୦ ପ୍ରତିଶତ ସ୍ୱଦେଶୀ । ନିନ୍ଦୁକମାନେ କହନ୍ତି- ବିଶ୍ୱଭୂଷଣ ଜଣେ ଖାଂଟି ସ୍ୱଦେଶୀ ନେତା । ସେଥିପାଇଁ ଚା' ବା କଫିରେ ଆଦୌ ବିଶ୍ୱାସ କରନ୍ତି ନାହିଁ । ତେବେ ବିଶ୍ୱଭୂଷଣଙ୍କ ଏହି ଲେମ୍ବୁ ସରବତର ପ୍ରଭାବ ଅନ୍ୟମନ୍ତ୍ରୀଙ୍କ ଉପରେ ପଡୁଛି କି ନାହିଁ ତାହା ଦେଖିବାକୁ ବାକି ରହିଛି ।

# ମାତାଜୀ ଜିନ୍ଦାବାଦ୍

**ବା**ବାଜୀଙ୍କ ଯୁଗ ଶେଷ । ମାତାଜୀଙ୍କ ଯୁଗ ଆରମ୍ଭ । ରାଜଧାନୀରେ ଯୁଆଡ଼େ ଦେଖ ଏହି ମାତାଜୀମାନଙ୍କର ଆବିର୍ଭାବ ଘଟିଲାଣି । ମାତାଜୀମାନେ ବିଭିନ୍ନ ସ୍ଥାନରେ ମାନେ ଫ୍ଲାଟ୍‌ରେ, କ୍ୱାର୍ଟରରେ ଏପରିକି ଆଶ୍ରମରେ ଆଡ୍ଡା ଜମେଇ ରହିଲେଣି । ସେମାନଙ୍କର ଭକ୍ତ ସଂଖ୍ୟା ବି କିଛି କମ୍ ନୁହେଁ । କାହାର ଚାକିରି ଦରକାର ତ ପୁଣି କାହାର ଝିଅ ବାହାଘର ଆଉ କିଏ ପୁଣି ରୋଗରୁ ମୁକ୍ତି । ଏମିତି ଅନେକ । ତେବେ ଅସଲ କଥାଟି ହେଲା ବାବାମାନଙ୍କ ପାଖରେ ଯେମିତି ମହିଳା ଭକ୍ତଙ୍କ ସଂଖ୍ୟା ଅଧିକ ହେଉଥିଲା ଏବେ ମାତାଙ୍କ ପାଖରେ ସେମିତି ପୁରୁଷ ଲୋକଙ୍କ ସଂଖ୍ୟା ଅଧିକ ହେଉଥିବା ଦେଖାଯାଉଛି । ସେଥିମଧ୍ୟରୁ ବେଶି ଭାଗ ହେଉଛନ୍ତି ଅବସରପ୍ରାପ୍ତ ପୋଲିସ୍ କର୍ମଚାରୀ । ଅବସର ଗ୍ରହଣ କଲାପରେ ପୋଲିସ୍‌ମାନେ କାହିଁକି ଯେ ଏତେ ଧର୍ମବିଶ୍ୱାସୀ ହୋଇପଡୁଛନ୍ତି ଆଉ ତାହା ପୁଣି ମାତାଜୀଙ୍କ ପାଖରେ ଏହି କଥାଟି କାହା ମୁଣ୍ଡକୁ ଜୁଟିବନାହିଁ ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ନନ୍ଦନକାନନ ଭଳି ଚିଡ଼ିଆଖାନା ଥାଉଥାଉ ସରକାର ଆଉ ଏକ ଚିଡ଼ିଆଖାନା କଥା ଚିନ୍ତା କରୁଛନ୍ତି କାହିଁକି ?

ଦ୍ୱିତୀୟ ବ୍ୟକ୍ତି : ମଲା, ଏତିକି ଜାଣିପାରୁନୁ ? ଭୁବନେଶ୍ୱରିଆଙ୍କ ହାୱା ବାଜି ନନ୍ଦନକାନନର ଜନ୍ତୁ, ଜାନୱାରମାନେ ବଡ଼ ପାଜି ହୋଇଗଲେଣି । କିଏ ଜନ୍ତା ଖୋଲି ବାହାରି ଆସିଲାଣି ତ ଆଉ କିଏ କାହାକୁ



ଭୋଜନ ବନାଇ ଦେଲାଣି । ତେଣୁ ଶାନ୍ତଶିଷ୍ଟ ଅଂଚଳରେ ସରକାର ଏକ ଚିଡ଼ିଆଖାନା ବନାଇଲେ ଆଉ ଜନ୍ତୁ ଜାନୱାରମାନେ ଟାଉଟର ହେବେନାହିଁ ।

ପ୍ରଥମ ବ୍ୟକ୍ତି : ଧେତ୍ ବାଜେକଥା ।

## ନବୀନ ଓଡ଼ିଆ ସମଝୁଛନ୍ତି

**ଆ**ଠମାସ ଭିତରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଥୋଡ଼ାଥୋଡ଼ା ଓଡ଼ିଆ ସମଝିଗଲେଣି । ଏଇ ସେଦିନର କଥା । ସଚିବାଳୟରେ ମୁଖ୍ୟମନ୍ତ୍ରୀଙ୍କ ସାମନାରେ ବସିଥିଲେ ଦୁଇଜଣ ବରିଷ୍ଠ ମନ୍ତ୍ରୀ । ମୁଖ୍ୟମନ୍ତ୍ରୀ ଫାଇଲ୍ ଦେଖୁଥା'ନ୍ତି । ଆଉ ମନ୍ତ୍ରୀ ଦୁଇଜଣ ରାଜ୍ୟ ପରିସ୍ଥିତି ସମ୍ପର୍କରେ ଆଲୋଚନା କରୁଥା'ନ୍ତି । କଥାବାର୍ତ୍ତା ଚାଲିଥିଲା ହିନ୍ଦୀ ଆଉ ଇଂରାଜୀରେ । ଜଣେ ମନ୍ତ୍ରୀ ଅଫିସର ବଦଳି ବାବଦରେ ଗୋଟିଏ ପ୍ରସ୍ତାବ ମୁଖ୍ୟମନ୍ତ୍ରୀଙ୍କ ଆଗରେ ରଖିଲେ । ମୁଖ୍ୟମନ୍ତ୍ରୀ ଦାରୁଭୂତ ମୁରାରି ପରି ବସିଥା'ନ୍ତି । ଏଇ ସମୟରେ ଦୁଇ ମନ୍ତ୍ରୀ ହିନ୍ଦୀ ଆଉ ଇଂରାଜୀ ଛାଡ଼ି ଓଡ଼ିଆରେ ନିଜନିଜ ଭିତରେ କଥାବାର୍ତ୍ତା ହେଲେ । ସେମାନଙ୍କ କଥାବାର୍ତ୍ତାର ସାରମର୍ମ ହେଲା- ବୁଡ଼ିବା ବେଳ ଆସିଗଲାଣି । ଇଏ ତ କିଛି ବୁଝୁନାହାନ୍ତି । ଆମେ ସବୁ ଡୁବିବା । ୟାଙ୍କୁ ଆଉ କେତେଦିନ ଟେକି ଧରିବା । ହଠାତ୍ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଖଣ୍ଟି ଓଡ଼ିଆରେ କହି ପକାଇଲେ- କେହି ଡୁବିବେ ନାହିଁ, ସବୁ ଚାଲିବ । ଏଇ କଥା ପଦକରେ ମନ୍ତ୍ରୀ ଦୁଇଜଣଙ୍କର ପାଟି ଚୁପ୍ ହୋଇଗଲା ।

## ବିଜୟଙ୍କୁ ଫୁଲମାଳ ଭାରି

**ସା**ଧାରଣତଃ ନେତାମାନଙ୍କର ଜନତା ଓ ଫୁଲମାଳ ପ୍ରତି ଦୁର୍ବଳତା ରହିଥାଏ । ଲୋକ ନଥିଲେ ନେତା ଭଲ ଭାଷଣ ଦେଇପାରନ୍ତି ନାହିଁ । ସେହିପରି ଫୁଲମାଳ ବେକରେ ନପଡ଼ିଲେ ନେତାଙ୍କ ମନ ମଧ ଖୁସ୍ ହୁଏନାହିଁ । ନୂତନ ଭାବେ ଗଠିତ ଓଡ଼ିଶା ଗଣ ପରିଷଦର ପ୍ରଥମ ସଭାପତି ବିଜୟ ମହାପାତ୍ରଙ୍କ ଅବସ୍ଥା ସେଦିନ ନଦେଖିଲେ ବିଶ୍ୱାସ କରିହେବନି । ଯେତେବେଳେ ତାଙ୍କ ନେତୃତ୍ୱରେ ଗଣପରିଷଦ ଚାଲିବ ଏବଂ ସେ ଏହାର ସଭାପତି ବୋଲି ଘୋଷଣା ହେଲା ସେତେବେଳେ ତାଙ୍କର ସମର୍ଥକମାନେ ମଂଚ ଉପରକୁ ଆସି ତାଙ୍କ ମୁଣ୍ଡରେ ମୁକୁଟ ପିନ୍ଧାଇବା ସହିତ ଗୋଟିଏ ପରେ ଗୋଟିଏ ଫୁଲମାଳ ବେକରେ ଗଳାଇବାକୁ ଲାଗିଲେ । ବିଜୟ ମୁକୁଟଟିକୁ ଭଲ ରୂପେ ପିନ୍ଧିନେଲେ । କିନ୍ତୁ ଫୁଲମାଳର ଭାର ସମ୍ଭାଳି ପାରିଲେ ନାହିଁ । ସେ ବାରମ୍ବାର କହି ଚାଲିଥା'ନ୍ତି ଆଉ ଫୁଲମାଳ ଦିଅନାହିଁ । ଏତେ ଭାରି ହେଲାଣି ଯେ ସମ୍ଭାଳି ପାରୁନାହାନ୍ତି । ବିଜୟଙ୍କ ପାଇଁ ଫୁଲ ଭାର ସମ୍ଭାଳିବା ଲାଗି ଟ୍ରେନିଂ ନେବା ଜରୁରୀ ।

# ବିଜେପି ମନ୍ତ୍ରୀଙ୍କୁ ପୀଡ଼ା

**କି** ବେଳରେ ନବୀନ ସରକାରରେ ବିଜେପି ବାଲାଏ ସାମିଲ ହେଲେ ଯେ, ବେଳ କିଛି ଭଲ ଯାଉନାହିଁ । ଶରୀର ପୀଡ଼ା, ମନ ପୀଡ଼ା ଓ ରାଜନୀତି ପୀଡ଼ାରେ ବିଜେପି ମନ୍ତ୍ରୀ ଏ ବେଶ୍ ଦହଗଂଜ ହୋଇଗଲେଣି । ଯୋଗାଣ ମନ୍ତ୍ରୀ ବେଦପ୍ରକାଶଙ୍କୁ ହାଇଦର ପୀଡ଼ା, ରାଜସ୍ୱ ମନ୍ତ୍ରୀ ବିଶ୍ୱଭୂଷଣଙ୍କୁ ମଗୁଡ଼ି ପୀଡ଼ା, ନଗର ଉନ୍ନୟନ ମନ୍ତ୍ରୀ ସମୀର ଦେ'ଙ୍କୁ ହୃଦୟ ପୀଡ଼ା, ଶ୍ରମମନ୍ତ୍ରୀ ବିଶ୍ୱାଧର କୁଅଁରଙ୍କୁ ଶାରୀରିକ ପୀଡ଼ା, ଶିକ୍ଷମନ୍ତ୍ରୀ କନକବର୍ଦ୍ଧନଙ୍କୁ ଅଲର୍ମିକ୍ ପୀଡ଼ା ଏବଂ ଯୋଜନା ଓ ସମନ୍ୱୟ ରାଷ୍ଟ୍ରମନ୍ତ୍ରୀ ଗୋଲକ ନାୟକଙ୍କୁ ରାମକୃଷ୍ଣ ପୀଡ଼ା ଘାରିଛି । ସମବାୟ ମନ୍ତ୍ରୀ ଅରବିନ୍ଦ ଢାଲି ଭଗବତ ପୀଡ଼ା ପାଇଁ ବହୁଦିନରୁ ଔଷଧ ଖାଉଛନ୍ତି । ବିଜେପି ମନ୍ତ୍ରୀମାନଙ୍କ ଏ ପୀଡ଼ାକୁ ଡାକ୍ତର ଫାକ୍ତରଙ୍କ ଔଷଧ କାଟୁ କରୁନାହିଁ । ଏଣୁ ଏମାନେ ସମସ୍ତେ ମେଳି ହୋଇ କୌଣସି ଗଣକଙ୍କୁ କୋଷ୍ଠି ଦେଖାଇବା ଉଚିତ୍ । ସାଙ୍ଗରେ ନବୀନଙ୍କ କୋଷ୍ଠି ମଧ୍ୟ ନେଇଯିବାକୁ ସେମାନେ ଯେପରି ନଭୁଲନ୍ତି ।

# ଧେତ୍ ବାଜେକଥା

ପ୍ରଥମ ବ୍ୟକ୍ତି : ବିଜୟ ତ ଓଡ଼ିଶା ଗଣପରିଷଦ ଭେଳିକି ଦେଖାଇଲେ । ଏବେ ନବୀନ କି ଭେଳିକି ଦେଖାଇବେ ?

ଦ୍ୱିତୀୟ ବ୍ୟକ୍ତି : ଭିଜିଲାନ୍ସ ଭେଳିକି ନହେଲେ ସମ୍ପ୍ରସାରଣ ଭେଳିକି ।

ପ୍ରଥମ ବ୍ୟକ୍ତି : ଭିଜିଲାନ୍ସ ଭେଳିକି ସେ ଦେଖାଇ ସାରିଛନ୍ତି ।

ଦ୍ୱିତୀୟ ବ୍ୟକ୍ତି : ତା' ହେଲେ ସମ୍ପ୍ରସାରଣ ହିଁ ଶେଷ ଭେଳିକି ।



ପ୍ରଥମ ବ୍ୟକ୍ତି : କିନ୍ତୁ ସଂପ୍ରସାରଣ ହେଲେ ଓଡ଼ିଶା ଗଣପରିଷଦ ବାଟ ବି ସମ୍ପ୍ରସାରିତ ହେବ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

# କୁକୁର ଲାଙ୍ଗୁଡ଼ ସିଧା

**କ**ଥାରେ ଅଛି ସୃଷ୍ଟିକର୍ତ୍ତା କୁକୁର ଲାଙ୍ଗୁଡ଼କୁ ୧୨ ବର୍ଷ ଧରି ବାଉଁଶ ନଳୀ ଭିତରେ ରଖିଥିଲେ ମଧ୍ୟ ତାହା ଯେଉଁ ବଙ୍କାକୁ ସେଇ ବଙ୍କାରେ ରହିଥିଲା । ଏହି ପ୍ରସଙ୍ଗଟି ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ନଜରକୁ ବୋଧହୁଏ ଆସିନାହିଁ । ନଚେତ୍ ମୁଖ୍ୟମନ୍ତ୍ରୀ ବଙ୍କା ଗଛକୁ

ସାଙ୍ଗେସାଙ୍ଗେ ସିଧା କରିବାକୁ ନିର୍ଦ୍ଦେଶ ଦେଇ ନଥା'ନ୍ତେ । ଏଭଳି ଘଟଣା ଅନ୍ୟ କେଉଁଠି ନୁହେଁ ଖୋଦ୍ ସଚିବାଳୟରେ ଘଟିଛି । ହଠାତ୍ ମୁଖ୍ୟମନ୍ତ୍ରୀ ସଚିବାଳୟ ଲନ୍‌ରେ ବୁଲୁଥିବାର ଦେଖାଗଲା । ତାଙ୍କ ପଛେପଛେ ଅଫିସରମାନେ । ମୁଖ୍ୟମନ୍ତ୍ରୀ କହିଲେ - ଗଛଗୁଡ଼ିକ କାହିଁକି ବଙ୍କା ହୋଇଯାଇଛି । ଅଫିସରମାନେ କହିଲେ - ଗଛ ସିଧା ଥିଲା । ମହାବାତ୍ୟା ସମୟରେ ବଙ୍କା ହୋଇଗଲା । ମୁଖ୍ୟମନ୍ତ୍ରୀ କହିଲେ ବଙ୍କା ଗଛକୁ ତୁରନ୍ତ ସିଧା କର । ଅଫିସରମାନେ କହିଲେ- ଆଜ୍ଞା । ସେଦିନ ମୁଖ୍ୟମନ୍ତ୍ରୀ ଲନ୍‌ରୁ ଫେରିଯିବା ପରେ ବଙ୍କା ଗଛକୁ ସିଧା କରିବା ଦାୟିତ୍ୱ ପଡ଼ିଲା ତଳିଆ କର୍ମଚାରୀଙ୍କ ଉପରେ । ମାଳିମାନଙ୍କୁ କୁହାଗଲା - ଯେମିତି ହେଉ ଆଉ ଯେତେ ପଇସା ଲାଗୁ ପଛେ ବଙ୍କା ଗଛକୁ ରାତାରାତି ସିଧା କରାଯିବା ଦରକାର । ଜନୈକ ମାଳି ପ୍ରସ୍ତାବ ଦେଲେ- ଗଛ ଯେଉଁଠାରୁ ବଙ୍କା ହୋଇଯାଇଛି ସେହିଠାରୁ ଗଛକୁ କାଟି ଦିଆଗଲେ ଆଉ ସମସ୍ୟା ରହିବ ନାହିଁ । ମାଳିଙ୍କର ଏହି ପ୍ରସ୍ତାବ ଅଫିସରମାନଙ୍କର ବେଶ୍ ପସନ୍ଦ ହେଲା । ବଙ୍କା ଗଛକୁ କଟାଯିବାର ଯୋଜନା କରାଗଲା ।

## ଜାତୀୟ ପତାକା

ଏ ଜାତୀୟ ପତାକା ହେଉଛି ଖୋଦ୍ ସଚିବାଳୟର ଆଉ ଏକ ଅଙ୍ଗ ବୋଲି ଧରାଯାଉଥିବା ରାଜୀବ ଭବନ ଉପରେ ଉଡୁଥିବା ଜାତୀୟ ପତାକା । କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟାଳୟ ଉପରେ ଜାତୀୟ ପତାକା ଉଡ଼ାଯିବା ପାଇଁ ଏକ ବିଧି ରହିଛି । ଏହି ବିଧି ଅନୁଯାୟୀ ସନ୍ଧ୍ୟା ହେଲେ ଜାତୀୟ ପତାକାକୁ ଅବନତ କରାଯିବ ଏବଂ ପତାକାଟି ଯେପରି ଅକ୍ଷତ ଅବସ୍ଥାରେ ରହିବ ସେଥିପ୍ରତି ଦୃଷ୍ଟି ଦିଆଯିବ । କିନ୍ତୁ ରାଜୀବ ଭବନ ଉପରେ ଯେଉଁ ଜାତୀୟ ପତାକାଟି ଉଡୁଛି ତାହାର ଅଧା ନାହିଁ । ଅର୍ଥାତ୍ ଏକ ଖଣ୍ଡିଆ ଚିରା ଜାତୀୟ ପତାକା ସେଠାରେ ସରକାରଙ୍କର ତଥା ରାଜୀବ ଭବନର ଓ ଦେଶର ଜୟଗାନ କରୁଛି । ଏଭଳି ଘଟଣା କିନ୍ତୁ ସରକାରଙ୍କ ଦୃଷ୍ଟିକୁ ଆସୁନାହିଁ । ଏଭଳି ବିକଳାଙ୍ଗ ଜାତୀୟ ପତାକା ସମ୍ପର୍କରେ ରାଜଧାନୀରେ ଚର୍ଚ୍ଚା ଚାଲିଥିଲାବେଳେ ସରକାରଙ୍କ କାନରେ କିପରି ସେହି ଚର୍ଚ୍ଚା ପଡୁନାହିଁ ତାହା ମଧ୍ୟ ଆଶ୍ଚର୍ଯ୍ୟଜନକ । ସତେ ଯେମିତି ସରକାର ଆଖି ଥାଇ ଅନ୍ଧ ଆଉ କାନ ଥାଇ କାଲା ।

## ଲୁଗା ପାଲଟା ମନ୍ତ୍ରୀ

ନବୀନ ସରକାରରେ ମନ୍ତ୍ରୀମାନଙ୍କର ବିଭିନ୍ନ ନାମ ରହିଛି । କେଉଁ ମନ୍ତ୍ରୀଙ୍କ ନାମ କୋପ ମନ୍ତ୍ରୀ ତ ଆଉ କେଉଁ ମନ୍ତ୍ରୀଙ୍କୁ ବକ୍କର ବୋଲି ସମ୍ବୋଧନ କରାଯାଉଛି । କାହା ନାମ ସ୍ଲୋ ଗୋ ମନ୍ତ୍ରୀ ତ ଆଉ କିଏ ସବ୍ କରେଗା ମନ୍ତ୍ରୀ । ଏଥିରେ ଆଉ ଏକ ନାମ ଯୋଡ଼ି

ହୋଇଗଲାଣି । ତାହା ହେଲା ଲୁଗା ପାଲଟା ମନ୍ତ୍ରୀ । ସେଦିନ ସିନେ କ୍ରିଟିକ ଆସୋସିଏସନର ଉତ୍ସବ ଚାଲିଥିବାବେଳେ ଖୁବ୍ ଜୋର୍‌ରେ ଅସରାଏ ମେଘ ବର୍ଷିଗଲା । ଷ୍ଟେଜ ଉପରେ ଥିବା ଅତିଥିମାନେ ବର୍ଷାରେ ଭିଜିଯିବାରୁ ନିଜ ନିଜ ଘରକୁ ବାହୁଡ଼ିଗଲେ । କିନ୍ତୁ ସେଠାରେ ରହିଯାଇଥିଲେ ଜଣେ ମନ୍ତ୍ରୀ । ଯିଏ କି ଅତୀତରେ ଓଡ଼ିଆ ସିନେମାର ନାୟକ ସାଜିଥିଲେ । ଏଇ ମନ୍ତ୍ରୀ ଜଣକ ହେଲେ ଉଚ୍ଚଶିକ୍ଷା ଦାୟିତ୍ୱରେ ଥିବା ପ୍ରଶାନ୍ତ ନନ୍ଦ । ସିଏ ମଧ ବର୍ଷାରୁ ରକ୍ଷା ପାଇ ନଥିଲେ । କିନ୍ତୁ ନିଶା ଥିଲା ମିଲେନିୟମ ପୁରସ୍କାରଟିକୁ ସେ ଯେମିତି ହେଲେ ଗ୍ରହଣ କରିବେ । ଏପଟେ ବର୍ଷାରେ ଭିଜିଯିବାରୁ ଦର୍ଶକମାନେ ମଧ ଭାଙ୍ଗିବାକୁ ଲାଗିଥା'ନ୍ତି । ପ୍ରଶାନ୍ତ କିନ୍ତୁ କାହାକୁ କିଛି ନଜଣାଇ ବିଜୁଳି ବେଗରେ ଘରକୁ ଚାଲିଗଲେ । ସଙ୍ଗେସଙ୍ଗେ ଓଦା ଡ୍ରେସକୁ ଫୋପାଡ଼ି ଦେଇ ଶୁଖିଲା ଡ୍ରେସ୍ ବଦଳାଇ ଚକ୍‌ଚକ୍ ହୋଇ ସଭା ମଂଚ ଉପରେ ହାଜର ହୋଇଯାଇଥିଲେ । ଘୋଷଣା ହେଲା ଉତ୍ସବ ଚାଲିବ । ଉଚ୍ଚଶିକ୍ଷା ମନ୍ତ୍ରୀ ପୁରସ୍କାର ଦେବେ । ବର୍ଷା ଯେତେ ଜୋର୍ ହେଉଥିଲେ ବି ପ୍ରଶାନ୍ତଙ୍କର ଆଉ ଡର ନଥିଲା । କିନ୍ତୁ ଭାଗ୍ୟ ଭଲ ତାଙ୍କୁ ଆଉ ଡ୍ରେସ୍ ପାଲଟିବାକୁ ପଡ଼ିଲାନି । କିନ୍ତୁ ନିନ୍ଦୁକମାନେ ସେତେବେଳକୁ ତାଙ୍କୁ ଲୁଗା ପାଲଟା ମନ୍ତ୍ରୀ ଭାବେ ଡାକିବା ଆରମ୍ଭ କରିଦେଇଥିଲେ ।

# ସାମ୍ବାଦିକ ଓ ଯାତରା ପାର୍ଟି

ମୁଖ୍ୟମନ୍ତ୍ରୀ ଏକ ଗୁରୁତ୍ୱପୂର୍ଣ୍ଣ ବୈଠକରେ ବସିଥା'ନ୍ତି । ହଠାତ୍ ଦେଖାଗଲା କରିଡ଼ରରେ ସରକାରୀ ଦଳର ମୁଖ୍ୟ ସଚେତକ ପ୍ରଦୀପ ମହାରଥୀ ଚଲାବୁଲା କରୁଛନ୍ତି । ଏକଥା କେତେକ ସାମ୍ବାଦିକଙ୍କ କାନକୁ ଗଲା । କାଳେ କିଛି ଖବର ମିଳିଯିବ ସେଇ ଆଶାରେ ସାମ୍ବାଦିକମାନେ ଦୌଡ଼ିଲେ ତିନିମହଲା ସ୍ଥିତ ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟକୁ । ସେତେବେଳକୁ ପ୍ରଦୀପ ମହାରଥୀ ମଧ ସେଠାରେ ଥା'ନ୍ତି । ସାମ୍ବାଦିକମାନେ ପ୍ରଦୀପ ମହାରଥୀଙ୍କୁ ଗୁଡ଼େଇତୁଡ଼େଇ ପଚାରିବାରେ ଲାଗିଲେ । ପ୍ରଦୀପ ମହାରଥୀ କିନ୍ତୁ ଗଭୀର ଜଳର ମାଛ । ଯେତେ ଜାଲ ପଡ଼ିଲେ ମଧ ସିଏ ଧରା ଦିଅନ୍ତି ନାହିଁ । ସାମ୍ବାଦିକମାନେ ଯେତେ ପଚାରୁଥା'ନ୍ତି ସେ ତା'ର ଉତର ଧାଡ଼ିକରେ ଶେଷ କରିଦେଉଥା'ନ୍ତି । ପ୍ରଦୀପ ମହାରଥୀଙ୍କୁ ସାମ୍ବାଦିକମାନେ ପ୍ରଶ୍ନବାଣରେ ଅସ୍ତବ୍ୟସ୍ତ କରିବାରୁ ସେ ଯେଉଁ ଉତର ଦେଲେ ତାହା ହେଲା- ଏତେଦିନ ପର୍ଯ୍ୟନ୍ତ ତାଙ୍କର ଧାରଣା ଥିଲା ଯେ, ସାମ୍ବାଦିକମାନଙ୍କ ପାଖରେ ସବୁ ଖବର ଥିବ ବୋଲି । ବିନା ଖବରରେ କିପରି ସାମ୍ବାଦିକ ହୋଇଛନ୍ତି ବୋଲି ସେ ପ୍ରଶ୍ନ କରିଥିଲେ । ଯଦି ଖବର ପାଇପାରୁନାହଁ ତେବେ ସାମ୍ବାଦିକତା ଛାଡ଼ି ତାଙ୍କ ଅପେରା ପାର୍ଟିକୁ ଆସିଲେ ସେ କାମ ଯୋଗାଇ ଦେବେ ବୋଲି କହିଥିଲେ । ପ୍ରଦୀପଙ୍କ ଏହି ବକ୍ତବ୍ୟ ଶୁଣିବା ପରେ ସାମ୍ବାଦିକମାନେ ତୁରନ୍ତ ସେହି ସ୍ଥାନ ଛାଡ଼ି ଚାଲି ଯାଇଥିଲେ ।

# ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ରାମକୃଷ୍ଣଙ୍କ ଉପରେ ସୋହେଲାରେ କାହିଁକି ଟେକାମାଡ଼ ହେଲା ?

ଦ୍ୱିତୀୟ ବ୍ୟକ୍ତି : ଆରେ ଫଳନ୍ତି ଗଛକୁ ଟେକା ପଡ଼େ । ରାମକୃଷ୍ଣ ଏ ମନ୍ତ୍ରିମଣ୍ଡଳର ଫଳନ୍ତି ଗଛ । ତେଣୁ ଟେକାମାଡ଼ ସିଏ ଖାଇବେ ନାହିଁ ତ କ'ଣ ପ୍ରସନ୍ନ ଓ ନବୀନ ଖାଇବେ ?

ପ୍ରଥମ ବ୍ୟକ୍ତି : ତା' ହେଲେ ?

ଦ୍ୱିତୀୟ ବ୍ୟକ୍ତି : ଆଗକୁ ରାମକୃଷ୍ଣ ଏମିତି ଟେକାମାଡ଼ ଖାଇ ଚାଲିଥିବେ ।

ପ୍ରଥମ ବ୍ୟକ୍ତି : ଧେତ୍ ବାଜେକଥା ।

# ସୌମ୍ୟଙ୍କ 'ସମୟ' ପ୍ରୀତି

**ଓ**ଡ଼ିଶାର ସବୁ ସମ୍ବାଦପତ୍ର ପାଠକ ପାଠିକା ଜାଣନ୍ତି ଯେ, 'ସମ୍ବାଦ'ର ସମ୍ପାଦକ ସୌମ୍ୟଙ୍କ ଛାଇ ପଡ଼ିଲେ 'ସମୟ'ର ନାହି ତିଏଁ ବୋଲି । ଆଉ 'ସମୟ'ର ଛାଇ ପଡ଼ିଲେ ସୌମ୍ୟ ଉଠନ୍ତି ଓ ପଡ଼ନ୍ତି । ମାତ୍ର ସେଦିନ ସମସ୍ତଙ୍କ ଆଖିକୁ ଟେରା କରିଦେଇ ସୌମ୍ୟରଞ୍ଜନ ପଟ୍ଟନାୟକ 'ସମୟ'ର ପ୍ରାଙ୍ଗଣରେ ଅନୁଷ୍ଠିତ ସ୍ୱନକ୍ଷତ୍ର ଉତ୍ସବରେ ଯୋଗ ଦେଲେ । ସେଇଠୁ ଆରମ୍ଭ ହେଲା 'ସମୟ-ସମ୍ବାଦ'ର ମିଳନ ଯୁଗ । ଯେଉଁ ଚର୍ଚ୍ଚା ଚାଲିଲା ତାହା ହେଲା- ସବୁ ସଂପାଦକମାନେ କାଗଜ ଦର କମାଇବା ପାଇଁ ଯେମିତି ହାତ ଧରାଧରି ହୋଇ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ପାଖକୁ ଯାଇଥିଲେ ଠିକ୍ ସେମିତି ଯେଉଁଠି ଯେଉଁ ଉତ୍ସବ ହେଉନା କାହିଁକି ସେଠାକୁ ସେମାନେ ହାତ ଧରାଧରି ହୋଇ ଯାଆନ୍ତୁ । ଏହା ହେଲେ ଯାଇ ଜଣାପଡ଼ିବ ଖବରକାଗଜ ମାଲିକ ତଥା ସଂପାଦକମାନଙ୍କର ମହନୀୟତା ।

# ପୂଜା ଚାନ୍ଦା

**ଘ**ରକୁ ଚାନ୍ଦା ମାଗିବାକୁ ଆସିଲେ ଜଣାପଡ଼ିଯାଏ ଆଗକୁ ପୂଜା ଆସୁଛି । ରାସ୍ତା ମଝିରେ ବାଉଁଶ ଧଡ଼ା ପଡ଼ିଲେ ବସ୍ ଡ୍ରାଇଭର ଜାଣିପାରେ ପୂଜା ଆସୁଛି ବୋଲି । ଘର ଆଗ ରାସ୍ତା ମଧ ଧୁମ୍‌ଧାମ୍ ସଫା ହେଉଥିଲେ ଜଣାପଡ଼ିଯାଏ ପୂଜା ଆସୁଛି । ରାଜଧାନୀର ଛକ ଜାଗାରେ ହଠାତ୍ ନୂଆ ନୂଆ ହୋର୍ଡ଼ିଂ ଲାଗିଗଲେ ଜଣାପଡ଼ିବ ଯେ ପୂଜା ଆସୁଛି । ପୂଜା ଆସିଲେ ଯେମିତି ଆନନ୍ଦ ଲୋକଙ୍କ ମନରେ ରହିବା କଥା ସେ ଆନନ୍ଦ ଚାନ୍ଦା ଯୋଗୁ ରହୁନାହିଁ । ଚାନ୍ଦାବାଲାଙ୍କର ଜୁଲୁମ୍ ବଢୁଛି । ସେମାନେ ସିଧାସଳଖ ଧମକ

ଦେଉଛନ୍ତି ଯେ ଚାନ୍ଦା ନଦେଲେ ଦେଖିଦେବେ ବୋଲି । ଏଣେ ପୁଲିସ୍ କହୁଛି- ଚାନ୍ଦା ଦିଅନାହିଁ ଆମେ ତମ ପଛରେ ଅଛୁ । ଆଇନର ହାତ ବଡ଼ ଲମ୍ବା । କିନ୍ତୁ ଚାନ୍ଦାବାଲା ବି କହୁଛନ୍ତି- ଆମକୁ ତ ପୁଣି ପୋଲିସକୁ ଚାନ୍ଦା ଦେବାକୁ ହେଉଛି । ତେଣୁ ଆମକୁ ତମେ ଚାନ୍ଦା ନଦେବ କେମିତି । ବିଚାରା ରାଜଧାନୀବାସୀ କାନମୁଣ୍ଡା ଆଉଁସି ଚାନ୍ଦାବାଲାଙ୍କ ହାତକୁ ଚାନ୍ଦା ବଢ଼ାଇ ଦେଉଛନ୍ତି । ସରକାର ଯଦି ଚାନ୍ଦା ଆଦାୟକୁ ଆଇନ୍ ସମ୍ମତ କରି ଦିଅନ୍ତେ ତେବେ ସବୁ ଝମେଲା ତୁଟିଯାଆନ୍ତା ।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ଡାଏରୀରେ କ'ଣ ଥାଏ ?

ଦ୍ୱିତୀୟ ବ୍ୟକ୍ତି : ନିଜ କଥା ନହେଲେ ପ୍ରେମ କଥା ।

ପ୍ରଥମ ବ୍ୟକ୍ତି : ହାଇଦର ଡାଏରୀରେ କ'ଣ ପ୍ରେମ କଥା ଅଛି ।

ଦ୍ୱିତୀୟ ବ୍ୟକ୍ତି : ପ୍ରେମ କଥା ନୁହେଁ ତ ଆଉ କ'ଣ । ହାଇଦର କ'ଣ କଲେଜ ଟୋକାଙ୍କ ପରି ଲୁଙ୍ଗୁଡ଼ା ପ୍ରେମ କରନ୍ତା । ଯେଉଁ ନେତାଙ୍କୁ ହାଇଦର ପ୍ରେମ କରେ ସେଇମାନଙ୍କ ନାମ ତ ଜପାମାଳି କରି ଡାଏରୀରେ ସଜାଇ ରଖିଛି ।

ପ୍ରଥମ ବ୍ୟକ୍ତି : ଧେତ୍ ବାଜେକଥା ।

## ନବୀନ ପଟ୍ଟନାୟକଙ୍କ 'ଡ୍ରିମ୍ ଟିମ୍'

**ନ**ବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ହେବାର ୭ ମାସ ହୋଇଗଲାଣି । କିନ୍ତୁ ଏହି ୭ ମାସ ମଧ୍ୟରୁ ୪ ମାସ ହେଲା ସତେ ଯେମିତି ସେ ଆଉଟୁପାଉଟୁ ହେଉଛନ୍ତି । ଏହା ଅନ୍ୟ କେଉଁ ସମସ୍ୟା ପାଇଁ ନୁହେଁ । କୁଆଡ଼େ ମନ୍ତ୍ରିମଣ୍ଡଳ ଅଦଳବଦଳ କଥା । ମନ୍ତ୍ରିମଣ୍ଡଳରେ କିଛି ନୂଆ ନେବେ ଆଉ କିଛି ପୁରୁଣାକୁ ବାଦ୍ ଦେବେ । ଯାହା ଜଣାପଡୁଛି ନବୀନ ରାଇଟ୍ ପର୍ସନକୁ ରାଇଟ୍ ପୋଜିସନ୍‌ରେ ରଖିନାହାନ୍ତି । ଟିମ୍ ଲିଡ଼ର ହିସାବରେ ନବୀନ ନିଜ ହାତରେ ସାହିତ୍ୟ ଓ ସଂସ୍କୃତି ବିଭାଗ ରଖିବା ଉଚିତ୍ । ଏହା ହେଲେ ସେ ସାହିତ୍ୟ ଓ ସଂସ୍କୃତି ସାଧନା କରିବା ପାଇଁ ଫୁଲ୍ ଟାଇମ୍ ପାଇପାରିବେ । ବହି ଲେଖିବେ, ଅନୁବାଦ କରିବେ । ଓଡ଼ିଶାକୁ ଅଣଓଡ଼ିଆଙ୍କ ପାଖରେ ପରିଚିତ କରାଇବେ । ଏଥିରେ ଓଡ଼ିଆ ମାଆର ଲାଭ ହିଁ ଲାଭ । ନୟାଗଡ଼ ଓ ଆଠଗଡ଼ ଆଇନ୍‌ଶୃଙ୍ଖଳାରେ ଏବେ ଟପ୍ ପୋଜିସନ୍‌ରେ ଅଛି । ସୁତରାଂ ନୟାଗଡ଼ ବିଧାୟକ ଭାଗବତ ବେହେରାଙ୍କୁ ଘରୋଇ

ବିଭାଗର କ୍ୟାବିନେଟ ମନ୍ତ୍ରୀ ଓ ଆଠଗଡ଼ ବିଧାୟକ ରଣେନ୍ଦ୍ର ପ୍ରତାପ ସ୍ୱାଇଁଙ୍କୁ ଘରୋଇ ବିଭାଗର ରାଷ୍ଟ୍ରମନ୍ତ୍ରୀ ଦାୟିତ୍ୱ ଦିଆଯାଉ । ଷଣ୍ଢ ମାର୍କେ ଦଳୀୟ ଗୁଣ୍ଡାମାନେ ଠିକଣା ବାଟକୁ ଆସିଯିବେ । ଚାଷ ଥିଲେ ବାସ ମିଳେ । ଏ ତତ୍ୱରେ ବିଶ୍ୱାସ କରୁଥିବା ଏକମାତ୍ର ବ୍ୟକ୍ତି ହେଲେ ରାଜନଗର ବିଧାୟକ ନଳିନୀ ମହାନ୍ତି । ତାଙ୍କୁ କାଳବିଳମ୍ବ ନକରି କୃଷିମନ୍ତ୍ରୀ କରି ଦିଆଯିବା ଉଚିତ୍ । ତା' ହେଲେ ରାଜନଗର ଅଂଚଳରେ ଅନ୍ତତଃ ଚିଙ୍ଗୁଡ଼ି ଚାଷ ବଦଳରେ ଧାନ ଚାଷ ପ୍ରତି ଲୋକମାନେ ଅଧିକ ଆକୃଷ୍ଟ ହୋଇପାରିବେ । ସାଧାରଣ ପ୍ରଶାସନ ଦାୟିତ୍ୱ ଭଟଲି ବିଧାୟକ ବିମ୍ବାଧର କୁଅଁରଙ୍କୁ ଦିଆଗଲେ ପ୍ରଶାସନିକ ଶୃଙ୍ଖଳା ଫେରାଇ ଆଣିବାକୁ ତାଙ୍କୁ ଦୁଇ ମିନିଟ୍ ବି ସମୟ ଲାଗନ୍ତା ନାହିଁ । ବିମ୍ବାଧର ବିଜେପି ସଭାପତି ଥିବା ବେଳେ ଏହି ଶୃଙ୍ଖଳା କଥା କହୁକହୁ ଏମିତି ଏକଘରିଆ ହୋଇପଡ଼ିଥିଲେ ଯେ, ରାତାରାତି ଭୁବନେଶ୍ୱର ଛାଡ଼ି ଭଟଲି ପଳାଇଥିଲେ । ପ୍ରତିଭା ମହାରଥୀ ସଗର୍ବେ ଘୋଷଣା କରି ସାରିଛନ୍ତି ଯେ ଶିକ୍ଷାନୁଷ୍ଠାନଗୁଡ଼ିକ ତାଙ୍କ ପତିଦେବ ପ୍ରଦୀପ ମହାରଥୀ ଷ୍ଟାଇଲରେ ଚାଲିବା ଉଚିତ୍ । ସୁତରାଂ ଏଭଳି ପରାମର୍ଶକୁ ଗ୍ରହଣ କରି ପ୍ରଦୀପ ମହାରଥୀଙ୍କୁ ଉଚ୍ଚଶିକ୍ଷା ମନ୍ତ୍ରୀ କରାଯିବା ଉଚିତ । ସେ ଅନେକ ଦିନ ହେଲା ମନ୍ତ୍ରୀ ହେବେ ବୋଲି ହକହକ ହେଉଛନ୍ତି । ତାଙ୍କୁ ଉଚ୍ଚଶିକ୍ଷା ମନ୍ତ୍ରୀ କରାଗଲେ କଲେଜଗୁଡ଼ିକରେ ଏକ ନୂଆ ମାନଦଣ୍ଡ ସ୍ଥାପନ ହୋଇପାରିବ । ଗଣଶିକ୍ଷା ବିଭାଗ ନିହାତି ଭାବେ କାକଟପୁର ବିଧାୟକ ସୁରେନ୍ଦ୍ର ନାଥ ନାୟକଙ୍କୁ ମିଳିବା ଉଚିତ୍ । ଅବକାରୀ ବିଭାଗକୁ ଟିମ୍ ଲିଡ଼ର ନବୀନ ନିଜ ପାଖରେ ରଖିବା ଦରକାର । ଅବଶ୍ୟ ସେ ଏଥିପାଇଁ ଶ୍ରୀମାନ ଅନଙ୍ଗ ଉଦୟ ସିଂହଦେଓଙ୍କ ଠାରୁ ପରାମର୍ଶ ନେଇପାରନ୍ତି । କୃତାର୍ଥ ତନୟ ଆନନ୍ଦ ଆଚାର୍ଯ୍ୟଙ୍କୁ ଅବକାରୀ ବିଭାଗ ଆଦୌ ସୁଟ୍ କରୁନାହିଁ । ତାଙ୍କୁ ସମବାୟ ବିଭାଗ ଦିଆଯିବା ଉଚିତ୍ । ଆନନ୍ଦ ଆନନ୍ଦିତ ହୋଇ ସମବାୟ ଆନ୍ଦୋଳନକୁ ଜୋରଦାର କରିବେ । ପାଇକ ପୁଅ ବିଶ୍ୱଭୂଷଣଙ୍କୁ ରାଜ୍ୟର ସୁରକ୍ଷା ଭାର ସମର୍ପି ଦେଇ ନବୀନ ନିଶ୍ଚିନ୍ତ ହୋଇପାରିବେ । କଳିଙ୍ଗ ବାଟାଲିୟନ ନହେଲା ନାହିଁ ବିଶ୍ୱଭୂଷଣ ଅନ୍ତତଃ ଓଡ଼ିଶୀ ବାଟାଲିୟନ ତିଆରି କରି ଆନ୍ଧ୍ରର ସୀମା ଅତିକ୍ରମକୁ ସେ ଅଟକାଇ ପାରିବେ । ଅତିରିକ୍ତ ଦାୟିତ୍ୱ ଭାବେ ତାଙ୍କୁ କ୍ରୀଡ଼ା ବିଭାଗ ଦିଆଯିବା ଆବଶ୍ୟକ । ସେ ପାଇକ ଆଖଡ଼ାକୁ ଅଲମ୍ପିକ ପର୍ଯ୍ୟନ୍ତ ନେଇଯାଇ ପାରିବେ । ହୋଟେଲକୁ ସରକାର ଶିଳ୍ପର ମାନ୍ୟତା ଦେଇଥିବାରୁ ଏହି ବିଭାଗ ଦାୟିତ୍ୱ ତୁଲାଇବା ପାଇଁ ଅନଙ୍ଗ ଉଦୟଙ୍କ ଠାରୁ ଆଉ ଫିଟ୍ ମନ୍ତ୍ରୀ କିଏ ହେବେ । ହୋଟେଲ ମନ୍ତ୍ରୀ ହେଲେ ଅନ୍ତତଃ ସେ ନିଜ ହୋଟେଲ ବିକାଶ ପ୍ରତି ଅଧିକ ଧ୍ୟାନ ଦେଇପାରିବେ । ଜଙ୍ଗଲ ମେ ମଙ୍ଗଲ ପରି ଜଙ୍ଗଲ ମନ୍ତ୍ରୀ ହେବା ପାଇଁ ମଙ୍ଗଳା କିଷାନ ଯୋଗ୍ୟତମ ଲୋକ ବୋଲି ଯେକୌଣସି ଲୋକ କହିବ । ତେଣୁ ତାଙ୍କୁ ଜଙ୍ଗଲ ମନ୍ତ୍ରୀ କରାଗଲେ ଆଉ କେହି ଖୁସି ହୁଅନ୍ତୁ କି

ନହୁଅନ୍ତୁ ବାଘଭାଲୁମାନେ ନିଶ୍ଚିତ ଖୁସି ହେବେ । ଘର କିପରି ସଜାଇବାକୁ ହୁଏ ଘରଣୀଟିଏ ଜାଣିଥାଏ । ତେଣୁ ଗୃହ ନିର୍ମାଣ ବିଭାଗ କମଳା ଦାସଙ୍କ ହାତରେ ପଡ଼ିବା ଉଚିତ୍ । ସେହିପରି କଟକ ବିଧାୟକ ସମୀର ଦେ'ଙ୍କୁ ସ୍ୱାସ୍ଥ୍ୟମନ୍ତ୍ରୀ କରି ଦିଆଗଲେ ସେ ନିଜ ସ୍ୱାସ୍ଥ୍ୟର ଯତ୍ନ ନେବା ସହ କଟକରେ ହାଉଯାଉ ହେଉଥିବା ଡାକ୍ତରମାନଙ୍କ ପ୍ରତି ଅଧିକ ଧ୍ୟାନ ଦେଇପାରିବେ । ବେଦପ୍ରକାଶଙ୍କୁ ଆଦିବାସୀ, ହରିଜନ ଓ ସଂଖ୍ୟାଲଘୁ କଲ୍ୟାଣ ବିଭାଗ ସମର୍ପି ଦେବା ଉଚିତ୍ । ଏହାଦ୍ୱାରା ସେ ନିଜର ବ୍ୟବସାୟ ବୁଦ୍ଧି ଖଟାଇ ଏମାନଙ୍କର ଉ ରୋ ର ଉନ୍ନତି ଘଟାଇ ପାରିବେ । କନକ ବର୍ଦ୍ଧନ ସିଂହଦେଓ ରାଜାରାଜୁଡ଼ାଙ୍କ ପରମ୍ପରା ଅନୁଯାୟୀ ଶାସନ କରିବା ପାଇଁ ଆଗ୍ରହ ପ୍ରକାଶ କରୁଥିବାରୁ ତାଙ୍କୁ ମହିଳା ଓ ଶିଶୁ କଲ୍ୟାଣ ବିଭାଗ ଦାୟିତ୍ୱ ଦିଆଯିବା ଉଚିତ୍ । ବିଜେପି ମନ୍ତ୍ରୀ ଗୋଲକ ନାୟକ ଅନେକ ଦିନ ହେଲା ଦାନାକଷ୍ଟ ରୋଗ ଭୋଗୁଛନ୍ତି । କାମ ନାହିଁ, ଅର୍ଥ ନାହିଁ ଏହି ଅଭିଯୋଗ ସବୁବେଳେ । ତାଙ୍କୁ ଅର୍ଥ ବିଭାଗ ଦାୟିତ୍ୱ ଦିଆଯିବା ଉଚିତ୍ । ଏବେ ସମସ୍ତେ ପଚାରିବେ, ରାମକୃଷ୍ଣଙ୍କ ପୋଜିସନ କ'ଣ । ନବୀନଙ୍କ ଡ୍ରିମ୍ ଟିମ୍‌ର ସେ ହେବେ ମୁଖ୍ୟ ପରାମର୍ଶଦାତା । ମାନେ କରି କରାଉଥିବେ ସେ । ତାଙ୍କୁ ବିଭାଗବିହୀନ ମନ୍ତ୍ରୀ କରି ଦିଆଯାଇପାରେ । ରବିନାରାୟଣ ନନ୍ଦ ଓ ଦ୍ରୌପଦୀ ମୁର୍ମୁଙ୍କୁ ଯଥାକ୍ରମେ ନଗର ଉନ୍ନୟନ ବିଭାଗର କ୍ୟାବିନେଟ ଓ ରାଷ୍ଟ୍ରମନ୍ତ୍ରୀ କରାଯିବା ଉଚିତ୍ । କାରଣ ମନ୍ତ୍ରୀ ହେବା ପୂର୍ବରୁ ରବି ଏକ ପୌର ପରିଷଦର ଅଧ୍ୟକ୍ଷ ଥିବାବେଳେ ମ୍ୟାଡ଼ାମ୍ ମୁର୍ମୁ ଉପାଧ୍ୟକ୍ଷ ଥିଲେ । ଛାତ୍ର ରାଜନୀତିରୁ ଜମ୍ପ ମାରିଥିବା ଅମର ଶତପଥୀଙ୍କୁ ଯୁବ କଲ୍ୟାଣ ବିଭାଗ ଦିଆଗଲେ ଯୁବକମାନଙ୍କର ଉପକାର ହେବ ହିଁ ହେବ । ଅନ୍ତତଃ ଯୁବକମାନେ ତାଙ୍କଠାରୁ ଅଗ୍ନିଗର୍ଭକ ଭାଷଣ ଶିଖିପାରିବେ । ବଡ଼ମ୍ବା ବିଧାୟକ ଦେବୀ ମିଶ୍ରଙ୍କୁ କିଛି ନହେଲେ ସୂଚନା ଓ ଲୋକସମ୍ପର୍କ ମନ୍ତ୍ରୀ କରି ଦିଆଯିବା ଉଚିତ୍ । ଲୋକସମ୍ପର୍କ ଦୃଷ୍ଟିରୁ ସରକାର ଆଦୌ ହତାଶ ହେବେ ନାହିଁ । ଧାମରାକୁ ବନ୍ଦର କରିବା ପାଇଁ ଗତ ଚାରିବର୍ଷ ହେଲା ଚିଲେଇ ଆସୁଥିବା ବାସୁଦେବପୁର ବିଧାୟକ ବିଜୟଶ୍ରୀ ରାଉତରାୟ ଓରଫ ବାବୁଲିଙ୍କୁ ବାଣିଜ୍ୟ ମନ୍ତ୍ରୀ କରି ଦିଆଗଲେ ଧାମରା ବାଟେ ବାଲେଶ୍ୱରରୁ ବହୁ ଚାଉଳ ବିଦେଶକୁ ରପ୍ତାନୀ ହୋଇପାରିବ । ବହୁ ଶ୍ରମ ସ୍ୱୀକାର କରି ଜନତା ଦଳରୁ ବିଜେଡିକୁ ଆସିଥିବା ଦୁର୍ଯ୍ୟୋଧନ ମାଝୀଙ୍କୁ ଶ୍ରମମନ୍ତ୍ରୀ କରି ଦିଆଯିବା ଉଚିତ୍ ।

## ନାଗ-ଚୁଚୁନ୍ଦ୍ରା

**ରା**ଜ୍ୟର ଆଉ କେଉଁ ରାଜନୈତିକ ଦଳ ହେଉ କି ନହେଉ ବିଜେପିକୁ ନାଗ-ଚୁଚୁନ୍ଦ୍ରା ଘାରିଛି । ଏଇ ସେଦିନ ବିଧାନସଭାରେ କହୁକହୁ ବିଜେପି ବିଧାୟକ ବାଳଗୋପାଳ ମିଶ୍ର

କୋଶଳ ରାଜ୍ୟ ପ୍ରସଙ୍ଗ ଉଠାଇଲେ । ଚାହୁଁଚାହୁଁ ତାଙ୍କୁ ଅର୍ଥମନ୍ତ୍ରୀ ରାମକୃଷ୍ଣ ପଟ୍ଟନାୟକ ଏବଂ ବିଜେପି ବିଧାୟକ ଦଳ ନେତା ବିଶ୍ୱଭୂଷଣ ହରିଚନ୍ଦନ ବିଧାନସଭାରେ ନିନ୍ଦା କଲେ । ପଶ୍ଚିମ ଓଡ଼ିଶାରେ ବାଳଗୋପାଳ ଗୋଟାପଣେ ହୀରୋ । ବାଳଗୋପାଳଙ୍କୁ ମଧ୍ୟ ଦଳର ବହୁନେତା ସମର୍ଥନ କରୁଥିବାର ଦେଖିବାକୁ ମିଳିଲାଣି । ବିଶ୍ୱଭୂଷଣ ଏବେ କରିବେ କ'ଣ । ନାଗସାପ ଯେପରି ଚୁଚୁନ୍ଦ୍ରାକୁ ଧରିଦେଲେ ନା ଛାଡ଼ିପାରିବ ନା ଗିଳିପାରିବ ବାଳଗୋପାଳଙ୍କୁ ନିନ୍ଦା କରି ସେହିପରି ଅବସ୍ଥା ଏବେ ବିଶ୍ୱଭୂଷଣଙ୍କର ହୋଇଛି । ଏବେ ସେ ନା ଏପଟ ନା ସେପଟ । ବାଳଗୋପାଳଙ୍କ ଉପରେ କାର୍ଯ୍ୟାନୁଷ୍ଠାନ ପାଇଁ ଦାବି କରିପାରୁନାହାନ୍ତି କି ତାଙ୍କୁ ଖୋଲାଖୋଲି ସମର୍ଥନ ଦେଇପାରୁନାହାନ୍ତି । ଫୁଲମାଳ ପିନ୍ଧି ବାଳଗୋପାଳ ବୁଲୁଥିବା ବେଳେ ବିଶ୍ୱଭୂଷଣଙ୍କୁ ଚିନ୍ତା ଗ୍ରାସ କରିଛି । ଘଟଣାଟି ବିଶ୍ୱଭୂଷଣଙ୍କ ବିଜେପି ବିଧାୟକ ଦଳ ନେତା ପଦିଆରରେ ବ୍ରେକ୍ ମାରିଛି । ଦେଖାଯାଉ କେଉଁ ପାଣି କୁଆଡ଼କୁ ବୋହୁଛି ।

# ଅଶୋକ ସ୍ତମ୍ଭ ଚିଠି

**କାହ୍ନୁ** ଲେଙ୍କା ମନ୍ତ୍ରୀ ପଦରୁ ବହୁଦିନ ହେଲାଣି ଗଲେଣି ସତ କିନ୍ତୁ ସେ ନିଜକୁ ମନ୍ତ୍ରୀ ବୋଲି ଭାବି ଚାଲିଛନ୍ତି । ଏହା ଜଣାପଡ଼ିଲା ଯେତେବେଳେ ଓ.ଟି.ଏମ୍. ସମ୍ପର୍କରେ ସେ ସାମ୍ବାଦିକ ସମ୍ମିଳନୀ ଡାକିଲେ । ଯେଉଁ ପତ୍ର ସେ ସାମ୍ବାଦିକଙ୍କୁ ବାଂଟିଲେ ସେଥିରେ ଖୋଦ୍ ଅଶୋକ ସ୍ତମ୍ଭ ଚିହ୍ନ ଥିଲା । ଏମିତି ତ ସଚିବାଳୟ ଯାଆନ୍ତୁ କି ବିଧାନସଭାର ବାଚସ୍ପତିଙ୍କ ଆସନ ଉପରକୁ ଦେଖନ୍ତୁ ସେଠାରେ ଥାଏ ଅଶୋକ ସ୍ତମ୍ଭର ଚିହ୍ନ । ସେହିପରି ସରକାରୀ ଚିଠିପତ୍ରରେ ଅଶୋକ ସ୍ତମ୍ଭ ଚିହ୍ନ ରହିବ ହିଁ ରହିବ । ଆଉ କେନ୍ଦ୍ରମନ୍ତ୍ରୀ ହେଲେ ତ ଅଶୋକ ସ୍ତମ୍ଭ ନିଶ୍ଚିତ ରହିବ । କାହ୍ନୁଙ୍କୁ କେନ୍ଦ୍ରମନ୍ତ୍ରୀ କି ରାଜ୍ୟମନ୍ତ୍ରୀ କେଉଁ ନିଶା ଘାରିଛି କହିହେବ ନାହିଁ । ନହେଲେ ଅଶୋକସ୍ତମ୍ଭ ଚିହ୍ନ ଥାଇ ଚିଠି ସେ ଲେଖି ନଥା'ନ୍ତେ ।

# ଅମିତାଭ କ୍ରେଜ୍

**ଯା**ହାଙ୍କ କଥା ଏଠାରେ ବର୍ଣ୍ଣନା କରାଯାଉଛି ତାଙ୍କର ନାମ ହେଉଛି ଚୌଧୁରୀ ପ୍ରବୀର କୁମାର ଦାସ । ସେ ମୁମ୍ବାଇ ଯାଇଥିଲେ । ହଠାତ୍ ସେ ଦେଖିଲେ ନାମଜାଦା ହୋଟେଲ 'ଲି ମେରିଡନ' ସମ୍ମୁଖରେ ଏକ ଧାଡ଼ି ଲମ୍ବିଛି । ବୁଝୁବୁଝୁ ଜଣାପଡ଼ିଲା ଧାଡ଼ି ଆଉ କେଉଁଥିପାଇଁ ନୁହେଁ ସୁପରଷ୍ଟାର ଅମିତାଭ ବଚ୍ଚନଙ୍କ ପ୍ରତିମୂର୍ତ୍ତି ସହିତ ଫଟୋ ଉଠାଇବା ପାଇଁ । ସେଥିପାଇଁ ଟିକଟ୍‌ର ମୂଲ୍ୟ ୫୦୦ ଟଙ୍କା । ପ୍ରବୀର ଧାଡ଼ିରେ ଠିଆ ହେଲେ । ଚାରିଘଂଟା ପରେ ପ୍ରତିମୂର୍ତ୍ତି ପାଖରେ ପହଂଚିଲେ । ଲଣ୍ଡନର ୩ ଜଣ ଝିଅ ୨୫ ଲକ୍ଷ

ଟଙ୍କା ନେଇ ଏହି ପ୍ରତିମୂର୍ତ୍ତି ତିଆରି କରିଥିଲେ । ଫିଲ୍ମ ଫେୟାର ଉତ୍ସବ ପାଇଁ ପ୍ରତିମୂର୍ତ୍ତିଟି ଭାରତ ଆସିଥିଲା । ଦୁଇଦିନ ପରେ ତାହା ଲଣ୍ଡନ ମ୍ୟୁଜିୟମକୁ ଚାଲିଯିବ । ପ୍ରବୀର ଉଠାଇଥିବା ଫଟୋଟି ଭୁବନେଶ୍ୱରରେ ପହଂଚିବାପରେ ଫଟୋଟିକୁ ଦେଖିବା ପାଇଁ ତାଙ୍କ ନିକଟରେ ଭାରି ଭିଡ଼ । ବିଭିନ୍ନ ସ୍ଥାନରେ ଏହି ଫଟୋ ସମ୍ପର୍କରେ ଗରମାଗରମ ଆଲୋଚନା । ଅମିତାଭଙ୍କ ପ୍ରତିମୂର୍ତ୍ତି ସହିତ ଉଠାଇବା ଫଟୋଟିକୁ ଦେଖିବାକୁ ଯଦି ଏତେ ଭିଡ଼ ତେବେ ଜୀବନ୍ତ ଅମିତାଭଙ୍କ ସହିତ ଫଟୋ ଉଠିଲେ ତାକୁ ଦେଖିବାକୁ କେତେ ଯେ ଭିଡ଼ ହେବ ତାହା କଳନା କରି ହେବନାହିଁ । ଯାହାହେଲେ ମଧ ଅମିତାଭଙ୍କ କ୍ରେଜ ଆଗରେ ସବୁକିଛି ତୁଚ୍ଛ ।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ପଂଚାୟତ ନିର୍ବାଚନରେ ଆଉ ବିଜେଡି-ବିଜେପି ମେଂଟ କାମ ଦେବ ନାହିଁ ।

ଦ୍ୱିତୀୟ ବ୍ୟକ୍ତି : କାହିଁକି ?

ପ୍ରଥମ ବ୍ୟକ୍ତି : ବିଧାନସଭାର ୧୪୭ଟି ଆସନରେ ମେଂଟ କରିବା ପାଇଁ ଦେଢ଼ମାସ ସମୟ ଲାଗିଥିଲା । ପାଂଚହଜାରରୁ ଅଧିକ ପଂଚାୟତ ନିମନ୍ତେ ସେହି ଅନୁପାତରେ ମେଂଟ ହେଉହେଉ ବର୍ଷକରୁ ଅଧିକ ସମୟ ଲାଗିଯିବ । ପଂଚାୟତ ନିର୍ବାଚନ ପାଇଁ ବିଜେଡି-ବିଜେପି ମେଂଟ ହେଲେ ତାହା ପାଗ ଭିତୁଭିତୁ କଚେରୀ ବରଖାସ୍ତ ପରି ହେବ ।

ଦ୍ୱିତୀୟ ବ୍ୟକ୍ତି : ଧେତ୍ ବାଜେକଥା ।

## ନବୀନଙ୍କ କଙ୍କଡ଼ା ନିଶା

ବିଜୁଙ୍କ ମୃତ୍ୟୁ ହେବାପରେ ତାଙ୍କର ରାଜନୈତିକ ଉତରାଧିକାରୀ ହେଲେ ନବୀନ ପଟ୍ଟନାୟକ । ଆସ୍କା ଲୋକସଭା ଉପନିର୍ବାଚନରେ ଯେତେବେଳେ ସେ ଲଢ଼ିଲେ ସେତେବେଳେ ତାଙ୍କୁ ଦେଖିବା ପାଇଁ ଜନସାଧାରଣଙ୍କର ପ୍ରବଳ ଭିଡ଼ ହୋଇଥିଲା । ସମୟକ୍ରମେ ନବୀନ ଓଡ଼ିଶାର ମୁଖ୍ୟମନ୍ତ୍ରୀ ହେଲେ । ନବୀନଙ୍କୁ ଦେଖିବା ପାଇଁ ଯେତିକି ଭିଡ଼ ହେଉନାହିଁ ତାଙ୍କର ଚାଲିଚଳନକୁ ଦେଖିବାକୁ ଲୋକଙ୍କ ମଧରେ ପ୍ରବଳ ଆଗ୍ରହ ସୃଷ୍ଟି ହେଉଛି । ନବୀନ କ'ଣ ଖାଆନ୍ତି, କେତେବେଳେ ଶୁଅନ୍ତି ଏସବୁ ସମ୍ପର୍କରେ ଜାଣିବା ପାଇଁ ଅନେକ ଉଦ୍ୟମ ବି କରିଥା'ନ୍ତି । କଂଗ୍ରେସ ବିଧାୟକ ସୁରେଶ କୁମାର ରାଉତରାୟ ତାଙ୍କ ଜଟଣୀ ନିର୍ବାଚନମଣ୍ଡଳୀ ଅନ୍ତର୍ଗତ ଚନ୍ଦକା ହାତୀ ଅଭୟାରଣ୍ୟ ମଧରେ ଥିବା

କୁମାରଖୁଂଟିଠାରେ ଏକ ବନ୍ଧୁମିଳନର ଆୟୋଜନ କରିଥିଲେ । ଏଥିରେ ଯୋଗ ଦେବା ପାଇଁ ସେ ମୁଖ୍ୟମନ୍ତ୍ରୀଙ୍କ ସମେତ ସମସ୍ତ ମନ୍ତ୍ରୀ, ବିଧାୟକ, ସାମାଦିକ ଏବଂ ତାଙ୍କ ଦଳର ବିଭିନ୍ନ ନେତାଙ୍କୁ ନିମନ୍ତ୍ରଣ କରିଥିଲେ । ବନ୍ଧୁମିଳନର ମୁଖ୍ୟ ଆକର୍ଷଣ ଥିଲା କୁମାରଖୁଂଟିକୁ ଗଲେ ହାତୀପଲର ଦେଖା ମିଳିବା ସହିତ ସ୍ୱାଦିଷ୍ଟ ଭୋଜନ ମଧ୍ୟ ମିଳିବ । ଦିନ ପ୍ରାୟ ଦୁଇଟା ବେଳକୁ ମୁଖ୍ୟମନ୍ତ୍ରୀଙ୍କ ସମେତ ଅନ୍ୟାନ୍ୟ ଅତିଥିମାନେ ସେଠାରେ ପହଂଚି ଯାଇଥିଲେ । ସେଠାରେ ଉପସ୍ଥିତ ଥିବା ସ୍ଥାନୀୟ ଅଧିବାସୀମାନେ ମୁଖ୍ୟମନ୍ତ୍ରୀ କ'ଣ ଖାଉଛନ୍ତି ତାହା ଦେଖିବା ପାଇଁ ଭିଡ଼ ଜମାଇଥିଲେ । ମୁଖ୍ୟମନ୍ତ୍ରୀ ପହଂଚିବା ମାତ୍ରେ ତାଙ୍କୁ ଖାଇବା ପରସା ଯାଇଥିଲା । ଚିଙ୍ଗୁଡ଼ି, ଖାସି ମାଂସ, ମହୁରାଡ଼ି ମାଛ, ଭାକୁର ମାଛ, କଙ୍କଡ଼ା ଏମିତି ପ୍ରାୟ ୧୬ ପ୍ରକାରର ବ୍ୟଞ୍ଜନ ପ୍ରସ୍ତୁତ କରାଯାଇଥିଲା । ନବୀନ ଅନ୍ୟ କୌଣସି ବ୍ୟଞ୍ଜନକୁ ନଛୁଇଁ ପ୍ରଥମେ ଦୁଇ ହାତରେ କଙ୍କଡ଼ା ଉଠାଇ ରାତୁମାତୁ କରି ଚୋବାଇବାକୁ ଲାଗିଲେ । ତାଙ୍କ ବ୍ୟଞ୍ଜନ ପର୍ବ କଙ୍କଡ଼ା ଖିଆରେ ସରିଗଲା । ଅନ୍ୟ ସବୁ ତରକାରୀ ସେମିତି ଥୁଆ ହୋଇଥିଲା । ଜାଣିବା ଶୁଣିବା ଲୋକ କହୁଥିଲେ ବାପାଙ୍କୁ ଚିଙ୍ଗୁଡ଼ି ଓ ଚିକେନ ରୋଷ୍ଟ ଭଲ ଲାଗୁଥିଲା । ପୁଅକୁ କଙ୍କଡ଼ା ନିଶା ଘାରିଛି ।

## ଟେନିସ୍ ପ୍ରିୟ ନଳିନୀ

ମନ୍ତ୍ରୀ ନଳିନୀ ମହାନ୍ତିଙ୍କ ଏକ ନମ୍ବର ରୁଚି ହେଉଛି ଟେନିସ୍ । ମାନେ ଇଟ୍ ଟେନିସ, ଡ୍ରିଙ୍କ ଟେନିସ୍ । ମନ୍ତ୍ରୀ ଥାଆନ୍ତୁ କି ନଥାଆନ୍ତୁ ଟେନିସ୍ ଖେଳି ନଳିନୀ ତନମନକୁ ରଖିଛନ୍ତି ଫିଟ୍ । ସକାଳେ ଫୋନ୍ କଲେ ଉତର ମିଳେ- ସାର୍ ଟେନିସ୍ ଖେଳିବାକୁ ଯାଇଛନ୍ତି । ସନ୍ଧ୍ୟାବେଳେ ମଧ୍ୟ ସେଇ ଉତର । ତାଙ୍କ ଦେଖାଦେଖି ପୂର୍ତ୍ତ ବିଭାଗର ଇଞ୍ଜିନିୟର ଓ ଠିକାଦାରମାନେ ମଧ୍ୟ ଟେନିସ୍ ପ୍ରେମରେ ପଡ଼ିଗଲେ । ଯେତେବେଳେ ଦେଖ ହାଫ୍‌ପ୍ୟାଂଟ ପିନ୍ଧା ଇଞ୍ଜିନିୟର ଓ ଠିକାଦାରଙ୍କ ହାତରେ ଟେନିସ୍ ର୍ୟାକେଟ୍ । ନଳିନୀଙ୍କ ପାଖଲୋକ ହେବା ପାଇଁ ଏମାନଙ୍କ ଭିତରେ ଚାଲିଛି ରୀତିମତ ପ୍ରତିଯୋଗିତା । ପାଖଲୋକ ବାଛିବା ପାଇଁ ନଳିନୀ ଏକ ଟେନିସ୍ ଚମ୍ପିଆନସିପ୍‌ର ଆୟୋଜନ କରିବା ଉଚିତ୍ । ଚମ୍ପିଆନ୍ ଓ ରନର୍ସଅପ୍ ଇଞ୍ଜିନିୟର ଓ ଠିକାଦାରମାନଙ୍କୁ ବାଦ୍ ଦେଲେ ଅନ୍ୟମାନଙ୍କୁ ତାଙ୍କ ଦାଣ୍ଡ ଦୁଆର ମନା ହେବା ଦରକାର ।

## ବିଚାରା ଅଟୋ ଡ୍ରାଇଭର

ଭୁବନେଶ୍ୱରର ହାଉସିଂ ବୋର୍ଡ଼ ଛକ । ରାତି ସେତେବେଳକୁ ପ୍ରାୟ ୧୦ଟା । ପ୍ରାୟ ୧୦୦ରୁ ଅଧିକ ଲୋକଙ୍କର ଭିଡ଼ ଜମି ଯାଇଥିଲା ଏକ ଓଲଟି ପଡ଼ିଥିବା ଅଟୋରିକ୍ସା ଚାରିପଟେ । ଅଟୋରିକ୍ସା ଠାରୁ ଅଳ୍ପ ଦୂରରେ ପଡ଼ି ରହିଥିଲେ ଗାଡ଼ିଚାଳକ । ସତେ ଯେମିତି

ସେ ମୁର୍ଦ୍ଧାର । ଲୋକଙ୍କ ପାଟିରୁ ଚୁ-ଚୁ, ଆହାଃ-ଆହାଃ, ହାଏ ହାଏ ଶବ୍ଦ ଅନବରତ ବାହାରୁଥିଲା । ହଠାତ୍ ଗାଡ଼ିଚାଳକ ଜଣଙ୍କ ପାଟି କରି କହିଲେ- ମରିଗଲି, ମରିଗଲି । ମୋତେ ଟିକେ ଡାକ୍ତରଖାନା ନେଇ ଚାଲ । ଯନ୍ତ୍ରଣାରେ ଛଟପଟ ହେଉଥିଲେ ସେ । ସେ କହୁଥିଲେ- ବାବୁମାନେ ମୋ ଗୋଡ଼ ଭାଙ୍ଗିଯାଇଛି । ଉଠିପାରୁ ନାହିଁ । ଡେରି ହେଲେ ମରିଯିବି । ମୋତେ ଟିକେ ଡାକ୍ତରଖାନା ନେଇ ଚାଲନ୍ତୁ । ଏହି କଥା ଶୁଣିବା ପରେ କ୍ରମେ ସେଠାରେ ଲାଗିରହିଥିବା ଭିଡ଼ ଭାଙ୍ଗିବାକୁ ଆରମ୍ଭ କରିଥିଲା । ଏତେ ସମୟ ଧରି ଆ ହା ଚୁ ଚୁ କରୁଥିବା ଲୋକମାନେ କେମିତି ତୁରନ୍ତ ଘଟଣାସ୍ଥଳ ଛାଡ଼ି ଚାଲିଯିବେ ସେଥିପାଇଁ ସେମାନଙ୍କୁ ତର ସହିଲା ନାହିଁ । ମାତ୍ର ୧୦ ମିନିଟ୍ ଭିତରେ ସ୍ଥାନଟି ଖାଲି ହୋଇଯାଇଥିଲା । ରାସ୍ତା ମଝିରେ ସେମିତି ପଡ଼ିଥିଲା ଅଟୋଟି । ଡ୍ରାଇଭର ସେମିତି ବିକଳ ଚିତ୍କାର ଛାଡୁଥିଲେ ଡାକ୍ତରଖାନାକୁ ତାଙ୍କୁ ନେଇଯିବା ପାଇଁ । ସତରେ ରାଜଧାନୀବାସୀଙ୍କ ହୃଦୟ ବଡ଼ ନିଷ୍ଠୁର ।

# ମଲା ବାଘର ଆକର୍ଷଣ

**ନ**ନ୍ଦନକାନନର ବାଘଗୁଡ଼ିକ ହୃଷ୍ଟପୁଷ୍ଟ ବୋଲି ସେମାନଙ୍କୁ ଦେଖିବାକୁ ସାଧାରଣତଃ ଦର୍ଶକମାନଙ୍କର ଭିଡ଼ ହୋଇଥାଏ । ବାଘମାନେ ହିଁ ନନ୍ଦନକାନନର ସବୁଠାରୁ ବଡ଼ ଆକର୍ଷଣ । ୧୨ଟି ବାଘଙ୍କର ଅକାଳ ବିୟୋଗ ପରେ ମନେ କରାଯାଉଥିଲା ଆଉ ନନ୍ଦନକାନନରେ ଦର୍ଶକଙ୍କ ପାଦ ପଡ଼ିବ ନାହିଁ ବୋଲି। କିନ୍ତୁ ଯାହା ଦେଖାଗଲା ପୂର୍ବ ତୁଳନାରେ ଦର୍ଶକଙ୍କ ସଂଖ୍ୟା ବଢ଼ିବାରେ ଲାଗିଲା । କାରଣ ବୁଝୁବୁଝୁ ଜଣାପଡ଼ିଲା ବାଘଙ୍କର କିପରି ମୃତ୍ୟୁ ଘଟିଲା, ବାଘମାନେ କେଉଁ ଯନ୍ତାରେ ରହୁଥିଲେ, କେଉଁ ଜଙ୍ଗଲରୁ ମାଛି ଆସି ସେମାନଙ୍କୁ କାମୁଡ଼ିଲା ତାହା ଜାଣିବା ପାଇଁ ଦର୍ଶକମାନେ ଆଗ୍ରହୀ ହୋଇପଡ଼ିଛନ୍ତି । ସେମାନେ ମୃତ ବାଘଙ୍କର ଯନ୍ତା ବାହାରେ ବେଶି ସମୟ କଟାଉଛନ୍ତି । ଅନ୍ୟ ଜୀବଜନ୍ତୁଙ୍କୁ ଦେଖିବା ପାଇଁ ସେମାନଙ୍କର ଆଗ୍ରହ ନାହିଁ ।

# ମୁଖ୍ୟମନ୍ତ୍ରୀଙ୍କ ଟ୍ରାଉଜର

**ମୁ**ଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ପୋଷାକ ହେଉଛି ଟ୍ରାଉଜର ଆଉ ପଂଜାବୀ । ସେ ଧୋତି ପିନ୍ଧନ୍ତି ନାହିଁ କି ପ୍ୟାଂଟ ବି ପିନ୍ଧନ୍ତି ନାହିଁ । ପୁଣି ନବୀନଙ୍କ ଷ୍ଟାଇଲ ହେଲା ଟ୍ରାଉଜରଟି ଆଣ୍ଠୁ ଆଉ ପାଦ ମଝିରେ ରହିବ । ଅର୍ଥାତ୍ କେଆରଲେସ୍ ଟ୍ରାଉଜର ପିନ୍ଧା । ପ୍ରଥମେ ପ୍ରଥମେ ନବୀନ ଯେତେବେଳେ ସଭାସମିତିକୁ ଏଇ ପୋଷାକରେ ଯାଉଥିଲେ ସେତେବେଳେ ତାଙ୍କର ଟ୍ରାଉଜର ପିନ୍ଧା ଷ୍ଟାଇଲଟି ଲୋକଙ୍କ ମନକୁ ଯାଉ ନଥିଲା ।

ମୁଖ୍ୟମନ୍ତ୍ରୀ ହେବାର ଛ'ମାସ ନପୁରୁଣୁ ତାଙ୍କ ଟ୍ରାଉଜର ଷ୍ଟାଇଲଟି ସହରଠାରୁ ଆରମ୍ଭ କରି ଗାଁ ସବୁଆଡ଼େ ବ୍ୟାପିବାକୁ ଲାଗିଲା । ଯୁବନେତାମାନେ ମଧ୍ୟ ନବୀନଙ୍କ ଷ୍ଟାଇଲରେ ଟ୍ରାଉଜର ପିନ୍ଧିଲେ । ସଭାସମିତିରେ ଦେଖାଗଲା ଅଧିକାଂଶଙ୍କର ପୋଷାକ ମଧ୍ୟ ଟ୍ରାଉଜର ଓ ପଂଜାବୀ । ଏପରିକି ସଚିବାଳୟ ବି ଏଥିରୁ ବାଦ୍ ପଡିଲା ନାହିଁ । ପୂର୍ବରୁ କାଁ ଭାଁ ଟ୍ରାଉଜର, ପଂଜାବୀ ପିନ୍ଧିଥିବା ବ୍ୟକ୍ତିଙ୍କୁ ସଚିବାଳୟରେ ଦେଖିବାକୁ ମିଳୁଥିଲା । ନବୀନ ମୁଖ୍ୟମନ୍ତ୍ରୀ ହେବାପରେ ଯୁଆଡ଼େ ଆଖି ବୁଲାଇବ ସିଆଡ଼େ ଟ୍ରାଉଜର, ପଂଜାବୀ ପିନ୍ଧିଥିବା ବ୍ୟକ୍ତି । ସିଲେଇ ଦୋକାନରେ ନବୀନ ଷ୍ଟାଇଲରେ ଟ୍ରାଉଜର, ପଂଜାବୀ ତିଆରି ହେଉଛି ବୋଲି ବୋର୍ଡ଼ ଝୁଲୁଥିବାର ମଧ୍ୟ ଦେଖିବାକୁ ମିଳିଲାଣି । ସିଲେଇ ଦୋକାନୀଙ୍କ ମତ ହେଉଛି- ସୁପରଷ୍ଟାର ରାଜେଶ ଖାନ୍ନାଙ୍କର ଯୁଗ ଚାଲିଯିବା ପରେ ପଂଜାବୀର ଚାହିଦା ନଥିଲା । ଏବେ ନବୀନ ଟ୍ରାଉଜର ମାନିଆ ଘାରିଛି । ସମୟ ସୁଯୋଗ ଦେଖି ଫାଇଦା ଉଠାଇବା ଦରକାର ।

# ନବରତ୍ନ

**ସା**ଧାରଣତଃ ନବରତ୍ନ କଥା ଉଠିଲେ ସମସ୍ତେ ଧରି ନିଅନ୍ତି ଯେ ନ'ଟି ପରିବାକୁ ନେଇ ରନ୍ଧା ହୋଇଥିବା ତରକାରୀ । ଭୋଜି ଭାତ ପ୍ରସଙ୍ଗ ଆସିଲେ ଏହି ତରକାରୀ ଆଲୋଚନାକୁ ଆସେ । କିନ୍ତୁ ଏ ନବରତ୍ନ ହେଉଛି ନବୀନ ସରକାରର ନ'ଟି ରତ୍ନ । ଯାହାକୁ ନେଇ ସାରା ସଚିବାଳୟ ପଡୁଛି ଆଉ ଉଠୁଛି । ସମଗ୍ର ରାଜ୍ୟରେ ଆଲୋଚନା ହେଉଛି । ନବୀନ ମୁଖ୍ୟମନ୍ତ୍ରୀ ହେବା ପରେ ଆଇ.ଏ.ଏସ୍.ମାନଙ୍କ ମଧ୍ୟରୁ ୯ଟି ରତ୍ନ ସେ ବାଛିଛନ୍ତି । ସେମାନଙ୍କୁ ବାଛିବାଛି ମଧ୍ୟ ସେ ବିଭାଗ ଦେଇଛନ୍ତି । ଏହି ରତ୍ନମାନେ ହେଲେ ମୁଖ୍ୟମନ୍ତ୍ରୀଙ୍କ ସଚିବ ଯୁଗଳ ମହାପାତ୍ର, ଅର୍ଥ ସଚିବ ଅର୍ଦ୍ଧେନ୍ଦୁ ଶେଖର ଷଡ଼ଙ୍ଗୀ, ଆଦିବାସୀ କଲ୍ୟାଣ ସଚିବ ଅରବିନ୍ଦ ବେହେରା, ବିଜ୍ଞାନ ଓ କାରିଗରୀ କୌଶଳ ସଚିବ ସତ୍ୟପ୍ରକାଶ ନନ୍ଦ, ନଗର ଉନ୍ନୟନ ସଚିବ ହୃଷିକେଷ ପଣ୍ଡା, ସ୍ୱାସ୍ଥ୍ୟ ସଚିବ ମାଧୁର ଷଡ଼ଙ୍ଗୀ, ଗ୍ରାମ୍ୟ ଉନ୍ନୟନ ସଚିବ ଅରୁଣା ସାମନ୍ତରାୟ, ଘରୋଇ ସଚିବ ତରୁଣକାନ୍ତି ମିଶ୍ର ଏବଂ ସାଧାରଣ ପ୍ରଶାସନ ବିଭାଗ ସତନ୍ତ୍ର ଶାସନ ସଚିବ ଏସ୍.ବି. ଅଗ୍ନିହୋତ୍ରୀ । ଏହି ନବରତ୍ନଙ୍କ କଥାରେ ପ୍ରଶାସନ ଚାଲିଛି ବୋଲି ସବୁଆଡ଼େ ପ୍ରଚାର ହେଉଛି । କ୍ଷମତାକୁ ଆସିବା ପରେ ପ୍ରଥମେ ପ୍ରଥମେ କେତେକ ମନ୍ତ୍ରୀ ସେମାନଙ୍କ ବିଭାଗର ସଚିବଙ୍କୁ ବଦଳାଇବା ପାଇଁ ଜିଦ୍ ଧରିଥିଲେ । ସେତେବେଳେ କିନ୍ତୁ ସେମାନେ ଜାଣି ନଥିଲେ ଯେ ଯେଉଁ ସଚିବଙ୍କୁ ବଦଳାଇବାକୁ ସେମାନେ ଚାହୁଁଛନ୍ତି ସେମାନେ ହେଉଛନ୍ତି ଏହି ନବରତ୍ନରୁ ଜଣେ ବୋଲି । ମନ୍ତ୍ରୀମାନେ ନବରତ୍ନ ସମ୍ପର୍କରେ ଅବଗତ ହୋଇଯିବା ପରେ ଆଉ ସେମାନଙ୍କ ବିରୋଧରେ ଫେରାଦ ହେଉନାହାନ୍ତି ।

# ବିଚରା ରିକ୍ସାବାଲା

**ସେ**ଦିନ ଜଣେ ରିକ୍ସା ଚାଳକ ଟ୍ରାଫିକ୍ ପୋଲିସ ନିକଟରେ କାନ୍ଦିକାନ୍ଦି ଅଭିଯୋଗ କରୁଥାଏ । ରିକ୍ସା ଚାଳକଟିର ଏଭଳି ଅବସ୍ଥା ଦେଖି କିଛି ଅଘଟଣ ଘଟିଥିବାର ସନ୍ଦେହ କରି ଲୋକମାନେ ସେଠାରେ ଜମା ହେବାକୁ ଲାଗିଲେ । ରିକ୍ସା ଚାଳକଟି କହୁଥାଏ - ରାଜଧାନୀରେ ଧୋବ ଧୋବଳିଆ ବାବୁଙ୍କୁ ଆଉ ବିଶ୍ୱାସ କରି ହେବନାହିଁ । ବାଣୀବିହାର ଛକରୁ ଦୁଇଜଣ ପୁଅଝିଅ ରିକ୍ସାରେ ବସିଲେ । କହିଲେ ମାଷ୍ଟର କ୍ୟାଂଟିନ ଛକ ଯିବେ । ସେଠି କାମ ସାରି କହିଲେ ପ୍ଲେନ୍ ଟିକେଟ୍ କାଟିବେ । ଏ.ଜି. ଛକ ପାଖ ଇଣ୍ଡିଆନ ଏୟାର ଲାଇନ୍ସ ଅଫିସକୁ ଚାଲ । ସେଠାରେ ସେମାନେ ଅପେକ୍ଷା କରିବାକୁ କହି ଟିକେଟ୍ କାଟିବାକୁ ଅଫିସକୁ ଗଲେ । ଘଂଟାଏ ବିତିଗଲା । କିନ୍ତୁ ସେମାନେ ଆସିଲେନି । ଅଫିସ୍ ଭିତରକୁ ଯାଇ ଖୋଜିଲା ବେଳକୁ ସେମାନଙ୍କର ଦେଖାଦର୍ଶନ ମିଳିଲାନାହିଁ । ଅଫିସ୍‌ର ବଡ଼ବାବୁଙ୍କୁ ସେ ଦେଖା କଲା । ବୁଝିଲା ବେଳକୁ ଜଣାପଡ଼ିଲା ସେଭଳି ଚେହେରାର କୌଣସି ପୁଅଝିଅ ଘଂଟାକ ଭିତରେ ଟିକେଟ୍ କାଟିବାକୁ ଆସିନାହାନ୍ତି । ସେମାନେ ରିକ୍ସାବାଲାକୁ ଠକିବା ପାଇଁ ପଛପାଖ ଦେଇ ପଳାଇଛନ୍ତି । ମାସକରେ ପ୍ରାୟ ୨୦ ଦିନ ଏଭଳି ଘଟଣା ଘଟୁଛି । ପରିଶ୍ରମ କରୁଛୁ କିନ୍ତୁ ପଇସା ମିଳୁନି । ଭୋକ ଉପବାସରେ ପିଲା ରହୁଛନ୍ତି । ଏଭଳି ଠକଙ୍କୁ ଧରି ଉପଯୁକ୍ତ ଦଣ୍ଡ ଦିଅନ୍ତୁ । ଟ୍ରାଫିକ୍ ପୋଲିସର ଉତର ଥିଲା - ଟ୍ରାଫିକ୍ ପୋଲିସ ପୋଷାକ ପିନ୍ଧି ଠକମାନେ ଗାଡ଼ି ଅଟକାଇ ଡକାୟତି କରୁଛନ୍ତି । ସେଠି ପୋଲିସ କିଛି କରିପାରୁନି ଆଉ ତୋ କଥାକୁ ପଚାରେ କିଏ । ଶୀଘ୍ର ପଳା । ନହେଲେ ଅସଲ ରୂପ ଦେଖିବୁ । ବିଚରା ରିକ୍ସାବାଲା ।

# ଭିକାରୀଙ୍କ ଦରମା

**ଭି**କାରୀଙ୍କ ଦରମା । ଏହା ଆଶ୍ଚର୍ଯ୍ୟ ମନେ ହେଉଥିଲେ ମଧ୍ୟ ସତ । ଏହା ପୁଣି ଅନ୍ୟ କେଉଁଠାର ଭିକାରୀ ନୁହଁନ୍ତି ଖୋଦ୍ ରାଜଧାନୀ ଭୁବନେଶ୍ୱରର ଭିକାରୀ । ରାଜଧାନୀର ଭିକାରୀମାନେ ଭିକ ମାଗନ୍ତି ସତ କିନ୍ତୁ ସ ଯ କରିବାକୁ ଭୁଲନ୍ତି ନାହିଁ । ବିଭିନ୍ନ ଅଂଚଳର ଭିକାରୀମାନେ ଭିନ୍ନଭିନ୍ନ ପାନ ଦୋକାନରେ ସେମାନେ ଭିକ୍ଷା କରିଥିବା ପଇସାକୁ ଜମା କରନ୍ତି ଏବଂ ମାସ ଶେଷରେ ତାହାକୁ ସଂଗ୍ରହ କରିଥା'ନ୍ତି । ଷ୍ଟେସନ ଛକ ନିକଟରେ ଏକ ପାନ ଦୋକାନରେ ପ୍ରାୟ ୨୦ ଜଣ ଭିକାରୀ ଏଭଳି ପଇସା ଜମା କରନ୍ତି । ପାନ ଦୋକାନୀର କହିବା ଅନୁଯାୟୀ - ଜଣେଜଣେ ଭିକାରୀ

ଦିନକୁ ଅନ୍ୟୁନ ୧୫୦ରୁ ୧୭୦ ଟଙ୍କା ଜମା ରଖନ୍ତି । ମାସ ଶେଷକୁ ସେମାନେ ଦୋକାନରୁ ୪୫୦୦ ଟଙ୍କା ନିଅନ୍ତି । କେଉଁମାସରେ ଯଦି ଭିକ୍ଷା କମିଗଲା ତେବେ ପରବାୟ ନାହିଁ । ପର ମାସରେ ତାହା ଆଡ଼ଜଷ୍ଟ ହୋଇଯିବ । କିନ୍ତୁ ପାନ ଦୋକାନୀ ସହିତ ସେମାନଙ୍କର ଚୁକ୍ତି ହେଲା ସବୁଦିନ ସେମାନେ ଖୁଚୁରା ପଇସା ଜମା କରିବେ । ମାସ ଶେଷକୁ ତାଙ୍କରି ପଇସାରୁ ସେ ସେମାନଙ୍କୁ ୪୫୦୦ ଟଙ୍କା ଦରମା ଦେବ । ଦୋକାନୀ ଖୁସ୍ ଆଉ ଭିକାରୀ ବି ଖୁସ୍ ।

## ଧେତ୍ ବାଜେକଥା



ପ୍ରଥମ ବ୍ୟକ୍ତି : ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ବିବାହ କରିବେ ନା ସବୁଦିନ ପାଇଁ ଏମିତି ଅବିବାହିତ ହୋଇରହିଯିବେ ?

ଦ୍ୱିତୀୟ ବ୍ୟକ୍ତି : ମୁଖ୍ୟମନ୍ତ୍ରୀ ତାଙ୍କ ନିଜ ଇଚ୍ଛାରେ କିଛି କରନ୍ତି ନାହିଁ ।

ପ୍ରଥମ ବ୍ୟକ୍ତି : ମାନେ ?

ଦ୍ୱିତୀୟ ବ୍ୟକ୍ତି : ମୁଖ୍ୟମନ୍ତ୍ରୀ ହେଉଛନ୍ତି ପ୍ରଧାନମନ୍ତ୍ରୀ ଅଟଳ ବିହାରୀ ବାଜପାୟୀଙ୍କ ବିଶ୍ୱସ୍ତ ଚେଲା । ମାନେ ବାଜପାୟୀ ଅବିବାହିତ ଆଉ ନବୀନ ବି ଅବିବାହିତ ।

ପ୍ରଥମ ବ୍ୟକ୍ତି : ଧେତ୍ ବାଜେକଥା ।

## ପ୍ରଳୟ

**ସ**ମୟ ଅପରାହ୍ଣ ୪ଟା । ହଠାତ୍ ରାଜଧାନୀର ବସ୍‌ଷ୍ଟାଣ୍ଡ, ଦୋକାନ ବଜାର, ଚା' ଦୋକାନ ପ୍ରଭୃତି ବିଭିନ୍ନ ସ୍ଥାନରେ ଆତଙ୍କ ଖେଳିଗଲା । ଅଧିକାଂଶଙ୍କ ମୁହଁରେ ଗୋଟିଏ କଥା । ଆଉ କିଛି ସମୟ ପରେ ପୃଥିବୀ ପ୍ରଳୟ ହୋଇଯିବ । ଠିକ୍ ସେହି ସମୟକୁ ହଠାତ୍ ଜୋର୍‌ରେ ପବନ ବୋହିବାକୁ ଲାଗିଲା । ଜ୍ଞାନୀ ଗୁଣୀ ଲୋକ ଏହି ପ୍ରଳୟ କଥା ବିଶ୍ୱାସ କରୁ ନଥିଲେ ମଧ୍ୟ ସାଧାରଣ ଲୋକମାନେ କିଛି ଗୋଟାଏ ଅଘଟଣ ଘଟିବା ନିଶ୍ଚିତ ବୋଲି ଧରି ନେଇଥିଲେ । ବସ୍‌ଷ୍ଟାଣ୍ଡରେ ମଧ୍ୟ କେହି ବସ୍‌କୁ ଯାଉ ନଥିଲେ । କୌଣସି ବସ୍ ମଧ୍ୟ ଷ୍ଟାଣ୍ଡ ଛାଡୁ ନଥିଲା । ଚା', ପାନ ଦୋକାନରେ ମଧ୍ୟ କିଣାବିକା ବନ୍ଦ ହୋଇଯାଇଥିଲା । ଭବିଷ୍ୟବାଣୀ ହୋଇଛି - ପୃଥିବୀ ପ୍ରଳୟ ହେବ । ଏହି ପ୍ରଳୟ ଉତ୍ପାତ ଅପରାହ୍ଣ ୪ଟାରୁ ଆରମ୍ଭ ହେବ । ପ୍ରାୟ ପାଂଚଟା ପର୍ଯ୍ୟନ୍ତ ଏହି ଭବିଷ୍ୟବାଣୀକୁ ନେଇ ଅଧିକାଂଶ ଲୋକ ଆତଙ୍କିତ ଅବସ୍ଥାରେ ଥିଲେ । ତେବେ କିଛି ସମୟ ପାଇଁ ଜୋର୍‌ରେ

ପବନ ବୋହିବା ସହିତ ଆଉ କିଛି ହୋଇ ନଥିଲା । ପାଂଚଟା ପରେ ସମସ୍ତେ ଆଶ୍ୱସ୍ତ ହୋଇଥିଲେ । ବସ୍‌ଷ୍ଟାଣ୍ଡରୁ ବସ୍ ଛାଡ଼ିଥିଲା । ଚା' ଦୋକାନରେ ଚା' ବିକ୍ରି ଆରମ୍ଭ ହେଲା । ପବନ ତା' ବାଟରେ ଚାଲିଗଲା । ନାସ୍ତିକ ଗୋଷ୍ଠୀ ଏହାକୁ ଅପପ୍ରଚାର ବୋଲି କହୁଥିବା ବେଳେ ଆସ୍ତିକମାନେ କିନ୍ତୁ ଏହା ଠାକୁରଙ୍କ ଦୟା ବୋଲି କହିଲେ । ଠାକୁର ନଥିଲେ ଯେମିତି ଝଡ଼ ଆସିଥିଲା ସେଥିରେ ପୃଥିବୀ ନିଶ୍ଚିତ ଭାବେ ପ୍ରଳୟ ହୋଇଥା'ନ୍ତା । ପୃଥିବୀକୁ ପାପ ଗ୍ରାସ କରିବାକୁ ବସିଛି ସତ କିନ୍ତୁ କିଛି ଧାର୍ମିକ ବ୍ୟକ୍ତି ଥିବାରୁ ଏହି ପାପର ମଧ୍ୟ କ୍ଷୟ ହେଉଛି ।ଯେଉଁଥିପାଇଁ ପ୍ରଳୟ ପରିବର୍ତ୍ତେ ତୋଫାନ୍ ହେଲା ।

## ନବୀନଙ୍କ ଭୟ

**ବିଜୁ** ଉତରାଧିକାରୀ ନବୀନ ପଟ୍ଟନାୟକ । ପୁଣି ବିଜୁ ଜନତା ଦଳର ସେ ସୁପ୍ରିମୋ । ଆଉ କେନ୍ଦ୍ର ଖଣି ଓ ଇସ୍ପାତ ମନ୍ତ୍ରୀ । ଏସବୁ ବିଶ୍ଳେଷଣର ଅଧିକାରୀ ହେଉଛନ୍ତି ନବୀନ ପଟ୍ଟନାୟକ । ଏତେସବୁ ବିଶ୍ଳେଷଣର ଅଧିକାରୀ ହୋଇ ନବୀନ କାହାକୁ ଭୟ କରନ୍ତି ସେ ନେଇ ମଧ୍ୟ ଚର୍ଚ୍ଚା ହେଉଛି । ଯେଉଁ ଚର୍ଚ୍ଚା ଚାଲିଛି ତାହା ହେଲା- ନବୀନ ସମୁଦାୟ ତିନି ଜଣଙ୍କୁ ଭୟ କରନ୍ତି । ଏହି ତିନିଜଣ ହେଲେ ରାମକୃଷ୍ଣ ପଟ୍ଟନାୟକ, ବିଜୟ ମହାପାତ୍ର ଏବଂ ତ୍ରିଲୋଚନ କାନୁନ୍‌ଗୋ । ଏମାନଙ୍କୁ ଛାଡ଼ିଦେଲେ ନବୀନ କାହାରିକୁ ମଧ୍ୟ ଖାତିର କରନ୍ତି ନାହିଁ । ରାମକୃଷ୍ଣ ପଟ୍ଟନାୟକଙ୍କ ନିର୍ବାଚନମଣ୍ଡଳୀ ହେଉଛି ନବୀନଙ୍କ ଆସିକା ଲୋକସଭା ନିର୍ବାଚନମଣ୍ଡଳୀ ମଧ୍ୟରେ । ଯଦି ରାମକୃଷ୍ଣଙ୍କୁ ନବୀନ ବେଖାତିର କରନ୍ତି ତେବେ ସେ ତାଙ୍କ ଲୋକସଭା ନିର୍ବାଚନମଣ୍ଡଳୀରେ କ୍ଷଣ ପୂରାଇ ଦେବାର ଆଶଙ୍କା ଅଛି । ବିଜୟ ମହାପାତ୍ର ହେଉଛନ୍ତି ପୁରୁଖା ନେତା । ବିଜୁଙ୍କ ପରି ନେତାଙ୍କୁ ମଧ୍ୟ ସେ ସମୟେ ସମୟେ ପାଣି ପିଆଇ ଦେଉଥିଲେ । ତେଣୁ ତାଙ୍କୁ ନବୀନ ମୂଳରୁ ସତର୍କ ରହିଛନ୍ତି । ତ୍ରିଲୋଚନ କାନୁନ୍‌ଗୋ କେବଳ ଯେ ରାଜନୈତିକ ନେତା ତାହା ନୁହନ୍ତି । ତାଙ୍କର ଅର୍ଥନୀତିଠାରୁ ଆରମ୍ଭ କରି ସବୁ ବିଷୟରେ ଜ୍ଞାନ ଅଛି । ଆବଶ୍ୟକ ହେଲେ ମଧ୍ୟ ସେ ବିଭିନ୍ନ ବିଷୟରେ ଟ୍ୟୁସନ କରିଦେବେ । ନବୀନଙ୍କ ପାଖ ଲୋକମାନଙ୍କ ମତ କିନ୍ତୁ ଭିନ୍ନ । ସେମାନେ କହନ୍ତି- ନବୀନ ଦଳରେ କାହାରିକୁ ଭୟ କରନ୍ତି ନାହିଁ । ବରଂ ତାଙ୍କୁ ସମସ୍ତେ ଭୟ କରନ୍ତି ।

## ବିଜୁଙ୍କ କ୍ୱାର୍ଟର

**ବିଜୁ** ପଟ୍ଟନାୟକଙ୍କ ଅବର୍ତ୍ତମାନରେ ମଧ୍ୟ ତାଙ୍କ ସରକାରୀ କ୍ୱାର୍ଟର ସମ୍ପର୍କରେ ଆଲୋଚନା କରାଯାଉଛି । ଫରେଷ୍ଟ ପାର୍କରେ ଅବସ୍ଥିତ ଜନତା ଦଳ କାର୍ଯ୍ୟାଳୟ ବାମ ପାଖ ସରକାରୀ

କ୍ୱାର୍ଟରଟି ଥିଲା ବିଜୁ ପଟ୍ଟନାୟକଙ୍କ ଆବାସିକ କାର୍ଯ୍ୟାଳୟ । ୧୯୮୫ ମସିହା ବିଧାନସଭା ନିର୍ବାଚନରେ ବିଜୟୀ ହୋଇ ବିଜୁ ପଟ୍ଟନାୟକ ବିରୋଧୀ ଦଳ ନେତା ଭାବେ କାର୍ଯ୍ୟ ତୁଲାଇଥିଲେ । ଏହି ସମୟରେ ଏହି କ୍ୱାର୍ଟରଟି ତାଙ୍କୁ ମିଳିଥିଲା । ବିଜୁଙ୍କ ପସନ୍ଦ ଅନୁଯାୟୀ କ୍ୱାର୍ଟରର ବାହାର ପଟ ରଙ୍ଗ ଗାଢ଼ ଗେରୁଆ କରାଯାଇଥିଲା । ଝରକାରେ କଳା ରଙ୍ଗ ଲଗାଯାଇଥିଲା । ୧୯୯୦ରେ ବିଜୁ ମୁଖ୍ୟମନ୍ତ୍ରୀ ହେବା ପରେ କ୍ୱାର୍ଟରଟିରେ ମୁଖ୍ୟମନ୍ତ୍ରୀଙ୍କ ଆବାସିକ କାର୍ଯ୍ୟାଳୟ ହେଲା । ୧୯୯୫ରେ ବିଜୁ ରାଜ୍ୟ ବିଧାନସଭାରେ ବିରୋଧୀ ଦଳ ନେତା ହେଲେ । ପୁଣି କ୍ୱାର୍ଟରଟିର ସଂଜ୍ଞା ବଦଳି ଯାଇ ପୂର୍ବପରି ଏହା ବିରୋଧୀ ଦଳ ନେତାଙ୍କ ପାଇଁ ଉଦ୍ଦିଷ୍ଟ ହେଲା । ୧୯୯୬ରେ ବିଜୁ ଆସିକା ସାଂସଦ ଭାବେ ନିର୍ବାଚିତ ହେଲେ ଏବଂ ବିଧାନସଭାରୁ ଇସ୍ତଫା ଦେଲେ । ଏହାପରେ ମଧ୍ୟ ଏହି କ୍ୱାର୍ଟରଟିକୁ ସେ ବ୍ୟବହାର କରୁଥିଲେ । ବିଜୁଙ୍କ ମୃତ୍ୟୁ ପରେ କ୍ୱାର୍ଟରଟି ବହୁଦିନ ଧରି ଖାଲି ପଡ଼ିଥିଲା । ଚର୍ଚ୍ଚା ହେଲା କ୍ୱାର୍ଟରଟିରେ ବିଜୁ ପଟ୍ଟନାୟକ ମ୍ୟୁଜିୟମ ହେବ ବୋଲି । ପରବର୍ତ୍ତୀ ସମୟରେ ବହୁ ବଡ଼ବଡ଼ ଅଫିସର ଏହି କ୍ୱାର୍ଟରରେ ରହିବା ପାଇଁ ପ୍ରତିଯୋଗିତା ଆରମ୍ଭ କରିଦେଇଥିଲେ । ଏକଦା ବିରୋଧୀ ଦଳ ନେତା ସଚ୍ଚିଦାନନ୍ଦ ଦଳାଲ ଏହି କ୍ୱାର୍ଟରଟିକୁ ବିରୋଧୀ ଦଳ ନେତାଙ୍କ ସରକାରୀ କାର୍ଯ୍ୟ ପାଇଁ ଯୋଗାଇ ଦେବାକୁ ସରକାରଙ୍କ ନିକଟରେ ଦାବି ଜଣାଇଥିଲେ । କିନ୍ତୁ ଏ ସମ୍ପର୍କରେ ସରକାର ସେତେବେଳେ କୌଣସି ନିଷ୍ପତ୍ତି ନେଇ ନଥିଲେ । ଯେତେବେଳେ କ୍ୱାର୍ଟରଟିର ମରାମତି ହେଲା ସେତେବେଳେ ଜଣାପଡ଼ିଲା ଯେ ସେହି କ୍ୱାର୍ଟରଟିରେ ଅନ୍ୟ କେହି ରହିବେ ବୋଲି । କ୍ୱାର୍ଟରର ବାହାର ପଟେ ଦିଆଯାଇଥିବା ବିଜୁଙ୍କ ପ୍ରିୟ ଗାଢ଼ ଗେରୁଆ ରଙ୍ଗକୁ ବଦଳାଯାଇ ଧଳା ରଙ୍ଗ ଦିଆଗଲା । କ୍ୱାର୍ଟରଟିର ମରାମତି ଯେପରି ଯୁଦ୍ଧକାଳୀନ ଭିତିରେ ହେଲା ସେଥିରୁ ସ୍ପଷ୍ଟ ହୋଇଯାଇଥିଲା ଯେ, କେହି ଜଣେ ବଡ଼ ଆଇଏଏସ୍ ଅଫିସର କ୍ୱାର୍ଟରଟିରେ ରହିବେ ବୋଲି । ଅବଶ୍ୟ ପରବର୍ତ୍ତୀ ସମୟରେ ଜଣାପଡ଼ିଲା ମୁଖ୍ୟ ଶାସନ ସଚିବଙ୍କୁ ସେହି କ୍ୱାର୍ଟରଟି ମିଳିଛି । ଯାହା ହେଲେ ବି ବିଜୁ ରହିଥିବା କ୍ୱାର୍ଟରରେ ଯେକୌଣସି ବ୍ୟକ୍ତି ରହିଲେ ସେ ଆତ୍ମସନ୍ତୋଷ ପାଇବେ ହିଁ ପାଇବେ । ଏହାର କାରଣ ଆଉ କିଛି ନୁହେଁ । କାରଣ ହେଉଛି ପ୍ରବାଦ ପୁରୁଷ ବିଜୁ ପଟ୍ଟନାୟକ ଯେଉଁ କ୍ୱାର୍ଟରରେ ରହୁଥିଲେ ସେହି କ୍ୱାର୍ଟରରେ ସେ ରହୁଛନ୍ତି ବୋଲି । ଦେଖାଯାଉ ସର୍ଗରେ ଥିବା ବିଜୁ ଅତୀତରେ ରହୁଥିବା ତାଙ୍କ କ୍ୱାର୍ଟରରେ ବର୍ତ୍ତମାନ ରହୁଥିବା ଆଇଏଏସ୍ ଅଫିସରଙ୍କୁ କେଉଁ ଆଶିର୍ବାଦ ଦେଉଛନ୍ତି ।

## ଶବକୁ ନେଇ ଖେଳ

**ଶ**ବକୁ ନେଇ ଖେଳ । ଏହା ବୋଧହୁଏ କେହି ବିଶ୍ୱାସ କରିପାରିବେ ନାହିଁ । ୬ ନମ୍ବର ହସ୍ପିଟାଲର ଦୁଇଜଣ ବ୍ୟକ୍ତି ଜଣେ ମହିଳାଙ୍କ ଶବକୁ ନେଇ ଗୋଟିଏ ଟାକ୍ସିର 'ଡିକି'ରେ

ରଖିଥିଲେ । ଟାକ୍ସି ଡ୍ରାଇଭର ସହିତ ପୂର୍ବରୁ କଥାବାର୍ତ୍ତା ତୁଟିଥିଲା । ଶବଟି ଯିବ ଖୋର୍ଦ୍ଧା ନିକଟବ ୀଏକ ଗ୍ରାମକୁ । ଯିବା ଆସିବା ସମୁଦାୟ ୭୦ କି.ମି. ଭିତରେ । ଏମିତି ଟାକ୍ସିରେ ଗଲେ ଯଦି ୩୦୦ ଟଙ୍କା ଭିତରେ ଭଡ଼ା ଦେବାକୁ ପଡ଼େ ତେବେ ଶବ ନେଲେ ପାଖାପାଖି ୧୦୦୦ ଟଙ୍କା ଦେବାକୁ ହେବ । ପୂର୍ବରୁ ଭଡ଼ା ତୁଟିଥିଲା । କିନ୍ତୁ ଆଉ ଅଧିକ ଭଡ଼ା ପାଇଁ ଟାକ୍ସି ଡ୍ରାଇଭର ଜିଦ୍ ଧରିଥିଲା । ଶବକୁ ନେଉଥିବା ବ୍ୟକ୍ତି ଦୁଇଜଣଙ୍କ ମଧ୍ୟରେ ଜଣେ ମୃତ୍ୟୁବ୍ୟକ୍ତିର ଦିଅର ଏବଂ ଅନ୍ୟଜଣେ ପୁତୁରା । ରୋଗୀ ଜଣଙ୍କର ଅବସ୍ଥା ସାଂଘାତିକ ହେବାରୁ ହଠାତ୍ ସେମାନେ କ୍ୟାପିଟାଲ ହସ୍ପିଟାଲକୁ ରୋଗୀକୁ ଆଣିଥିଲେ । ସେଠାରେ ଉକ୍ତ ମହିଳା ରୋଗୀଙ୍କର ମୃତ୍ୟୁ ଘଟିଥିଲା । ଦିଅର ଓ ପୁତୁରା ଉଭୟଙ୍କ ପାଖରେ ପଇସା ନାହିଁ । ହଠାତ୍ ଏଭଳି ଏକ ଅଘଟଣ ହେବ ବୋଲି ସେମାନେ ଭାବି ବି ନଥିଲେ । ଗୋଟିଏ ପଟେ ଆଖିରୁ ଧାରଧାର ହୋଇ ଲୁହ ବୋହୁଥାଏ ଏବଂ ଅନ୍ୟପଟେ ଟାକ୍ସି ଡ୍ରାଇଭର ସହିତ ଭଡ଼ାକୁ ନେଇ ଯୁକ୍ତିତର୍କ ଚାଲିଥାଏ । ଏହି ଘଟଣାଟି ଡାକ୍ତରଖାନାକୁ ଯାଉଥିବା ବ୍ୟକ୍ତିଙ୍କ ଦୃଷ୍ଟି ଆକର୍ଷଣ କରିଥିଲା । ବହୁ ବ୍ୟକ୍ତି ସେଠାରେ ଜମା ହୋଇଥିଲେ । ସଂଧ୍ୟା ୫ଟାରୁ ରାତି ୧୨ଟା ପର୍ଯ୍ୟନ୍ତ ଦୀର୍ଘ ୭ ଘ ।ଧରି ଶବକୁ ନେଇ ଏପରି ଖେଳ ଚାଲିଲା । ଅସହାୟ ଅବସ୍ଥାରେ ଥିବାବେଳେ ୧୨୦୦ ଟଙ୍କା ଟାକ୍ସି ଭଡ଼ା ଦେବେ ବୋଲି ତୁଟିଲା । କିନ୍ତୁ ଟାକ୍ସି ଡ୍ରାଇଭର ସେମାନଙ୍କୁ ସବୁ ଟଙ୍କା ଅଗ୍ରୀମ ମାଗିଲା । ସେତେବେଳକୁ ସେମାନଙ୍କ ନିକଟରେ ମାତ୍ର ୩୦୦ ଟଙ୍କା ଥିବାରୁ ଅବଶିଷ୍ଟ ଟଙ୍କା ଗ୍ରାମରେ ଦେବେ ବୋଲି କହି ଶବକୁ ନେବା ପାଇଁ ଅନୁରୋଧ କରିଥିଲେ । କିନ୍ତୁ ୧୨୦୦ ଟଙ୍କା ନଦେଲେ ଟାକ୍ସିର ଚକା ଇଂଚେ ବି ଘୁଂଚିବ ନାହିଁ ବୋଲି ଡ୍ରାଇଭର ରୋକ୍‌ଠୋକ୍ ଶୁଣାଇ ଦେଇଥିଲା । ଏହାପରେ ସେମାନେ ଟଙ୍କା ଧାର କରିବା ପାଇଁ ଚିହ୍ନା ପରିଚୟ ଲୋକଙ୍କୁ ଖୋଜି ବୁଲିଲେ । ରାତି ଗୋଟାଏ ହେଲାଣି । କିନ୍ତୁ କୌଣସି ଚିହ୍ନାପରିଚୟ ବ୍ୟକ୍ତିଙ୍କୁ ସେମାନେ ପାଇଲେ ନାହିଁ । ଏହାପରେ ସେମାନେ ଟାକ୍ସି ନିକଟକୁ ଫେରିଲେ । ସେଠାରେ ଟାକ୍ସି ନଥିଲା । କିନ୍ତୁ ଶବଟି ତଳେ ପଡ଼ିଥିଲା । ଏହା ହେଉଛି ରାଜଧାନୀ ଭୁବନେଶ୍ୱରର ଜୀବନ ।

# ୫ ହଜାର ଦିନ ଛୁଟି

**ସ**ରକାରୀ ହେଉ କି ବେସରକାରୀ ହେଉ କର୍ମଚାରୀଟିଏ ବିନା ଦରଖାସ୍ତରେ ୫ ହଜାର ଦିନ ଅର୍ଥାତ୍ ୧୪ ବର୍ଷରୁ ଅଧିକ ସମୟ ଛୁଟିରେ ରହିପାରିବେ କି ବୋଲି ଯଦି ପ୍ରଶ୍ନ କରାଯାଏ ତେବେ ଏହାର ଉତର ସିଧାସଳଖ 'ନା' ହେବ । ଏହା କିନ୍ତୁ ଭୁବନେଶ୍ୱର ମହାନଗର ନିଗମରେ ସମ୍ଭବ । ପୁଣି ଯେଉଁ କର୍ମଚାରୀ ଏଭଳି ୧୪ ବର୍ଷରୁ ଅଧିକ ସମୟ ଛୁଟିରେ ଅଛନ୍ତି ତାଙ୍କ ବିରୋଧରେ କର୍ତ୍ତୃପକ୍ଷ ମଧ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନାହାନ୍ତି ।

ଫାଇଲ୍ ଖୋଲାଉ ଖୋଲାଉ ହଠାତ୍ ଜଣେ କର୍ମଚାରୀ ୫ ହଜାର ଦିନ ଛୁଟିରେ ଥିବାର ଦେଖାଯାଇଥିଲା । ଏତେଦିନ ଧରି ଜଣେ କର୍ମଚାରୀଙ୍କୁ କିପରି ଛୁଟି ଦିଆଗଲା ସେ ସମ୍ପର୍କରେ ଖୋଳତାଡ଼ ହେଲା । ଜଣାପଡ଼ିଲା ଯେ, ସେହି କର୍ମଚାରୀ ଜଣଙ୍କ ଛୁଟିରେ ନାହାଁନ୍ତି । ବିନା ଦରଖାସ୍ତରେ ସେ ଅନୁପସ୍ଥିତ ରହିଛନ୍ତି । ଏହାପରେ ଦୀର୍ଘଦିନ ଧରି ଅନୁପସ୍ଥିତ ଥିବା କର୍ମଚାରୀଙ୍କ ସମ୍ପର୍କରେ ଫାଇଲ୍ ମଗାଗଲା । ଆଳୁ ଖୋଳୁଖୋଳୁ ମହାଦେବ ବାହାରିବା ପରି ପ୍ରସଙ୍ଗଟି ହେଲା । ଜଣେ କର୍ମଚାରୀ ୫ ହଜାରରୁ ଅଧିକ ଦିନ ଏବଂ ଆଉ ଜଣେ କର୍ମଚାରୀ ୩ ହଜାରରୁ ଅଧିକ ଦିନ ଅନୁପସ୍ଥିତ ଥିବାର ଦେଖାଗଲା । ଆହୁରି କେତେଜଣ କର୍ମଚାରୀ ଏପରି ଅନୁପସ୍ଥିତ ଥାଇପାରନ୍ତି ବୋଲି ସନ୍ଦେହ ମଧ୍ୟ ହେଲା । ମାନିବାକୁ ପଡ଼ିବ ଭୁବନେଶ୍ୱର ମହାନଗରକୁ ଏଭଳି ଢିଲା ପ୍ରଶାସନ ପାଇଁ ।

# ଚିକେନ୍ ବାବା

**ଚି**କେନ୍ ବାବା କାହାକୁ କୁହାଯାଏ ସେ ସମ୍ପର୍କରେ ଅଧିକ ବର୍ଣ୍ଣନା କରିବା ଦରକାର ନାହିଁ । ସମସ୍ତେ ଜାଣନ୍ତି ଚିକେନ୍ ବାବା କହିଲେ ସାଂସଦ ପ୍ରସନ୍ନ ପାଟଶାଣୀଙ୍କୁ ହିଁ ବୁଝାଏ । ପ୍ରସନ୍ନ ପାଟଶାଣୀଙ୍କ ମୁହଁରେ ଦାଢ଼ି, ହାତରେ ବାଡ଼ି ପୁଣି ଲମ୍ବା ବାଳ ଆଉ ଗେରୁଆ ବସ୍ତ୍ର ପରିଧାନ କରୁଥିବା ବେଳେ ସେ କୁଆଡ଼େ ବାବାଙ୍କ ପରି ନିରାମିଷ ନଖାଇ ଚିକେନ୍ ଖାଉଥିବାରୁ ତାଙ୍କର ନାମକରଣ ଏହିପରି ହୋଇଛି । ବିଜୁ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ମନ୍ତ୍ରୀ ଥିବା ସମୟରେ ତାଙ୍କର ନାମ ଚିକେନ୍ ବାବା ଭାବେ ଚାରିଆଡ଼େ ବ୍ୟାପିଗଲା । ସେତେବେଳେ କିନ୍ତୁ ସେ ଏହାର ପ୍ରତିବାଦ କରି ନଥିଲେ । ପ୍ରସନ୍ନ ପାଟଶାଣୀ ଶିଶୁ ଶ୍ରମିକ ଉପରେ ଆୟୋଜିତ ଏକ ଆଲୋଚନା ଚକ୍ରରେ ହଠାତ୍ ଭାବବିହ୍ୱଳ ହୋଇ ନିଜ ସମ୍ପର୍କରେ କହିଲେ । ସେ ହେଉଛନ୍ତି ଶାକାହାରି । ମାନେ ଆମିଷ ଛୁଅନ୍ତି ନାହିଁ । ତେଣୁ ଚିକେନ୍ ଖାଇବାର ପ୍ରଶ୍ନ ଆଦୌ ଉଠୁନାହିଁ । କିନ୍ତୁ ତାଙ୍କ ପାଇଁ ପରିତାପର ବିଷୟ ହେଉଛି ଯେ, ତାଙ୍କୁ ଚିକେନ୍ ବାବା ବୋଲି ଡକାଯାଉଛି । ଦୀର୍ଘ ୧୦ ବର୍ଷରୁ ଅଧିକ ସମୟ ଧରି ଚିକେନ୍ ବାବା ନାମକୁ ନେଇ ପ୍ରସନ୍ନ ପାଟଶାଣୀ ଆନନ୍ଦ ଅନୁଭବ କରୁଥିବା ବେଳେ ଏବେ ଏହି ନାମ ପ୍ରତି ହଠାତ୍ ସେ କାହିଁକି ବିମୁଖ ହେଉଛନ୍ତି ତାହାର କାରଣ ଖୋଜିବାକୁ ହେବ ।

# ଗଜପତିଙ୍କ ଗୁହାରୀ

**ସ**ମୟ ଥିଲା ଯେତେବେଳେ ପୁରୀ ମହାରାଜା ତଥା ଗଜପତିଙ୍କୁ ପ୍ରଜାମାନେ ଗୁହାରୀ କରୁଥିଲେ । ଏବେ କିନ୍ତୁ ଖୋଦ୍ ଗଜପତି ଗୁହାରୀ କରୁଛନ୍ତି । ପୁରୀ ଗଜପତି ଦିବ୍ୟସିଂହ ଦେବ ଖୋର୍ଦ୍ଧା ଜିଲାପାଳଙ୍କୁ ଗୁହାରୀ କରିଛନ୍ତି । ତାଙ୍କର ଗୁହାରୀ ହେଲା ରାଜଧାନୀ

ଭୁବନେଶ୍ୱର ସହିଦନଗରର ୨୬ ନମ୍ବର ପ୍ଲଟ୍‌ଟି ତାଙ୍କର । ଏହାର ସମ୍ମୁଖରେ ଥିବା ୨୨ ନମ୍ବର ପ୍ଲଟ୍‌ରେ 'ସିଟେଜେନ୍‌ସ କ୍ଲବ' ଚାଲିଛି । କ୍ଲବ୍‌କୁ ଖୋଲା ଠିପି ମଦ ବ୍ୟବସାୟ ପାଇଁ ଲାଇସେନ୍ସ ଦିଆଯାଇଛି । ପ୍ରଭୁ ଜଗନ୍ନାଥଙ୍କର ପ୍ରଥମ ସେବକ ହେଉଛନ୍ତି ପୁରୀ ମହାରାଜା ତଥା ଗଜପତି । ତାଙ୍କ ବାସଗୃହ ସମ୍ମୁଖରେ ମଦ କାରବାର ହେଲେ ତାହା ତାଙ୍କୁ ଦୁଃଖ ଦେବ ହିଁ ଦେବ । ଏହା ତାଙ୍କ ଘରର ପବିତ୍ରତା ନଷ୍ଟ କରିବ । ସେହି ଅଂଚଳରେ ଏହି ମଦ କାରବାର ପାଇଁ ଅନୁମତି ନଦେବା ପାଇଁ ଗଜପତି ଖୋର୍ଦ୍ଧା ଜିଲ୍ଲାପାଳଙ୍କ ମାଧ୍ୟମରେ ରାଜ୍ୟ ସରକାରଙ୍କୁ ଗୁହାରୀ ଜଣାଇଛନ୍ତି । ପୂର୍ବରୁ ପ୍ରଜାମାନଙ୍କ ଗୁହାରୀ ଶୁଣୁଥିବା ପୁରୀ ମହାରାଜାଙ୍କ ଗୁହାରୀ ଶୁଣିବାକୁ ରାଜ୍ୟ ସରକାରଙ୍କୁ କେତେ ଦିନ ଲାଗୁଛି ତାହା ଜଣାନାହିଁ । କିନ୍ତୁ ଗଜପତିଙ୍କୁ ଜାଣିବାକୁ ହେବ ଯେ ସେ ଜଗନ୍ନାଥଙ୍କର ପ୍ରଥମ ଭକ୍ତ ହୋଇଥିଲେ ମଧ୍ୟ ସରକାରଙ୍କର ଭକ୍ତ ହେବାକୁ ପଡ଼ିବ । ଏହା ହେଲେ ହିଁ ସମସ୍ୟା ସମାଧାନ ହେବ ।

# ଜାନକୀଙ୍କ ପଶାଖେଳ

**ଗୋ**କୁଳାନନ୍ଦ ଗ୍ରନ୍ଥାବଳୀ ଉନ୍ମୋଚନ ଉତ୍ସବରେ ଭାଷଣ ଦେଉଥିବାବେଳେ ପୂର୍ବତନ ମୁଖ୍ୟମନ୍ତ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ ପଶାଖେଳ ସମ୍ପର୍କରେ ସୂଚନା ଦେଇ କହିଥିଲେ- ତାଙ୍କ ପିତା ଗୋକୁଳାନନ୍ଦ ପଟ୍ଟନାୟକଙ୍କର ପଶାଖେଳ ପ୍ରତି ଭାରି ଦୁର୍ବଳତା ଥିଲା । କେବଳ ଯେ ତାଙ୍କ ବାପା ଗୋକୁଳାନନ୍ଦ ପଶା ଖେଳୁଥିଲେ ତାହା ନୁହେଁ । ତାଙ୍କର ମଧ୍ୟ ପଶାଖେଳ ଅତି ପ୍ରିୟ ଥିଲା । ଏବେ କିନ୍ତୁ ସେ ପଶାଖେଳ ଛାଡ଼ି ଦେଇଛନ୍ତି । ପଶାଖେଳ ସମ୍ପର୍କରେ ଜାନକୀଙ୍କ ଏହି ବକ୍ତବ୍ୟ ସେଦିନ ଶ୍ରୋତା ମହଲରେ ବେଶ୍ ଆଦୃତ ହୋଇଥିବାର ଦେଖାଯାଇଥିଲା । ଦର୍ଶକମାନଙ୍କର ତାଳି ମାଡ଼ରେ ସଭାସ୍ଥଳ କମ୍ପି ଉଠିଥିଲା । ଆଗଧାଡ଼ିରେ ବସିଥିବା ଜଣେ ବରିଷ୍ଠ ନେତା ଜାନକୀଙ୍କ ଏହି ଭାଷଣ ଶୁଣି ଲଘୁ ମନ୍ତବ୍ୟଟିଏ ଦେଇଥିଲେ । ସେ ତାଙ୍କ ପାଖରେ ବସିଥିବା ଅନ୍ୟ ନେତାମାନଙ୍କୁ ଫୁସ୍‌ଫୁସ୍ କରି କହିଥିଲେ- ଜାନକୀ ଏବେ ରାଜନୈତିକ ପଶାପାଲିରେ ଗୋଟିଚାଳନା କରିବାରେ ସିଦ୍ଧହସ୍ତ । ମାନେ ଜାନକୀ ଜୀବନ୍ତ ପଶାଖେଳ ଖେଳୁଛନ୍ତି । ଜାନକୀଙ୍କ ପଶାଖେଳ ନିଶା ପ୍ରତି ସଂପୃକ୍ତ ନେତାଙ୍କ ଦୁଇଧାଡ଼ିଆ ଟିପ୍ପଣୀଟି ସେଠାରେ ଥିବା କଂଗ୍ରେସ ନେତାଙ୍କ ମନକୁ ବେଶ୍ ଛୁଇଁଥିଲା । ସମସ୍ତେ ଜୋରରେ ତାଳି ମାରିଥିଲେ ।

# ଚିହ୍ନିଛ

**ଭୁ**ବନେଶ୍ୱରର ମାଷ୍ଟରକ୍ୟାଂଟିନ୍ ଛକଠାରେ ଏକ ମହିଳାଙ୍କୁ ବିଚଳିତ ଅବସ୍ଥାରେ ଦେଖିବାକୁ ମିଳିଥିଲା । ମହିଳାଙ୍କର ବେଶଭୂଷାରୁ ଜଣାପଡୁଥିଲା ଯେ ସେ ଗ୍ରାମାଂଚଳରୁ

ଆସିଛନ୍ତି ବୋଲି । ତାଙ୍କ ହାତରେ ଜଣେ ସୁଦର୍ଶନ ଯୁବକଙ୍କ ଫଟୋ ଥିଲା । ମହିଳାଙ୍କ ଘର ଏକ ଜଙ୍ଗଲ ଅଂଚଳରେ ବୋଲି ସେ କହୁଥିଲେ । ଯାହାର ଫଟୋଟିକୁ ସେ ଧରିଛନ୍ତି ସେ କୁଆଡ଼େ ଜଣେ ବଡ଼ ଅଫିସର । ଦୁଇବର୍ଷ ତଳେ ଏହି ଅଫିସର ଜଣକ ତାଙ୍କ ଅଂଚଳକୁ ଯାଇଥିଲେ । ତାଙ୍କ ଘରେ ସେ କିଛିଦିନ ପାଇଁ ରହିଥିଲେ । ଗାଁ ଠାକୁରାଣୀଙ୍କ ନିକଟରେ ତାଙ୍କ ବେକରେ ଫୁଲମାଳ ଦେଇ ସେ ତାଙ୍କୁ ବିବାହ କରିଥିଲେ । ତାଙ୍କ ଘରେ କିଛିଦିନ ରହିବା ପରେ ସେ ଭୁବନେଶ୍ୱର ଫେରି ଆସିଥିଲେ । ଦୁଇବର୍ଷ ହେଲାଣି ଏହି ଅଫିସର ଜଣକ ତାଙ୍କ ପାଖକୁ ଯାଇନାହାନ୍ତି । ଏବେ ସେ ବାଧ ହୋଇ ତାଙ୍କୁ ଖୋଜିବାକୁ ରାଜଧାନୀ ଭୁବନେଶ୍ୱରକୁ ଆସିଛନ୍ତି । ସେଠାରେ ଥିବା କିଛିଲୋକ ମହିଳାଙ୍କ ହାତରୁ ଫଟୋଟି ନେଇ ଦେଖିଲେ । କିନ୍ତୁ ତାଙ୍କୁ କେହି ଚିହ୍ନି ନାହାନ୍ତି ବୋଲି କହିଲେ । ମହିଳା ଜଣଙ୍କ କିନ୍ତୁ ନିଜ ଗାଁକୁ ନଫେରି ରାଜଧାନୀ ଭୁବନେଶ୍ୱରର ବିଭିନ୍ନ ଅଂଚଳରେ ବୁଲି ସେହି ଅଫିସରଙ୍କୁ ଖୋଜୁଥିବାର ଦେଖାଗଲା । ସବୁଆଡ଼େ ସେ ସେହି ଫଟୋଟିକୁ ଦେଖାଇ ଚାଲିଲେ । ଯେମିତି ହେଲେ ସେ ସେହି ଅଫିସରଙ୍କୁ ଖୋଜିବେ ଆଉ ତାଙ୍କୁ ସାଥୀରେ ଗାଁକୁ ନେଇ ଯିବେ ବୋଲି ମହିଳା ଜଣଙ୍କ ଜିଦ୍ ଧରିଥିଲେ । ତେବେ ରାଜଧାନୀର ବାବୁମାନେ ଏମିତି ଟୁର୍‌ରେ ଯାଇ କେତେ ମହିଳାଙ୍କୁ ବିବାହ କରନ୍ତି ତାହା ବୋଧହୁଏ ଏହି ମହିଳାଙ୍କର ଧାରଣା ନାହିଁ । ଯଦି ଧାରଣା ଥା'ନ୍ତା ତେବେ ସେ ରାଜଧାନୀ ଭୁବନେଶ୍ୱରକୁ ସେହି ବାବୁଙ୍କୁ ଖୋଜିବା ପାଇଁ ଆସି ନଥା'ନ୍ତେ ।

# ଭିକାରୀଙ୍କ ବଦଳି

**ଭି**କାରୀମାନେ ତ ଚାକିରି କରନ୍ତି ନାହିଁ । ତେଣୁ ତାଙ୍କର ବଦଳି ହେବାର ନାହିଁ । କିନ୍ତୁ ରାଜଧାନୀ ଭୁବନେଶ୍ୱରରେ ଥିବା ଭିକାରୀଙ୍କ ପ୍ରସଙ୍ଗ ଅଲଗା । ଏଠାରେ ସତେ ଯେମିତି ଭିକାରୀମାନେ ଚାକିରି କରିଛନ୍ତି । ବିଭିନ୍ନ ବସ୍ତିରେ ଏହି ଭିକାରୀମାନେ ରହନ୍ତି । ଏମାନଙ୍କର ମଧ ଏକ ସଂଘ ଅଛି । ବିଭିନ୍ନ ମନ୍ଦିର, ଷ୍ଟେସନ, ବସ୍‌ଷ୍ଟାଣ୍ଡ, ଛକ ସ୍ଥାନରେ ଏମାନେ ଭିକ୍ଷା କରିଥା'ନ୍ତି । ପର୍ବପର୍ବାଣୀ ସମୟରେ ଲିଙ୍ଗରାଜ ମନ୍ଦିର, ରାମ ମନ୍ଦିର, ଇସ୍‌କନ୍ ମନ୍ଦିର ସମ୍ମୁଖରେ ଏମାନେ ବହୁ ଟଙ୍କା ମଧ ଭିକ୍ଷା ସ୍ୱରୂପ ପାଇଥା'ନ୍ତି । ତେବେ ରାଜଧାନୀରେ ବହୁ ମନ୍ଦିର ଥିଲେ ମଧ ହାତଗଣତି କେତେକ ମନ୍ଦିରରେ ଭିକାରୀମାନେ ଅଧିକ ଟଙ୍କା ପାଇଥା'ନ୍ତି । ତେଣୁ ସେହି ମନ୍ଦିର ସମ୍ମୁଖରେ ବସିବା ପାଇଁ ଭିକାରୀଙ୍କ ମଧରେ ପ୍ରତିଯୋଗିତା ଆରମ୍ଭ ହୋଇଯାଏ । ଏହି ପ୍ରତିଯୋଗିତା ସମ୍ପର୍କରେ ସଂଘ ଦୃଷ୍ଟିକୁ ଆସିଲା । ଏହାପରେ ସଂଘ ପକ୍ଷରୁ ଭିକାରୀଙ୍କ ପ୍ରତି ବଦଳି ନୀତି ଲାଗୁ ହେଲା । ଜଣେ ଭିକାରୀ ଗୋଟିଏ ସ୍ଥାନରେ ସବୁବେଳେ ଭିକ୍ଷା ମାଗିପାରିବ ନାହିଁ । ଆଉ କାହାକୁ କେଉଁ

ସ୍ଥାନକୁ ବଦଳି କରାଯିବ ସେ ସମ୍ପର୍କରେ ସଂଘ ନିଷ୍ପତି ନେବ । ଯାହା ହେଉ ଚାକିରି ନକରି ମଧ୍ୟ ରାଜଧାନୀର ଭିକାରୀମାନେ ଚାକିରିଆଙ୍କ ଭଳି ବଦଳି ହେଉଛନ୍ତି ।

## ଛଅଶହ ନୁହେଁ ଦୁଇଶହ

ଏହି ଘଟଣାଟି ଗିରିଧର ଗମାଙ୍ଗ ମୁଖ୍ୟମନ୍ତ୍ରୀ ହେବା ପରେପରେ । ସେତେବେଳେ ବରମୁଣ୍ଡାରେ ଥିବା ଏକ ଘରେ ଗିରିଧର ରହୁଥିଲେ । ସେହି ବାସଭବନରେ ଉଠିଥିବା ଅନାବନା ଗଛକୁ ସଫା କରିବା ପାଇଁ ଶ୍ରୀଧର ନାମକ ଜନୈକ ଦିନ ମଜୁରିଆ ସେଠାରେ ପହଂଚିଥିଲା । ଆଉ ତାକୁ ଘରର ବାଡ଼ି ସଫା କରିବା ପାଇଁ କୁହାଯାଇଥିଲା । ଶ୍ରୀଧର ପ୍ରାୟ ତିନିଘଂଟା ଭିତରେ ତାର କାମ ସାରିଦେଇଥିଲା । ମୁଖ୍ୟମନ୍ତ୍ରୀଙ୍କ ଘର ହୋଇଥିବାରୁ ଏହି ତିନି ଘଂଟାର କାମ ପାଇଁ ତାକୁ ଅତିବେଶୀରେ ପଚାଶ ଟଙ୍କା ମିଳିବ ବୋଲି ସେ ଭାବିଥିଲା । ମୁଖ୍ୟମନ୍ତ୍ରୀଙ୍କ ଘରେ ଥିବା ଜନୈକ କର୍ମଚାରୀ ତାକୁ ଟଙ୍କା ଦେବା ପାଇଁ ଡାକି ଏକ କାଗଜରେ ଦସ୍ତଖତ କରିବାକୁ କହିଲେ । ଶ୍ରୀଧର ଆଗପଛ ନଭାବି ଦସ୍ତଖତ କରିଦେଲା । ଏହାପରେ କର୍ମଚାରୀ ଜଣକ ତାକୁ ଦୁଇଶହ ଟଙ୍କା ଦେଲେ । ସେତେବେଳେ ଶ୍ରୀଧର ଆଶ୍ଚର୍ଯ୍ୟ ହୋଇଯାଇଥିଲା । ଏତେ ଟଙ୍କା ତାକୁ ମିଳିବ ବୋଲି ସେ ଭାବି ନଥିଲା । ଟଙ୍କା ପାଇ ଶ୍ରୀଧର ଆନନ୍ଦରେ ଉତ୍‌ଫୁଲିତ ହୋଇଯାଇଥିଲା । ତେବେ ସେହି ସ୍ଥାନ ଛାଡ଼ିବା ପୂର୍ବରୁ ଶ୍ରୀଧର ଦସ୍ତଖତ କରିଥିବା କାଗଜଟିକୁ ଚାହିଁଲା । ସେଥିରେ ସେ ଛଅଶହ ଟଙ୍କା ନେଇଛି ବୋଲି ଲେଖାଯାଇଥିଲା । ଶ୍ରୀଧର ସେଥିପ୍ରତି ଗୁରୁତ୍ୱ ଦେଇ ନଥିଲା । ଦୁଇଶହ ଟଙ୍କା ପାଇବ ବୋଲି ସେ ଭାବି ନଥିଲା । ବାକି ଚାରିଶହ ଟଙ୍କା ଯିଏ ନିଅନ୍ତୁ ସେଥିରେ ତା'ର କିଛି ଯାଏଆସେ ନାହିଁ । ଟଙ୍କା ଦେଇଥିବା ବ୍ୟକ୍ତିଙ୍କୁ ଶ୍ରୀଧର ନମସ୍କାର କଲା ଆଉ କେତେବେଳେ କାମ ହେଲେ ଡାକିବେ ବୋଲି କହିଆସିଲା । ଏମିତି ଚାଲିଛି ରାଜଧାନୀରେ କାରବାର । ମାନେ ମୂଲିଆ ଖୁସ୍ ଆଉ ବାବୁଙ୍କ ଠାରୁ ଟଙ୍କା ଆଣି ମୂଲିଆଙ୍କୁ ଦେଉଥିବା ଲୋକ ବି ଖୁସ୍ । ଯାହା ହେଲେ ରାଜଧାନୀର ପାଣିପବନଟି ।

## ନାଚୁଆ ବର

ବାହା ହେବାକୁ ଯାଉଥିବା ବର ଯେ ବରଯାତ୍ରୀ ଗହଣରେ ନାଚିନାଚି ବେଦୀକୁ ଯାଉଥିବ ଏହା କେହିବି ଭାବିପାରିବେ ନାହିଁ । କିନ୍ତୁ ଏଭଳି ଘଟଣା ରାଜଧାନୀ ଭୁବନେଶ୍ୱରରେ ଦେଖିବାକୁ ମିଳୁଛି । କଳ୍ପନାଛକ ନିକଟରେ ବରଯାତ୍ରୀମାନେ ଝାଳନାଳ ହୋଇ ନାଚୁଥା'ନ୍ତି । କାର୍‌ରେ ବସିଥିବା ବର ଏହି ନାଚକୁ ବେଶ୍ ଉପଭୋଗ କରୁଥିଲେ । ହଠାତ୍ ନାଚୁଥିବା କେତେକ ଯୁବକ ବରକୁ କାର୍ ମଧ୍ୟରୁ ବାହାରକୁ

ଟାଣି ନେଲେ । ଏଥିରେ ବର ବିରକ୍ତ ଭାବ ପ୍ରକାଶ କରିବା ପରିବର୍ତ୍ତେ ବରଂ ଉତ୍‌ଫୁଲ୍ଲିତ ହୋଇଥିଲେ । ନାଚୁଆ ବରଯାତ୍ରୀଙ୍କ ସହ ବର ଜଣକ ସାମିଲ ହୋଇଯାଇଥିଲେ । ବ୍ୟାଣ୍ଡ ବାଜାର ତାଳେତାଳେ ସେ ନାଚି ଚାଲିଥିଲେ । ଏଭଳି ନାଚକୁ କାର୍ ଭିତରେ ଥିବା ବରର ବାପା ସହଜରେ ଗ୍ରହଣ କରି ନଥିଲେ । ବରକୁ ସେ ନାଲି ଆଖି ଦେଖାଇ କାର୍ ଭିତରକୁ ଆସିବା ପାଇଁ ନିର୍ଦ୍ଦେଶ ଦେଉଥିଲେ । କିନ୍ତୁ ବରକୁ ସେତେବେଳେ ନୃତ୍ୟ ନିଶା ଘାରିଥିଲା । ଏହି ସମୟରେ ନାଚରେ ମସ୍‌ଗୁଲ୍ ହୋଇଯାଇଥିବା ବରଯାତ୍ରୀମାନେ ବରର ବାପାଙ୍କୁ ମଧ୍ୟ ନାଚିବା ପାଇଁ କାର୍ ମଧ୍ୟରୁ ବାହାରକୁ ଟାଣି ନେଇଥିଲେ । ସେତେବେଳେ ବରର ବାପାଙ୍କ ରାଗ ପଂଚମରେ ପହଂଚି ଯାଇଥିଲେ ମଧ୍ୟ ସେ ତାହାକୁ ବାହାରେ ପ୍ରକାଶ କରିପାରୁ ନଥିଲେ । ଅନ୍ୟପଟେ ନାଚରେ ମସ୍‌ଗୁଲ୍ ହୋଇଥିବା ବରଯାତ୍ରୀମାନେ ମଧ୍ୟ ତାଙ୍କୁ ଛାଡୁ ନଥିଲେ । ପରିସ୍ଥିତିକୁ ସ୍ୱାଭାବିକ ଆଡ଼କୁ ଆଣିବା ପାଇଁ ବରର ବାପା ବରଯାତ୍ରୀଙ୍କ ସହିତ କିଛି ସମୟ ପାଇଁ ନାଚିଥିବାର ଦେଖାଗଲା । ରାତି ଆଠଟା ସମୟର ଏହି ଘଟଣାଟି ରାଜଧାନୀର ପଥଚାରୀଙ୍କୁ ବେଶ୍ ଆମୋଦିତ କରିଥିଲା ।

## ଗମାଙ୍ଗଙ୍କ ନିଦ

ମୁଖ୍ୟମନ୍ତ୍ରୀ ଭାବେ ଗିରିଧର ଗମାଙ୍ଗ ଦାୟିତ୍ୱ ନେବାର କିଛିଦିନ ପରର ଘଟଣା । ଦେଖାଗଲା ଫାଇଲ କାମ କରିବା ସମୟରେ ଗିରିଧର ସମୟେ ସମୟେ ଘୁମେଇ ପଡୁଛନ୍ତି । କ୍ଲାନ୍ତ ଯୋଗୁ ଏହି ନିଦ ତାଙ୍କୁ ଆସିଯାଉଛି ବୋଲି ଅଫିସରମାନେ ପ୍ରଥମେ ଭାବୁଥିଲେ । ସେଦିନ ମୁଖ୍ୟମନ୍ତ୍ରୀଙ୍କ ସରକାରୀ ବାସଭବନକୁ ଅଫିସରମାନେ ଦସ୍ତଖତ କରିବାକୁ ଫାଇଲ ନେଇ ଯାଇଥିଲେ । ଫାଇଲ କାମ ଆରମ୍ଭ ହେଲା । ଗିରିଧର ଗମାଙ୍ଗ କେତୋଟି ଫାଇଲରେ ଦସ୍ତଖତ କରିବା ପରେ ଦେଖାଗଲା ହଠାତ୍ ସେ ଶୋଇ ପଡ଼ିଲେ । ଅଫିସରମାନେ ଭାବିଲେ କ୍ଲାନ୍ତ ହୋଇଥିବା ଯୋଗୁ ମୁଖ୍ୟମନ୍ତ୍ରୀ ଗିରିଧର ଗମାଙ୍ଗଙ୍କୁ ନିଦ ଆସିଯାଉଛି ବୋଲି । ପୂର୍ବରୁ ମଧ୍ୟ ଫାଇଲ କାମ ବେଳେ ଗିରିଧର ଗମାଙ୍ଗ ଏଭଳି ଶୋଇ ପଡୁଥିବାର ଦେଖିବାକୁ ମିଳିଥିଲା । ମୁଖ୍ୟମନ୍ତ୍ରୀଙ୍କ ନିଦ୍ରାରେ ବ୍ୟାଘାତ ସୃଷ୍ଟି ନକରି ଅଫିସରମାନେ ଫାଇଲକୁ ସାଥିରେ ଧରି ସେଠାରୁ ବାହାରକୁ ଚାଲି ଆସିଥିଲେ । ହଠାତ୍ ଦେଖାଗଲା ଗିରିଧର ଗମାଙ୍ଗ ମଧ୍ୟ ଅଫିସରଙ୍କ ପଛେପଛେ ବାହାରକୁ ଚାଲି ଆସିଲେ । ବାହାରେ ଥିବା କେତେକ ଆଦିବାସୀ ଲୋକଙ୍କ ସହିତ ସେ ହସଖୁସି ହେଲେ । ଫାଇଲ କାମ ସମୟରେ ମୁଖ୍ୟମନ୍ତ୍ରୀଙ୍କୁ ହଠାତ୍ ନିଦ ଆସିଯିବା ଏବଂ ଫାଇଲ ଚାଲିଯିବା ପରେ ମୁଖ୍ୟମନ୍ତ୍ରୀଙ୍କ ନିଦ ସଙ୍ଗେସଙ୍ଗେ ଭଙ୍ଗ ହେବାର ରହସ୍ୟ ସମ୍ପର୍କରେ କେହି ଜାଣିପାରିଲେ

ନାହିଁ । ତେବେ ନିଜେ ଗିରିଧର ଏହି ରହସ୍ୟକୁ ଖୋଲି ଦେଇଥିଲେ। କୁଆଡ଼େ ଅଫିସରମାନେ ତାଙ୍କୁ ଭୁଆଁ ବୁଲାଇ ଫାଇଲରେ ଦସ୍ତଖତ କରିନେବାକୁ ଯେତେବେଳେ ଚାହୁଁଛନ୍ତି ସେହି ସମୟରେ ତାଙ୍କୁ ହଠାତ୍ ନିଦ ଆସିଯାଉଛି । ତା'ମାନେ ନିଦ ଆସିଯିବାର ବାହାନା ଗିରିଧର କରିଥା'ନ୍ତି । ଆଉ ଅଫିସରମାନେ ସେହି ଫାଇଲରେ ତାଙ୍କ ଠାରୁ ଦସ୍ତଖତ ନେଇପାରନ୍ତି ନାହିଁ । ମାନିବାକୁ ପଡ଼ିବ ଗିରିଧରଙ୍କୁ । ଅଫିସରଙ୍କୁ କିପରି ହଳ କରାଯାଏ ସେହି ବିଦ୍ୟାଟି ତାଙ୍କୁ ବେଶ୍ ମାଲୁମ୍ ।

# ଯୁଦ୍ଧ ଏବଂ ରାମକିଶାନ୍

**ରା**ମକିଶାନଙ୍କ ଘର ବିହାର ଅଂଚଳରେ । ସେ କାମ କରୁଥିଲେ ପ୍ରତିରକ୍ଷା ବାହିନୀରେ । ୧୯୬୭ ମସିହା ବେଳକୁ ସେ ତାଙ୍କର ଜନୈକ ସହକର୍ମୀଙ୍କ ସହିତ ଓଡ଼ିଶା ଆସନ୍ତି ବୁଲିବାକୁ । ଅବିଭକ୍ତ ପୁରୀ ଜିଲ୍ଲାର ସରପାରି ହେଉଛି ଏହି ସହକର୍ମୀଙ୍କ ଘର । ରାମକିଶାନ ଅବିବାହିତ ଥିଲେ ଏବଂ ତାଙ୍କ ପରିବାରରେ କେହି ସଦସ୍ୟ ନଥା'ନ୍ତି । କିଛିଦିନ ମଧରେ ସମଗ୍ର ଗ୍ରାମବାସୀଙ୍କୁ ସେ ତାଙ୍କର ଆପଣାର କରିଦେଇଥିଲେ । ଭୋଜିଠାରୁ ଖେଳ ପର୍ଯ୍ୟନ୍ତ ସବୁଥିରେ ରାମକିଶାନଙ୍କୁ ଖୋଜାପଡ଼େ । ଛୁଟି ମିଳିଲେ ରାମକିଶାନ ଆଉ ବିହାର ନଯାଇ ସରପାରିକୁ ଚାଲିଆସନ୍ତି । ୧୯୭୧ ମସିହାର ଘଟଣା । ଛୁଟି କଟାଇବା ପାଇଁ ରାମକିଶାନ ସରପାରିକୁ ଆସିବାକୁ ଦରଖାସ୍ତ ଦେଇଥା'ନ୍ତି । ହଠାତ୍ ଭାରତ-ପାକିସ୍ତାନ ଯୁଦ୍ଧ ଲାଗିଗଲା । ସମ୍ମୁଖ ଯୁଦ୍ଧରେ ରାମକିଶାନ ସହିଦ ହୋଇଯାଇଥିଲେ । ବହୁଦିନ ପର୍ଯ୍ୟନ୍ତ ରାମକିଶାନ ସହିଦ ହୋଇଛନ୍ତି ବୋଲି ସରପାରିର ଗ୍ରାମବାସୀମାନେ ଜାଣିପାରି ନଥିଲେ । ବିଭିନ୍ନ ପର୍ବପର୍ବାଣୀ ଏବଂ ଗ୍ରାମସଭାରେ ରାମକିଶାନଙ୍କୁ ଖୋଜାପଡ଼େ । ବହୁବର୍ଷ ପରେ ଜଣାପଡ଼ିଲା ରାମକିଶାନ ଯୁଦ୍ଧରେ ସହିଦ ହୋଇଯାଇଛନ୍ତି । କିନ୍ତୁ ତାଙ୍କର ସହିଦକୁ ସେତେ ଗୁରୁତ୍ୱ ଦିଆଯାଇ ନଥିଲା । ୨୮ ବର୍ଷ ପରର ଘଟଣା । ରବୀନ୍ଦ୍ରମଣ୍ଡପ ଛକରେ ଡି.ଏ.ଭି. ସ୍କୁଲ ଦ୍ୱାରା କାରଗିଲ ଯୁଦ୍ଧ ଉଦ୍ଦେଶ୍ୟରେ ଆୟୋଜିତ ହେଉଥିବା ଶାନ୍ତି ପଦଯାତ୍ରା ବେଳେ ଜନୈକ ସେନା ଅଫିସର ଏହି ରାମକିଶାନଙ୍କ ପ୍ରସଙ୍ଗରେ କହିଥିଲେ । ଯଦିଓ ସେନା ଅଫିସର ଜଣକ ରାମକିଶାନଙ୍କୁ ଦେଖିନାହାନ୍ତି କିନ୍ତୁ ସେନାବାହିନୀରେ ତାଙ୍କ ସମ୍ପର୍କରେ ହେଉଥିବା ଆଲୋଚନାକୁ ସେ ବଖାଣି ଥିଲେ । ରାମକିଶାନଙ୍କ ପାଖରେ ଗୁଳି ଭରା ବନ୍ଧୁକ ଥିଲା । କିନ୍ତୁ ସେ ଗୁଳି ଫୁଟାଇ ନଥିଲେ । ବନ୍ଧୁକର ବନେଟ୍ ମୂନରେ ମାତ୍ର କେତୋଟି ମୁହୂର୍ତ୍ତରେ ପନ୍ଦର ଜଣ ପାକିସ୍ତାନ ସେନାଙ୍କୁ ହତ୍ୟା କରି ସେ ନିଜେ ସହିଦ ହୋଇଥିଲେ । ତାଙ୍କର ସାହସିକତା ଏଯାବତ୍ ସେନାବାହିନୀରେ ଚର୍ଚ୍ଚାର ବିଷୟ ହୋଇରହିଛି । ସେତେବେଳେ ଯଦି ବର୍ତ୍ତମାନ ପରି ଗଣମାଧ୍ୟମଗୁଡ଼ିକ ସଚେତନ ଥା'ନ୍ତେ ତେବେ

ରାମକିଶାନ ପାଇଁ ଓଡ଼ିଶା ଆଜି ଗର୍ବ ଅନୁଭବ କରୁଥା'ନ୍ତା । ଯିଏ ନିଜ ଭିଟାମାଟିକୁ ଛାଡ଼ିଦେଇ ଓଡ଼ିଶାର ଏକ ଅଖ୍ୟାତ ପଲ୍ଲୀକୁ ନିଜର ଗ୍ରାମ ବୋଲି ଧରି ନେଇଥିଲେ ତାଙ୍କ ପାଇଁ ଓଡ଼ିଶାବାସୀଙ୍କର କିଛି କର୍ତବ୍ୟ ନିଶ୍ଚିତ ଭାବେ ଥିଲା । ଭାରତମାତା ପାଇଁ ଜୀବନକୁ ଉତ୍ସର୍ଗ କରିଦେଇଥିବା ରାମକିଶାନ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିଛନ୍ତି । ତାଙ୍କପରି ଦେଶପ୍ରେମୀ ସେନାକୁ ଜନ୍ମ ଦେଇ ଭାରତ ଗର୍ବିତ । ସେନା ଅଫିସର ରାମକିଶାନଙ୍କ ସମ୍ପର୍କରେ ବର୍ଣ୍ଣନା କରୁଥିବା ବେଳେ ସେଠାରେ ବହୁ ଲୋକଙ୍କର ସମାଗମ ଘଟିଥିଲା । ଅଫିସର ଜଣକ ଚାଲିଯିବା ପରେ ମଧ୍ୟ ରାମକିଶାନଙ୍କ ବନେଟ୍ ମୁନର ଯୁଦ୍ଧକୁ ନେଇ ବହୁ ସମୟ ଧରି ସେଠାରେ ଆଲୋଚନା ଚାଲିଥିବାର ଦେଖାଯାଇଥିଲା ।

# ଧନ୍ୟ ଭାରତ

**ଲୋ**କଟିର ନାମ ଭାରତ । ବୋଧହୁଏ ଡୁମୁଡୁମା ହାଉସିଂ ବୋର୍ଡ଼ରେ କିମ୍ବା ତା'ର ନିକଟବର୍ତୀ ଅ ଳରେ ସେ ରହେ । ଟ୍ରଲି ଚଳାଇ ଗୁଜୁରାଣ ମେଂଟାଏ । ସେଦିନ ସକାଳେ ସେ ଟ୍ରଲି ଚଳାଇ ଡୁମୁଡୁମା ଆଡୁ ଭୁବନେଶ୍ୱର ସହରକୁ ଆସୁଥିଲା । ୫ ନମ୍ବର ଜାତୀୟ ରାଜପଥରେ ରକ୍ତରେ ଭିଜି ଯାଇଥିବା ଜଣେ ବ୍ୟକ୍ତି ପଡ଼ିଥିବାର ସେ ଦେଖିଲା । ବୋଧହୁଏ କୌଣସି ଯାନବାହନର ଧକ୍କାରେ ଲୋକଟିର ଅବସ୍ଥା ଏପରି ଗୁରୁତର ହୋଇଛି ବୋଲି ସେ ଭାବିନେଲା । ରାସ୍ତାରେ ବହୁ ଯାନବାହନ ଯାତାୟତ କରୁଥାଏ । କିନ୍ତୁ କୌଣସି ଯାନବାହନ ସେହି ଲୋକଟି ପାଖରେ ରହୁ ନଥାଏ । ରାସ୍ତାରେ ଲୋକଟି ସଂଜ୍ଞାହୀନ ଅବସ୍ଥାରେ ପଡ଼ିଥିଲେ ମଧ୍ୟ ଗୋଡ଼ ହାତ ହଲାଉଥାଏ । କେଜାଣି କାହିଁକି ଭାରତ ତା'ର ଟ୍ରଲିଟିକୁ ସେଠାରେ ଅଟକାଇଲା । ଭାରତ ରାସ୍ତାରେ ପଡ଼ିଥିବା ଲୋକଟି ପାଖକୁ ଗଲା । ବୋଧହୁଏ ଲୋକଟିର ଶରୀର ଉପରେ କୌଣସି ଭାରିଯାନ ଚଢ଼ିଯାଇଛି । ଲୋକଟି ଦେହରୁ ପ୍ରଚୁର ରକ୍ତସ୍ରାବ ହେଉଥାଏ । ଡାକ୍ତରଖାନାକୁ ନେଇଗଲେ ଲୋକଟି ବ ିଯିବ ବୋଲି ଭାବି ରାସ୍ତାରେ ଯାଉଥିବା ଯାନବାହନକୁ ସେ ହାତ ଦେଖାଇଲା । ଅଧଘଂଟା ପର୍ଯ୍ୟନ୍ତ କୌଣସି ଗାଡ଼ି ସେଠାରେ ଅଟକିଲେ ନାହିଁ । ହଠାତ୍ ଗୋଟିଏ ଗାଡ଼ି ସେଠାରେ ଆସି ଅଟକିଲା । ସେଥିରେ ବସିଥିବା ଲୋକଙ୍କୁ ଭାରତ ନେହୁରା ହୋଇ କହିଲା- ଲୋକଟିକୁ ଡାକ୍ତରଖାନା ନେଇଯିବା ପାଇଁ । ଡାକ୍ତରଖାନା ନାଁ ଶୁଣିବା ମାତ୍ରେ ଗାଡ଼ିଟି ତୁରନ୍ତ ସେଠାରୁ ଚାଲିଯାଇଥିଲା । ପରେପରେ ଏକ ବସ୍ ଆସି ମଧ୍ୟ ସେଠାରେ ଠିଆ ହେଲା । ହେଲପର, କଣ୍ଡକ୍ଟର ବସ୍‌ରୁ ଓହ୍ଲାଇଲେ । ପରେ ବହୁ ଯାତ୍ରୀ ମଧ୍ୟ ବସ୍‌ରୁ ଓହ୍ଲାଇ ଲୋକଟିକୁ ଦେଖିଲେ । ଭାରତ ଯେତେବେଳେ ରକ୍ତାକ୍ତ ଲୋକଟିକୁ ବସ୍‌ରେ ହସ୍ପିଟାଲ ପର୍ଯ୍ୟନ୍ତ ନେବା ପାଇଁ କହିଲା ସେତେବେଳେ ଡ୍ରାଇଭର ବସ୍‌ର ହର୍ଣ୍ଣ ମାରିଲା । ଶୀଘ୍ର ଆସ

ଗାଡ଼ି ଛାଡ଼ିବ । ଆହତ ଲୋକଙ୍କୁ ବସ୍‌ରେ ନେଲେ ପୋଲିସ୍ ତାଙ୍କ ଉପରେ ଘଇତା ସାଜିବ । କେଉଁଠୁ ଆଣିଲ ଲୋକକୁ । ଦୁର୍ଘଟଣା କିଏ କଲା । ଡ୍ରାଇଭିଂ ଲାଇସେନ୍ସ ଅଛି କି ନାହିଁ । ଗାଡ଼ିର କାଗଜପତ୍ର ଦେଖାଅ । ପୋଲିସ୍‌କୁ ସମ୍ମୁଖୀନ ହେବା ଏବଂ କୋର୍ଟକୁ ଦଉଡ଼ିବା ପାଇଁ ସେମାନଙ୍କର ସମୟ ନାହିଁ ବୋଲି ଡ୍ରାଇଭର ଜଣକ କହି ବସ୍‌କୁ ତୁରନ୍ତ ଘଟଣାସ୍ଥଳରୁ ଛାଡ଼ି ଦେଇଥିଲେ । କେତେକ ସ୍କୁଟର, ମୋଟର ସାଇକଲ ମଧ୍ୟ ଘଟଣାସ୍ଥଳରେ ଅଟକି ଥିଲେ । ବହୁଲୋକ ରାସ୍ତାରେ ଜମା ହୋଇ ଲୋକଟିର ଅବସ୍ଥା ଦେଖି ଆହା ଚୁ' ଚୁ' କରୁଥା'ନ୍ତି । କିନ୍ତୁ ସେ କିପରି ବଂଚିବ ସେକଥା କେହି ଚିନ୍ତା କରୁ ନଥା'ନ୍ତି । ଦୀର୍ଘ ଏକଘଂଟା ଧରି ଲୋକଟି ରାସ୍ତା ଉପରେ ପଡ଼ିରହିଥାଏ । ଲୋକଟିର ରକ୍ତରେ ରାସ୍ତା ବି ଜୁତୁବୁତୁ ହୋଇଯାଇଥିଲା । ତଥାପି ବି କାହାର ଲୋକଟି ପ୍ରତି ଦୟା ହେଲା ନାହିଁ । ଭାରତ ମଧ୍ୟ ନିଜ କଥା ଚିନ୍ତା କଲା । ପାଖରେ ମାତ୍ର ୫ଟି ଟଙ୍କା ଅଛି । ଟ୍ରଲି ଯଦି ଭଡ଼ାରେ ନ ଲାଗେ ତେବେ ଜାଣେ ପିଲାପିଲି ଉପବାସ ରହିବେ । ଲୋକଟିକୁ ଡାକ୍ତରଖାନା ନେବାକୁ ହେଲେ ତାକୁ ଟ୍ରଲିରେ ନେବାକୁ ହେବ । ତା' ପାଇଁ ନିକିମା ହେବାକୁ ପଡ଼ିବ । ରାସ୍ତା ପାଖ ଗଛମୂଳରେ ସେ କିଛି ସମୟ ପାଇଁ ଚୁପ୍ ହୋଇ ବସିଲା । ଅଂଟାରୁ ବିଡ଼ିଟିଏ ବାହାର କରି ଟାଣିଲା । ହଠାତ୍ ସେ ଲୋକଟି ପାଖକୁ ଆସିଲା ଏବଂ ଲୋକଟିକୁ ଟ୍ରଲି ଉପରକୁ ଟେକିନେବା ପାଇଁ ତାକୁ ସାହାଯ୍ୟ କରିବାକୁ ପାଖରେ ଥିବା କିଛି ଲୋକଙ୍କୁ ଡାକିଲା । ରକ୍ତାକ୍ତ ଲୋକଟିକୁ ମଧ୍ୟ ଟ୍ରଲି ପାଖକୁ ନେବାକୁ କେହି ଆସିଲେ ନାହିଁ । ଶେଷରେ ବାଧ୍ୟ ହୋଇ ଭାରତ ଏକାକୀ ଲୋକଟିକୁ ଟେକିନେଇ ଟ୍ରଲି ଉପରେ ରଖିଲା । ଭାରତ ପିନ୍ଧିଥିବା ଚିରା ଗଂଜିଟି ରକ୍ତରେ ଓଦା ହୋଇଗଲା । ସେଥିପ୍ରତି ଭାରତର ଦୃଷ୍ଟି ନଥିଲା । ଟ୍ରଲି ଚଳାଇ ସେ ଡାକ୍ତରଖାନା ଆଡ଼େ ଚାଲିଲା । ଏହା ହେଉଛି ରାଜଧାନୀ ଭୁବନେଶ୍ୱରର ନୀତିଦିନିଆ ଜୀବନ । ନିଜେ ବଂଚିଲେ ବାପର ନାଁ । ତେଣିକି ଯିଏ ମରୁ ପଛେ । ମାନେ ହୃଦୟ ନଥିବା ଭୁବନେଶ୍ୱର ।

# ଚୁମ୍‌କି ମରିଗଲା

ଏ ଚୁମ୍‌କି କୌଣସି ମଣିଷର ନାମ ନୁହେଁ । ଚୁମ୍‌କି ହେଉଛି ରାଜଭବନ ନିକଟରେ ଥିବା ରାଜ୍ୟ ବୈଷୟିକ ଶିକ୍ଷା ଅନୁଷ୍ଠାନ ଏବଂ ମହିଳା ଆଇ.ଟି.ଆଇ. ପ୍ରାଙ୍ଗଣରେ ରହୁଥିବା ଏକ କୁକୁର । ଏହି କୁକୁରପ୍ରତି ଅନୁଷ୍ଠାନର ସମସ୍ତ କର୍ମଚାରୀଙ୍କର ଏକ ଅହେତୁକ ଦୁର୍ବଳତା ଆସିଯାଇଥିଲା । କୁକୁରଟି କେବେ ଉପବାସରେ ରହୁ ନଥିଲା । ସବୁଦିନ କେହି ନା କେହି କର୍ମଚାରୀ ତାକୁ ଖାଇବାକୁ ଦେଉଥିଲେ । ଏପରିକି ଆମିଷ

ମଧ ବାଦ୍ ପଡୁ ନଥିଲା । ଚୁମ୍‌କି ବି କର୍ମଚାରୀଙ୍କ ପାଖରେ ଲାଙ୍ଗୁଡ଼ ହଲେଇ ଗେଲ ହେଉଥିଲା । ଯେତେ ଦୂରରେ ଥିଲେ ମଧ କର୍ମଚାରୀଙ୍କ ଡାକ ଶୁଣିବା ମାତ୍ରେ ବିଜୁଳି ବେଗରେ ଚୁମ୍‌କି ସେମାନଙ୍କ ନିକଟରେ ପହଂଚି ଯାଉଥିଲା । କର୍ମଚାରୀଙ୍କ ମତ ଥିଲା- ଚୁମ୍‌କି ଥିଲେ କ୍ୟାମ୍ପସ୍‌ରେ ଚୋର ପଶିପାରିବେ ନାହିଁ । ସେଦିନ ରାତିରେ ଚୁମ୍‌କି ବହୁ କର୍ମଚାରୀଙ୍କ ଗୋଡ଼ ତଳେ ଘଷି ହୋଇଥିଲା । ଅନେକଙ୍କର ଗୋଡ଼କୁ ମଧ ଚାଟିଥିଲା । ଚୁମ୍‌କିର ହଠାତ୍ ଏଭଳି ପରିବର୍ତନ କାହିଁକି ହେଲା ତାହା କେହି ବୁଝିପାରି ନଥିଲେ । ପରଦିନ ସକାଳେ ଦେଖାଗଲା ଚୁମ୍‌କି ମରିଯାଇଛି । ତା'ର ପାଟି ପାଖରେ କିଛି ବୁନ୍ଦା ରକ୍ତ ପଡ଼ିଛି । ଚୁମ୍‌କିର ମୃତ୍ୟୁ ସମ୍ପର୍କୀୟ ସମ୍ବାଦ ସାରା କ୍ୟାମ୍ପସ୍‌ରେ ପ୍ରଚାରିତ ହୋଇଗଲା । ସଙ୍ଗେସଙ୍ଗେ କର୍ମଚାରୀମାନେ ଚୁମ୍‌କି ନିକଟକୁ ଚାଲି ଆସିଥିଲେ । ସେମାନେ ଚୁମ୍‌କିର ଶବକୁ ନେଇ କ୍ୟାମ୍ପସ୍‌ର ଏକ ସ୍ଥାନରେ ପୋତିଲେ । ସେଠାରେ ସମାଧି ଘଠଟିଏ ମଧ ନିର୍ମାଣ ହେଲା । କର୍ମଚାରୀମାନେ ଚୁମ୍‌କି ଆତ୍ମାର ସଦ୍‌ଗତି ପାଇଁ ନୀରବ ପ୍ରାର୍ଥନା କଲେ । ଏ ଜନ୍ମରେ ଚୁମ୍‌କି ମଣିଷ ଜନ୍ମ ପାଇ ସେମାନଙ୍କ ସହିତ ଚଳପ୍ରଚଳ କରିବାକୁ ସେମାନେ ଭଗବାନଙ୍କୁ ମଧ ଜଣାଇଲେ । ଏହି ଖବରଟି କ୍ରମେ ସାରା ରାଜଧାନୀରେ ବ୍ୟାପିଗଲା । ଆଉ ଏହାକୁ ନେଇ ମଧ ବିଭିନ୍ନ ସ୍ଥାନରେ ଚର୍ଚ୍ଚା ପରେ ଚର୍ଚ୍ଚା ହେଲା । ଚୁମ୍‌କି ପଶୁ ହୋଇପାରେ କିନ୍ତୁ ତା'ଠାରୁ ମଣିଷଙ୍କର ଶିଖିବାର ଅଛି ।

## ଗାନ୍ଧିଜୀ

**ଯେଉଁ** ଗାନ୍ଧିଙ୍କ କଥା ଏଠାରେ ବର୍ଣନା କରାଯାଉଛି ସେ ମହାତ୍ମାଗାନ୍ଧି ନୁହନ୍ତି । କିନ୍ତୁ ତାଙ୍କର ବେଶଭୂଷା ମହାତ୍ମାଗାନ୍ଧିଙ୍କ ପରି । ମହାତ୍ମା ଗାନ୍ଧିଙ୍କ ପରି ଏହି ଗାନ୍ଧି ବି ସ୍ୱାଭିମାନୀ ନୁହନ୍ତି । ମହାତ୍ମା ଗାନ୍ଧିଙ୍କ ବେଶରେ ଏହି ଗାନ୍ଧି ଲୋକଙ୍କୁ ପଇସା ମାଗନ୍ତି । ଏମିତି ଗାନ୍ଧି ବେଶଧାରୀ ଯୁବକ ଜଣକୁ ରାଜଧାନୀର ବିଭିନ୍ନ ରାସ୍ତାର ଛକରେ ଦେଖିବାକୁ ମିଳୁଛି । ଆଣ୍ଠୁ ଲୁଚୁ ନଥିବା ଗୋଟିଏ ଲୁଗା ପିନ୍ଧି ଏହି ଯୁବକ ମୁଣ୍ଡଠାରୁ ଗୋଡ଼ ପର୍ଯ୍ୟନ୍ତ ଧଳା ବାର୍ଣ୍ଣିସ୍ ବୋଳି ହୋଇଛନ୍ତି । ଆଖିରେ ଗାନ୍ଧି ଚଷମା ଏବଂ ହାତରେ ବାଡ଼ି । ଯେ କୌଣସି ଗଛମୂଳେ ଏହି ଯୁବକ ଜଣକ ଗାନ୍ଧି ଷ୍ଟାଇଲରେ ହଲଚଲ ନ ହୋଇ ଠିଆ ହୋଇଥା'ନ୍ତି । ଆଗରେ ଏକ ଥାଳିଆ । ଲୋକମାନେ ଏହି ଅଦ୍ଭୁତ ଗାନ୍ଧିଙ୍କୁ ଦେଖି ସେଠାରେ ଥିବା ଥାଳିଆରେ ପଇସା ପକାନ୍ତି । ରାଜଧାନୀର ପଥିକମାନେ ବୋଧହୁଏ ମହାତ୍ମା ଗାନ୍ଧିଙ୍କ ସ୍ୱାଭିମାନ ସମ୍ପର୍କରେ ସଚେତନ ନୁହନ୍ତି । ନଚେତ ବାର୍ଣ୍ଣିସ୍ ଗାନ୍ଧିଙ୍କୁ ଦେଖି ଏଭଳି ପଇସା ଫୋପାଡ଼ନ୍ତେ ନାହିଁ ।

# ଆଗରେ ପୋଲିସ୍ ପଛରେ ଚୋର

**ପୋ**ଲିସ୍‌ର କାମ ହେଉଛି ଚୋର୍‌କୁ ଗୋଡ଼ାଇବା ଏବଂ ଧରିବା । କିନ୍ତୁ ଏ ଯେଉଁ ପୋଲିସ୍ କଥା ଏଠାରେ କୁହାଯାଉଛି ସେ କିନ୍ତୁ ଚୋର ପଛରେ ନଥିଲେ । ଆଗେଆଗେ ସେ ଦୌଡ଼ୁଥିଲେ ଆଉ ତାଙ୍କ ପଛପଛେ ଚୋର ଦୌଡ଼ୁଥିଲା । ଘଟଣାଟି ଘଟିଥିଲା ରାଜଧାନୀ ଭୁବନେଶ୍ୱରର ଇନ୍‌ଷ୍ଟିଚ୍ୟୁଟ୍ ଅଫ୍ ଇଞ୍ଜିନିୟର୍ସ ଛକ ପାଖରେ । ରାତି ସେତେବେଳକୁ ପ୍ରାୟ ସାଢ଼େ ୧୨ଟା । ଦେଖାଗଲା ଜଣେ ପୋଲିସ୍ ପୋଷାକ ପିନ୍ଧିଥିବା ଲୋକ ପଛରେ ଅନ୍ୟ ଜଣେ ଲୋକ ଦୌଡ଼ୁଛି । ତାଙ୍କ ପଛରେ ପ୍ରାୟ ୩୦ ଜଣ ଲୋକ ଦୌଡ଼ୁଛନ୍ତି । ସମସ୍ତେ ଚୋରଚୋର ଡାକ ପକାଉଛନ୍ତି । କିନ୍ତୁ ଚୋର କିଏ କେହି ଜାଣି ପାରୁନାହାନ୍ତି । ପୋଲିସ୍ ପୋଷାକ ପିନ୍ଧିଥିବା ଲୋକଟି ପଛକୁ ହାତ ଦେଖାଇ ଚୋରଚୋର କହି ଦୌଡ଼ୁଛି । ପଛଲୋକଟି ପୋଲିସ୍ ପୋଷାକ ପିନ୍ଧିଥିବା ଲୋକଟିକୁ ଅଙ୍ଗୁଳି ଦେଖାଇ ଚୋର ବୋଲି ପାଟି କରୁଛି । ପଛରେ ଦୌଡ଼ୁଥିବା ଲୋକମାନେ ଚୋରକୁ ଧରଧର ବୋଲି ପାଟି କରୁଥା'ନ୍ତି । ହଠାତ୍ କିଛିଲୋକ ପୋଲିସ୍ ପଛରେ ଥିବା ଲୋକଟିକୁ ଧରି ମାଡ଼ ମାରିବାକୁ ଲାଗିଲେ । ଲୋକଟି କିନ୍ତୁ ପୋଲିସ୍ ଆଡ଼କୁ ହାତ ଦେଖାଇ ଚୋର ପଳେଇଲା ପଳେଇଲା ବୋଲି କହିବାକୁ ଲାଗିଲା । ଆଉ କିଛିଲୋକ ପୋଲିସ୍ ପୋଷାକଧାରୀ ବ୍ୟକ୍ତିଟିକୁ ଧରି ପକାଇଲେ । ସେତେବେଳେ ସେ କହିଲା- ମୁଁ ଚୋର ନୁହେଁ, ସେ ଚୋର । ଅଜବ କଥା । ପୋଲିସ୍ ଚୋରକୁ ନ ଧରି ନିଜେ ଚୋର ନୁହଁ ବୋଲି ବୟାନ କାହିଁକି ଦେଉଛି ତାହା କେହି ଜାଣିପାରିଲେ ନାହିଁ । ସନ୍ଦେହ ହେବାରୁ ତାକୁ ପଚରାଉଚରା କରାଗଲା । ଜଣାପଡ଼ିଲା ଲୋକଟି ପୋଲିସ୍ ପୋଷାକ ପିନ୍ଧି କ୍ୱାର୍ଟରରେ ପଶି ଚୋରି କରୁଥିଲା । କ୍ୱାର୍ଟରରେ ଶୋଇଥିବା ଲୋକଙ୍କ ନିଦ ଭାଙ୍ଗିଯିବାରୁ ସେ ଦୌଡ଼ି ଚାଲିଯାଇଥିଲା । ଲୋକମାନେ ତା'ର ପିଛା କରିବାରୁ ସେ ସେମାନଙ୍କ ଆଡ଼କୁ ଅଙ୍ଗୁଳି ଦେଖାଇ ଚୋର ଚୋର ବୋଲି କହି ଦୌଡ଼ିଥିଲା । ପୋଲିସ୍ ପୋଷାକ ପିନ୍ଧି ଯେପରି ଅନ୍ୟ କେହି ଚୋରି ନକରନ୍ତି ସେଥିପାଇଁ ଲୋକମାନେ ଉକ୍ତ ଚୋରକୁ ପାନେ ଦେବାପାଇଁ ସ୍ଥିର କଲେ । କେତେକ ତାକୁ ଲଣ୍ଡା କରିଦେଇଥିଲେ । ଆଉ କେତେକ ତା' ମୁହଁରେ ଚୂନ, କଳା ଲଗାଇ ରାତି ଅଧରେ ବି କଲୋନୀ ଭିତରେ ବୁଲାଇଥିଲେ । ଲୋକଟି ପୋଲିସ୍ ପୋଷାକ ପିନ୍ଧିଥାଏ ଏବଂ କହୁଥାଏ- 'ମୁଁ ଚୋର ମୁଁ ଚୋର' ।

# ଦିଲ୍ଲୀପଙ୍କ ଆୟୁଷ

**ବେ**ଳେବେଳେ ଗୋଟିଏ ଗୋଟିଏ ଖବର ନିଆଁ ଲଗେଇ ଦିଏ । ସୁନ୍ଦରଗଡ଼ ଜିଲ୍ଲାର ଜଣେ ବୋଲ୍‌ବମ୍ ଭକ୍ତ ଦିଲ୍ଲୀପ ରାୟ ଗୁଳି ମାଡ଼ରେ ମଲେ । ସବୁଆଡ଼େ ଚହଲ ପଡ଼ିଗଲା ବିଜେଡି ନେତା ଦିଲ୍ଲୀପ ରାୟଙ୍କ ଉପରେ ଗୁଳିମାଡ଼ ହୋଇଛି । ଏହି ଖବର କେବଳ ଓଡ଼ିଶା ନୁହେଁ

ଦିଲ୍ଲୀକୁ ମଧ୍ୟ ବ୍ୟାପିଗଲା । ଦିଲ୍ଲୀପ ରାୟ ସେତେବେଳେ ଦାର୍ଜିଲିଂରେ ଥିଲେ । ତାଙ୍କ ପାଖକୁ ଫୋନ୍ ପରେ ଫୋନ୍ । ସମସ୍ତେ ପଚାରୁଛନ୍ତି ତାଙ୍କ ଉପରକୁ ଗୁଳିମାଡ଼ ହୋଇଥିଲା କି । ଦିଲୀପ କିଛି ବୁଝିପାରିଲେ ନାହିଁ । କାହିଁକି ତାଙ୍କୁ ସମସ୍ତେ ଫୋନ୍ କରୁଛନ୍ତି ଏବଂ ବଂଚିଛନ୍ତି କି ବୋଲି ବୁଝିବା ସହିତ ଭଗବାନ ବଡ଼ଲୋକ ବୋଲି କହୁଛନ୍ତି ତାହାର କାରଣ ପରବର୍ତ୍ତୀ ସମୟରେ ଦିଲୀପ ଜାଣିପାରିଲେ । ଦିଲ୍ଲୀପଙ୍କ ମାଆ ମଧ୍ୟ ଏହି ଖବର ଶୁଣି ଏତେ ବ୍ୟସ୍ତ ହୋଇପଡ଼ିଥିଲେ ଯେ ତାହା ନଦେଖିବା ଲୋକ ଜାଣିପାରିବ ନାହିଁ । ଅବଶ୍ୟ ଦିଲୀପଙ୍କର କିଛି ଶତ୍ରୁ ଏହି ଖବର ପଢ଼ି ବେଶ୍ ଖୁସି ହୋଇଯାଇଥିଲେ । କିନ୍ତୁ ଦିଲୀପଙ୍କ ଶୁଭେଚ୍ଛୁମାନେ କହିଲେ- ଏହି ଖବରଟି ଦିଲୀପଙ୍କ ଆୟୁଷ ବଢ଼ାଇ ଦେଲା ।

## ନବୀନଙ୍କ ଝାଳ

**ଝା**ଳ ସବୁ ଲୋକଙ୍କର ବୋହେ । ଏଥିରେ କିଛି ବିଚିତ୍ରତା ନାହିଁ । ତେବେ ଓଡ଼ିଆ ଜାତିକୁ ଆଗେଇ ଆସିବା ପାଇଁ ଆହ୍ୱାନ ଦେଉଥିବା ବେଳେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଝାଳନାଳରେ ଆକ୍ଷୁଏ ହୋଇଯିବେ ଏହାକୁ କିନ୍ତୁ କେହି ମାମୁଲି କଥା କହି ଏଡ଼ାଇ ଯାଇପାରିବେନି । ଅଗଷ୍ଟ ୧୫ରେ ମହାତ୍ମାଗାନ୍ଧି ମାର୍ଗରେ ନବୀନ ପଟ୍ଟନାୟକ ଓଡ଼ିଆ ଜାତି ଉଦ୍ଦେଶ୍ୟରେ ଲିଖିତ ଭାଷଣ ପଢ଼ିଲା ବେଳେ ତାଙ୍କ କପାଳରୁ ଝରଣା ବୋହିଲା ପରି ଝାଳ ବୋହି ଚାଲିଥାଏ । ଘଂଟାଏ କାଳ ସେ ଯଦି ଖଣ୍ଡି ଓଡ଼ିଆରେ ଓଡ଼ିଆ ଜାତିକୁ ଉଦ୍‌ବୋଧନ ଦେଇଥା'ନ୍ତେ ତେବେ ମହାତ୍ମାଗାନ୍ଧି ମାର୍ଗରେ ନଈଟିଏ ବୋହିବାକୁ ଅଧିକ ସମୟ ଲାଗି ନଥା'ନ୍ତା । ନବୀନ ପ୍ରତି ୧୦ ସେକେଣ୍ଡରେ ଝାଳ ପୋଛୁଥା'ନ୍ତି । ତେବେ ନିନ୍ଦୁକମାନେ କହନ୍ତି- ମୁଖ୍ୟମନ୍ତ୍ରୀ ହେବାପରେ ଏତେବଡ଼ ଉତ୍ସବରେ ନବୀନ କେବେ ଭାଷଣ ଦେଇ ନଥିଲେ । ନିଜ ଖଣ୍ଡି ଭାଷଣ ସହ ଲୋକଙ୍କୁ ଦେଖି ସେ ନର୍ଭସ୍ ହୋଇପଡ଼ିଲେ । ତେଣୁ ତାଙ୍କଠାରେ ଝାଳର ସୁଅ ଫିଟିଗଲା । ମାତ୍ର ତାଙ୍କର ପ୍ରଶଂସକମାନେ କହନ୍ତି- ତଳକୁ ଖସି ପଡ଼ିଥିବା ଓଡ଼ିଆ ଜାତିକୁ ଉଠାଇବା ପାଇଁ ନବୀନ ରାତିଦିନ ଚିନ୍ତା କରୁଛନ୍ତି । ସେ ରାତିରେ ଖାଇବା ଛାଡ଼ି କେବଳ ପାଣି ଆହାର କରୁଛନ୍ତି । ଦିନରେ ଓଡ଼ିଆ ଜାତିକୁ ଉଠିବା ପାଇଁ ସେ ଯେତେବେଳେ ଉଦ୍‌ବୋଧନ ଦେଲେ ସେତେବେଳେ ପିଇଥିବା ପାଣିତକ ଝାଳ ହୋଇ ବାହାରିଗଲା । ଏଥିରେ କାହାର ଆପତି କରିବାକୁ ଅଛି ଭଲା ।

## ଏପଟେ ମଲି ସେପଟେ ମଲି

**କି**ଛି ବିଧାୟକ କିଛିଦିନ ହେଲା ଶୋଉନାହାନ୍ତି । ବନେଇଥିବା ଡ୍ରେସ୍‌କୁ ଦେଖୁଛନ୍ତି ଓ ଆଲମିରାରେ ରଖୁଛନ୍ତି । ଏଇ ଦେଖାରଖା ଭିତରେ ସେମାନଙ୍କ ଆଖିରୁ ଲୁହ ଗଡ଼ି ଆସୁଛି ।

ଆଜି ମନ୍ତ୍ରୀ ହେବେ, କାଲି ମନ୍ତ୍ରୀ ହେବେ ଏହା ଗଣୁଗଣୁ ଦିନ ଏମିତି ଗଡ଼ିଯାଉଛି ଯେ, ଘରଣୀମାନେ ମଧ୍ୟ ସେମାନଙ୍କୁ ସନ୍ଦେହ କରିବାକୁ ଲାଗିଲେଣି । ଭିତିରି ଖବର ହେଲା- ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଗଣ୍ଡେ ଦି'ଗଣ୍ଡା ବିଜେଡି ବିଧାୟକଙ୍କୁ ମନ୍ତ୍ରୀ କରିବେ ବୋଲି ଆଗତୁରା ତିଳକ ପିନ୍ଧାଇ ଦେଇଛନ୍ତି । ସମସ୍ତେ ନବୀନଙ୍କ ଠାରୁ ଇସାରା ପାଇବା ପରେ ପୋଷାକ ବନେଇ ସାରିଥିଲେ । କିଏ କୋଟ୍ ବନେଇଛନ୍ତି ତ ଆଉ କିଏ ବନେଇଛନ୍ତି ଜ୍ୟାକେଟ୍ । ତେବେ ନବୀନ ତାଙ୍କ ଗ୍ୟାଙ୍ଗ୍ ବଢ଼େଇବା ପାଇଁ ଯାଉନାହାନ୍ତି । ଏହି ବିଧାୟକମାନେ ଚାହିଁ ବସିଛନ୍ତି କେବେ ମନ୍ତ୍ରିମଣ୍ଡଳ ସମ୍ପ୍ରସାରଣ ହେବ । ମନ୍ତ୍ରୀପଦ ଲୋଭୀ ଏହି ବିଧାୟକମାନେ ନବୀନଙ୍କ ବେଦନା ବୁଝିପାରୁନାହାନ୍ତି । ତାଙ୍କ ଅବସ୍ଥା ଏବେ 'ଏପଟେ ମଲି, ସେପଟେ ମଲି' ।

# ୧୦ ନୁହେଁ ୫୦

**କେ**ନ୍ଦ୍ରାପଡ଼ା ଅଂଚଳର ତିନିଜଣ ବ୍ୟକ୍ତି ରାଜଧାନୀ ଭୁବନେଶ୍ୱରରେ ମୋଟର ସାଇକେଲରେ ଯାଉଥିଲେ । ଏଜି ଛକରେ ସେମାନେ ଧରାପଡ଼ିଲେ ଜଣେ ଟ୍ରାଫିକ୍ କନଷ୍ଟବଳଙ୍କ ହାତରେ । ଏମିତି କେନ୍ଦ୍ରାପଡ଼ାକୁ ମନ୍ତ୍ରୀପଡ଼ା ବୋଲି କୁହାଯାଏ । ଆଉ ମନ୍ତ୍ରୀପଡ଼ା ଲୋକ ହୋଇ ଏହି ତିନିଜଣ ପୁଲିସ କନଷ୍ଟବଳ ଆଗେର ଡରିଯିବେ ତାହା ହେବନାହିଁ । ସେମାନେ କନଷ୍ଟବଳକୁ ବେଖାତିର କରି ସେହିଠାରେ ମୋଟର ସାଇକେଲ ଥୋଇ ଚାଲିଲେ ବାଚସ୍ପତି ଶରତ କରଙ୍କ ପାଖୁ । ବାଚସ୍ପତିଙ୍କ ଦପ୍ତରରୁ ଟ୍ରାଫିକ୍ ଟାଓ୍ୱାରକୁ ଫୋନ୍ ଗଲା । ମାତ୍ର ଗାଡ଼ିକୁ ଛଡ଼ାଗଲାନାହିଁ । ଏହାପରେ ସେମାନେ ଦଉଡ଼ିଲେ ନଳିନୀ ମହାନ୍ତିଙ୍କ ପାଖକୁ । ନଳିନୀ ଭାରି କ୍ଷମତାବାନ୍ ମନ୍ତ୍ରୀ । ସଙ୍ଗେସଙ୍ଗେ ସେ ଫୋନ୍ କଲେ । ମାତ୍ର ଗାଡ଼ି ଯେମିତି ଥିଲା ସେମିତି ରହିଲା । ସବୁଆଡୁ ନିରାଶ ହେବାପରେ ସେହି ତିନିଜଣ ବ୍ୟକ୍ତି କ'ଣ କରିବେ ବୋଲି ଚିନ୍ତା କଲେ । ଏହି ସମୟରେ ତାଙ୍କୁ ଜଣେ ବ୍ୟକ୍ତି ପରାମର୍ଶ ଦେଲେ ଯେ କଥାଟିକୁ ଏତେ ବାଟ ଗଡ଼ାଇଲେ କାହିଁକି ବୋଲି । ୧୦ଟି ଟଙ୍କା ଦେଇଥିଲେ କାମ ଖତମ୍ ହୋଇଯାଇଥା'ନ୍ତା । ଏହାପରେ ସେହି ତିନିଜଣ ବ୍ୟକ୍ତି ଦୌଡ଼ିଲେ କନଷ୍ଟବଳଙ୍କ ପାଖକୁ । ସେତେବେଳକୁ କଥା ଚାଲିଗଲାଣି ସବ୍‌ଇନ୍ସପେକ୍ଟରଙ୍କ ନିକଟକୁ । ସେମାନେ ସବ୍‌ଇନ୍ସପେକ୍ଟରଙ୍କ ପାଖକୁ ଯାଇ ୧୦ ଟଙ୍କା ବଢ଼ାଇ ଦେଲେ । କିନ୍ତୁ ସବ୍‌ଇନ୍ସପେକ୍ଟର ଯାହା କହିଲେ ସେଥିରେ ସେମାନଙ୍କର ଆଖି ଟେରା ହୋଇଗଲା । ସବ୍‌ଇନ୍ସପେକ୍ଟର କହିଲେ- ଆପଣମାନଙ୍କୁ ପଦ ଓ ପୋଜିସନ୍ ସମ୍ପର୍କରେ ଜଣାନାହିଁ । ଟ୍ରାଫିକ୍ କନଷ୍ଟବଳକୁ ଯେତିକି ସବ୍‌ଇନ୍ସପେକ୍ଟରକୁ ବି ସେତିକି ବୋଲି ସେ ପ୍ରଶ୍ନ କଲେ ଆଉ କହିଲେ- ଯାଆନ୍ତୁ ୫୦ ନେଇ ଆସନ୍ତୁ । କଥାଟା ଯଦି ଆହୁରି ଉପରକୁ ଯିବ ତେବେ

ଆପଣମାନଙ୍କ ହାତରୁ ଆହୁରି ଟଙ୍କା ଖସିବ । ବିଚାରା ସେହି ତିନିଜଣ ବ୍ୟକ୍ତି କାନମୁଣ୍ଡା ଆଉଁସି ୫୦ ଟଙ୍କା ବଢ଼େଇ ମଟର ସାଇକେଲ ଆଣିଲେ । ଯେଉଁ କାମ ୧୦ ଟଙ୍କାରେ ସରିଥା'ନ୍ତା ଏଇ ଗଉଁବାଜି ଯୋଗୁଁ ସେମାନଙ୍କୁ ୫୦ ଟଙ୍କା ଗଣିବାକୁ ପଡ଼ିଲା ।

# ସିଗାରେଟ୍

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସିଗାରେଟ୍ ଟାଣନ୍ତି ବୋଲି ଯଦି ପ୍ରଶ୍ନ କରାଯାଏ ତେବେ ତା'ର ଉତର ମିଳିବା କଷ୍ଟକର । କାରଣ ହେଲା ଅଫିସ୍‌ରେ କିମ୍ବା ସାଧାରଣ ସ୍ଥାନରେ ମୁଖ୍ୟମନ୍ତ୍ରୀଙ୍କୁ ସିଗାରେଟ୍ ଟାଣିବାରେ କେହି ଦେଖି ନଥା'ନ୍ତି । କିନ୍ତୁ ନବୀନ ଯେ ସିଗାରେଟ୍‌ର ପରମ ଭକ୍ତ ଏହା କେବଳ ଦେଖଣାହାରୀ ହିଁ କହିପାରିବେ । ଅଫିସ୍‌ରେ ବସନ୍ତୁ କିମ୍ବା ସାଧାରଣ ସଭାରେ ଥାଆନ୍ତୁ ନବୀନଙ୍କୁ ଯେତେବେଳେ ସିଗାରେଟ୍ ଟଣା ନିଶା ଘାରେ ସେତେବେଳେ ସେ ମୁହୂର୍ତ୍ତେ ମାତ୍ର ଥୟ ଧରି ରହିପାରନ୍ତି ନାହିଁ । ଏମିତି ଏକ ଘଟଣା ଘଟିଥିଲା ସୂଚନା ଭବନରେ ଅନୁଷ୍ଠିତ ହେଉଥିବା ବିଜୁ ମହିଳା ଜନତା ଦଳର ରାଜ୍ୟସ୍ତରୀୟ ସମ୍ମିଳନୀରେ । ବିଜେଡି ସଭାପତି ଭାବେ ନବୀନ ଏହି ସମ୍ମିଳନୀରେ ଯୋଗ ଦେଇଥିଲେ । ନେତ୍ରୀମାନେ ସେମାନଙ୍କ ସମସ୍ୟା ସମ୍ପର୍କରେ ବଖାଣି ଚାଲିଥିଲେ । ହଠାତ୍ ଦେଖାଗଲା ନବୀନ ଅତି ତରବର ଭାବେ ଚଉକି ଛାଡ଼ି ବାହାରକୁ ଚାଲିଲେ । ପଛେପଛେ ଦୁଇଜଣ ନିରାପତାରକ୍ଷୀ । ସମସ୍ତଙ୍କ ଦୃଷ୍ଟି ମୁଖ୍ୟମନ୍ତ୍ରୀଙ୍କ ଆଡ଼କୁ । କ'ଣ କିଛି ଅଘଟଣ ହୋଇଗଲା କି ବୋଲି ମଧ ମନରେ ସନ୍ଦେହ ବି ହେଲା । କିନ୍ତୁ ନବୀନ ତାଙ୍କର ସ୍ୱଭାବ ସୁଲଭ ଢଙ୍ଗରେ ପ୍ରେକ୍ଷାଳୟ ବାହାରେ ଥିବା ଭି.ଆଇ.ପି. ରୁମ୍ ଭିତରକୁ ପଶିଗଲେ । ସେଠାରେ ଯେଉଁମାନେ ଦୃଶ୍ୟଟିକୁ ଦେଖିଲେ ତାହା ଥିଲା ନବୀନଙ୍କର ସିଗାରେଟ୍ ଟଣା । ସିଗାରେଟ୍ ଟଣା ସରିବା ପରେ ନବୀନ ପ୍ରେକ୍ଷାଳୟ ଭିତରକୁ ଆସିଲେ । ଏମିତି ନବୀନ ତାଙ୍କ ସଚିବାଳୟ କାର୍ଯ୍ୟାଳୟରେ ଥିବାବେଳେ ମଧ ଏପରି ସିଗାରେଟ୍ ଟାଣନ୍ତି । ଫାଇଲ୍ କାମ ଚାଲିଥାଏ । ଅଫିସରମାନେ ମଧ ବସିଥା'ନ୍ତି । ହଠାତ୍ ନବୀନ ବାଥ୍‌ରୁମ୍ ଭିତରକୁ ପଶିଯାଇ ସିଗାରେଟ୍ ଟାଣିଥା'ନ୍ତି ବୋଲି ଦେଖଣାହାରୀ କହନ୍ତି । ତେବେ ସଭାସମିତିରେ ନବୀନ ଯେତେବେଳେ କିଛି ସମୟ ପାଇଁ ସଭାସ୍ଥଳ ଛାଡ଼ି ବାହାରକୁ ଚାଲିଆସୁଛନ୍ତି ସେତେବେଳେ ତାଙ୍କର ସିଗାରେଟ୍ ଟଣା ନେଇ ଚର୍ଚ୍ଚା ହେଉଛି ।

# ରାଜଧାନୀରେ ବର୍ଷା

ବର୍ଷାର ଲୁଚକାଳି ଖେଳ ସମ୍ପର୍କରେ ଆଉ କେହି ବୁଝନ୍ତୁ କି ନବୁଝନ୍ତୁ କିନ୍ତୁ ରାଜଧାନୀବାସୀ ବେଶ୍ ଭଲ ଭାବେ ଅଙ୍ଗେ ଲିଭାଇଛନ୍ତି । ଏମିତି ଯଦି ରାଜଧାନୀର

ଖଣ୍ଡଗିରିଠାରେ କଳାହାଣ୍ଡିଆ ମେଘ ଉଠାଇ ଭୀଷଣ ବର୍ଷା ହେଉଥିବ ତେବେ ସେଇ ବର୍ଷାର କାଣିଚାଏ ପ୍ରଭାବ ରାଜମହଲ ଛକରେ ନଥିବ । ଅନତି ଦୂରରେ ଥିବା କଳ୍ପନା ଛକରେ ସେହି ସମୟରେ ଟାଇଁଟାଇଁ ଖରା ବି ହେଉଥିବ । ସେଦିନ ନ'ନମ୍ବର ପଟେ ଭୀଷଣ ବର୍ଷା ହେଉଥାଏ । ବର୍ଷାତି କିମ୍ବା ଛତା ନେଇ ନଥିବା ଲୋକମାନେ ଦୌଡ଼ୁଥା'ନ୍ତି ନିକଟରେ ଥିବା ଗୋଟିଏ ବରଗଛ ମୂଳକୁ ବର୍ଷା ଦାଉରୁ ରକ୍ଷା ପାଇବା ପାଇଁ । ସେଠାରେ ପହଂଚିବା ପରେ ସେମାନଙ୍କୁ ଆଶ୍ଚର୍ଯ୍ୟ ହେବାକୁ ପଡ଼ିଲା । ବରଗଛର ଗୋଟିଏ ପାର୍ଶ୍ୱରେ ଭୀଷଣ ବର୍ଷା ଏବଂ ଅନ୍ୟ ପାର୍ଶ୍ୱରେ ପାଣି ଟୋପାଏ ବି ଆକାଶରୁ ପଡୁନାହିଁ । ଧନ୍ୟ ରାଜଧାନୀର ବର୍ଷା ।

## ଛୁଟି ଗୁଜବ

**ସା**ଧାରଣତଃ ବଡ଼ଲୋକ ମରିଯିବା ସମ୍ପର୍କରେ ବିଭିନ୍ନ ସମୟରେ ଗୁଜବ ହୋଇଥାଏ । ଏହାଫଳରେ ସ୍କୁଲ, କଲେଜ, ସରକାରୀ କାର୍ଯ୍ୟାଳୟ ପ୍ରଭୃତି ଛୁଟି ହେବାର ସମ୍ଭାବନା ଥାଏ । କିନ୍ତୁ ଘୋଷିତ ହୋଇଥିବା ଛୁଟିକୁ ରାଜ୍ୟ ସରକାର ପ୍ରତ୍ୟାହାର କରିନେବା ଘଟଣା କେବେ ଘଟି ନଥିଲା । ଜନ୍ମାଷ୍ଟମୀ ଦିନକୁ ରାଜ୍ୟ ସରକାର ଛୁଟି ଘୋଷଣା କଲେ । ହଠାତ୍ ସାରା ରାଜଧାନୀରେ ପ୍ରଚାର ହେଲା ଛୁଟିକୁ ସରକାର ପ୍ରତ୍ୟାହାର କରିନେଇଛନ୍ତି ବୋଲି । ସରକାରୀ କର୍ମଚାରୀମାନେ ଅଫିସ୍ ଯିବେ କି ନଯିବେ ସ୍ଥିର କରିପାରିଲେ ନାହିଁ । ଦେଖାଗଲା ସଚିବାଳୟକୁ ଅଫିସରଙ୍କ ସମେତ ବହୁ କର୍ମଚାରୀ ସେଦିନ କାମ କରିବା ପାଇଁ ଗଲେ । କିନ୍ତୁ ଦେଖିବାକୁ ମିଳିଲା ଅଫିସ ଛୁଟି । ସେମାନେ ପୁଣି ଘରକୁ ଫେରିଲେ । ତେବେ ଏଭଳି କାହିଁକି ହେଲା ତାକୁ ନେଇ ଖୋଳତାଡ଼ ଯେ ନହେଲା ତାହା ନୁହେଁ । ଯାହା ଜଣାପଡ଼ିଲା କୁଆଡ଼େ ଏହି ଜନ୍ମାଷ୍ଟମୀ ଦିନଟିକୁ ଛୁଟିଦିନ ଭାବେ ଘୋଷଣା ନ କରିବା ପାଇଁ ରାଜସ୍ୱ ବିଭାଗ ପକ୍ଷରୁ ମୁଖ୍ୟମନ୍ତ୍ରୀଙ୍କ ନିକଟକୁ ଫାଇଲ୍ ଯାଇଥିଲା । ମୁଖ୍ୟମନ୍ତ୍ରୀଙ୍କ କାର୍ଯ୍ୟାଳୟରେ କାର୍ଯ୍ୟ କରୁଥିବା କେତେକ କର୍ମଚାରୀଙ୍କ ଦୃଷ୍ଟିକୁ ଏଇ ଫାଇଲ୍‌ଟି ଆସିଥିଲା । ଏହି କଥା କାନକୁ ଦି' କାନ ହୋଇ ସାରା ରାଜଧାନୀରେ ବ୍ୟାପିଯାଇଥିଲା । ଆଉ ତିନିତୁଣ୍ଡରେ ଛେଳି କୁକୁର ହେବାପରି ଘଟଣାଟି ହୋଇଥିଲା । ଯାହା ହେଲେ କ୍ୟାପିଟାଲଟି ।

## ଧେତ୍ ବାଜେ କଥା

ପ୍ରଥମ ବ୍ୟକ୍ତି : ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କ ଧଳା ମୁଣ୍ଡବାଳକୁ କଳା କାହିଁକି କରୁନାହାନ୍ତି ?

ଦ୍ୱିତୀୟ ବ୍ୟକ୍ତି : ସେମିତି କିଛି ଧରାବନ୍ଧା ନାହିଁ ଯେ ଯାହାର ମୁଣ୍ଡବାଳ ଧଳା ହେଲା ସିଏ

ସେଥିରେ କଳା ରଙ୍ଗ ଲଗାଇବ ।

ପ୍ରଥମ ବ୍ୟକ୍ତି : ନବୀନଙ୍କ ବାପା ବିଜୁ ପଟ୍ଟନାୟକଙ୍କୁ ଦେଖିଛ । ୮୦ ବର୍ଷ ବୟସରେ ସେ ମୁଣ୍ଡବାଳକୁ ବି କଳା କରୁଥିଲେ ।

ଦ୍ୱିତୀୟ ବ୍ୟକ୍ତି : ନବୀନ ପରା ଅଟଳ ବିହାରୀ ବାଜପାୟୀଙ୍କ ଶିଷ୍ୟ । ବାଜପାୟୀଙ୍କ ମୁଣ୍ଡବାଳ ଧଳା । ତେଣୁ ନବୀନଙ୍କ ମୁଣ୍ଡବାଳ ମଧ୍ୟ ଧଳା ।

ପ୍ରଥମ ବ୍ୟକ୍ତି : ଧେତ୍ ବାଜେକଥା ।



# ଜାନକୀଙ୍କ ରାମେଶ୍ୱର କରିସ୍ମା

**ଓ**ଡ଼ିଶା ରାଜନୀତିରେ ପିତାମହ ଭୀଷ୍ମ ବୋଲି ଯଦି କାହାକୁ କୁହାଯାଏ ତେବେ ସେ ହେଲେ ଜାନକୀ ବଲ୍ଲଭ ପଟ୍ଟନାୟକ । ଓଡ଼ିଶା କଂଗ୍ରେସ ରାଜନୀତି ତାଙ୍କ ପକେଟ୍‌ରେ ଅଛି ବୋଲି ସେ ସବୁବେଳେ ପ୍ରମାଣ କରିଦେବାକୁ ଚାହାନ୍ତି । ଜାନକୀଙ୍କର ଭୁବନେଶ୍ୱର ଅପେକ୍ଷା କୁଆଡ଼େ ନିଜ ଗ୍ରାମ 'ରାମେଶ୍ୱର' ପ୍ରତି ପ୍ରୀତି ବଢ଼ିଯାଇଛି । ମୁଖ୍ୟମନ୍ତ୍ରୀ ଥିବାବେଳେ ସେ ରାମେଶ୍ୱରକୁ କଦବା କ୍ୱଚିତ ଯାଉଥିଲେ । ତାହା ପୁଣି ତାଙ୍କ ନିର୍ବାଚନମଣ୍ଡଳୀ ବେଗୁନିଆ ଗସ୍ତରେ ଯିବା ପୂର୍ବରୁ । ସେ ରାତ୍ରିଯାପନ କରନ୍ତି ରାମେଶ୍ୱରରେ ଏବଂ ପରଦିନ ସେଠାରୁ ନିର୍ବାଚନମଣ୍ଡଳୀ ଗସ୍ତ ଆରମ୍ଭ କରନ୍ତି । ଏବେ କିନ୍ତୁ ଜାନକୀଙ୍କ ରାମେଶ୍ୱର ଗସ୍ତ କ୍ରମେ ବଢ଼ିବାରେ ଲାଗିଛି । ସେ ସେଠାରେ ରାଜନୀତିଠାରୁ ଦୂରେଇ ରହି ସାହିତ୍ୟ ରଚନାରେ ମନୋନିବେଶ କରୁଛନ୍ତି । ତେବେ ଦେଖଣାହାରୀ ଭିନ୍ନ କଥା କହନ୍ତି । ସେମାନଙ୍କ ମତରେ ଜାନକୀଙ୍କ ରାଜନୀତିର ପ୍ରକୃତ ଗୋଟିଚାଳନା ରାମେଶ୍ୱରରୁ ହିଁ ଆରମ୍ଭ ହୁଏ । କାହାର ପକ୍ଷଛେଦନ ହେବ ପୁଣି କାହା ବିରୋଧରେ ହାଇକମାଣ୍ଡଙ୍କ ନିକଟରେ ଅଭିଯୋଗ ଅଣାଯିବ ଆଉ କଂଗ୍ରେସ ରାଜନୀତି କିପରି ନିଜ ନିୟନ୍ତ୍ରଣରେ ରହିବ ସେ ସମ୍ପର୍କରେ ଚେଲାଚାମୁଣ୍ଡାଙ୍କ ଗହଣରେ ଜାନକୀ ରାମେଶ୍ୱରରେ ଥିବା ତାଙ୍କ ଫାର୍ମହାଉସ୍‌ରେ ମନ୍ତ୍ରଣା କରନ୍ତି ଆଉ ସେହି ମନ୍ତ୍ରଣାରୁ ଯେଉଁ ନିର୍ଯାସ ବାହାରେ ତାହାକୁ ସେ କାର୍ଯ୍ୟକାରୀ କରନ୍ତି ।

# ଏପ୍ରିଲ୍ ଫୁଲ୍

**ସ**ବୁ ଏପ୍ରିଲ୍ ଫୁଲ୍ ପରି ଏହି ଏପ୍ରିଲ ଫୁଲ୍ ନୁହେଁ । ଏଥିରେ ଲୁହ ରହିଛି । କୋହ ବି ରହିଛି ଆଉ ହସ ବି ରହିଛି । ଯେଉଁଥିପାଇଁ ବହୁଦିନ ବିତିଯାଇଥିଲେ ମଧ୍ୟ ଘଟଣା ସମ୍ପର୍କରେ ହେଉଥିବା ଚର୍ଚ୍ଚାର ଅନ୍ତ ଘଟୁନାହିଁ । ଘଟଣାଟି ରାଜଧାନୀ ଭୁବନେଶ୍ୱରରେ ଥିବା ମହିଳା ଆଇ.ଟି.ଆଇ. ପ୍ରାଙ୍ଗଣରେ ଘଟିଥିଲା । ଏହାର ଅଧ୍ୟକ୍ଷ ହେଉଛନ୍ତି ବିଜୟ କୁମାର ନାୟକ ।

ଏପ୍ରିଲ୍ ପହିଲା ଦିନ ସେ କୁଆଡ଼େ ଏମିତି ଏକ ଦୃଶ୍ୟ ଦେଖିଲେ ଯେ ସେଥିରେ ସେ ବିଚଳିତ ହୋଇପଡ଼ିଲେ । ସଙ୍ଗେସଙ୍ଗେ ତାଙ୍କର ଯେତେ ବନ୍ଧୁବାନ୍ଧବ ଥିଲେ ସମସ୍ତଙ୍କୁ ସେ ଦୁର୍ଘଟଣାରେ ମରିଗଲେ ବୋଲି ଖବର ଦିଆଗଲା । ଖବର ପାଇ ବନ୍ଧୁବାନ୍ଧବ କାନ୍ଦିକାନ୍ଦି ସେହି ପ୍ରାଙ୍ଗଣରେ ଥିବା ତାଙ୍କ କ୍ୱାର୍ଟରକୁ ଆସିଲେ । ଘରେ କିନ୍ତୁ ତାଙ୍କର ପତ୍ନୀ ଏଭଳି ଘଟଣା ସମ୍ପର୍କରେ ଜାଣି ନଥା'ନ୍ତି । ବନ୍ଧୁବାନ୍ଧବଙ୍କ ଠାରୁ ସ୍ୱାମୀଙ୍କର ମୃତ୍ୟୁଖବର ଶୁଣି ସେ ବି କାନ୍ଦିବାକୁ ଲାଗିଲେ । କେହି କାହାର କୋହ ସମ୍ଭାଳିପାରୁ ନଥା'ନ୍ତି । ସେମାନଙ୍କର କାନ୍ଦବୋବାଳି ଦେଖି ହଠାତ୍ ଜଣେ ସେଠାକୁ ଆସିଥିଲେ । ବିଜୟବାବୁ ମରିଯାଇଛନ୍ତି ବୋଲି ଯେତେବେଳେ ସେ ଶୁଣିଲେ ସେତେବେଳେ ସେ ନିଜ ଆଖିକୁ ବିଶ୍ୱାସ କରିପାରିଲେ ନାହିଁ । ମାତ୍ର ମିନିଟିକ ତଳେ ସେ ବିଜୟଙ୍କୁ ଅଫିସ୍ ବାରଣ୍ଡାରେ ବସିଥିବାର ଦେଖିଛନ୍ତି । ଅଥଚ ଏଠି ତାଙ୍କ ମୃତ୍ୟୁରେ କାନ୍ଦ ବୋବାଳି ପଡ଼ିଛି । ବିଜୟ ବଂଚିଥିବା ସମ୍ପର୍କରେ ଯେତେବେଳେ ସେ ସେମାନଙ୍କୁ ଜଣାଇଦେଲେ ସେତେବେଳେ ତଡ଼ିତ୍ ବେଗରେ ଉକ୍ତ ବ୍ୟକ୍ତିମାନେ ଅଫିସ୍ ବାରଣ୍ଡା ଆଡ଼କୁ ଦୌଡ଼ି ଯାଇଥିଲେ । ସତକୁ ସତ ଦେଖିଲା ବେଳକୁ ବିଜୟ ବାରଣ୍ଡାରେ ବସି ଅନ୍ୟ ବନ୍ଧୁମାନଙ୍କ ସହିତ ଗପସପ କରୁଛନ୍ତି । ମରିଯିବା ସମ୍ପର୍କରେ ମିଥ୍ୟା ଖବର କେହି କ'ଣ କାହାକୁ ଦେଇପାରେ କି ବୋଲି ପଚରାଯିବାରୁ ବିଜୟଙ୍କର ଉତର ଥିଲା- ସେ ଯେଉଁ ଘଟଣାଟି ଦେଖିଛନ୍ତି ଯଦି ମରିଯାଇଛନ୍ତି ବୋଲି କାହାକୁ ଖବର ଦେଇ ନଥା'ନ୍ତେ ତେବେ ସତକୁ ସତ ତାଙ୍କର ମୃତ୍ୟୁ ଘଟିଥା'ନ୍ତା । ଏଭଳି ପ୍ରବାଦ ବହୁପୂର୍ବରୁ ରହିଆସିଛି । ପ୍ରବାଦକୁ ବା କିପରି ସେ ଏଡ଼ାଇ ଦେଇପାରିଥା'ନ୍ତେ । ଏହାପରେ ଦୁଃଖରେ ଭାଙ୍ଗି ପଡ଼ିଥିବା ବିଜୟଙ୍କ ବନ୍ଧୁବାନ୍ଧବମାନେ ନିଜକୁ ନିଜେ ଏପ୍ରିଲ୍ ଫୁଲ୍ ବୋଲି କହି ପ୍ରସଙ୍ଗଟିକୁ ହାଲ୍‌କାରେ ଗ୍ରହଣ କରିନେଇଥିଲେ ।

# ମହୁଫେଣା

**ମ**ହୁଫେଣା ତ ବିଭିନ୍ନ ଆଡ଼େ ଦେଖାଯାଏ । କିନ୍ତୁ ସଚିବାଳୟର ମହୁଫେଣା କଥା ନିଆରା । ଅନ୍ୟଆଡ଼େ ମହୁଫେଣାରୁ ମହୁସଂଗ୍ରହ କରାଯାଏ । ମହୁମାଛି ଯେପରି ଉଡ଼ି ନଯିବେ ସେଥିପ୍ରତି ଗୁରୁତ୍ୱ ଦିଆଯାଏ । ମହୁଫେଣା ହେଲେ ଶୁଭ ବୋଲି ଧରାଯାଏ । କିନ୍ତୁ ସଚିବାଳୟରେ ମହୁଫେଣା ହେଲେ ମନ୍ତ୍ରିମଣ୍ଡଳ ଭାଙ୍ଗେ । ମୁଖ୍ୟମନ୍ତ୍ରୀ ବଦଳି ଯାଆନ୍ତି । ମହୁଫେଣାକୁ ଭାଙ୍ଗିବାକୁ ପ୍ରଶାସନର ତର ସହେନାହିଁ । କୁଆଡ଼େ ସାଧାରଣ ପ୍ରଶାସନ ବିଭାଗ ସମ୍ମୁଖରେ ମହୁଫେଣା ବଢ଼ିଚାଲିବାରୁ ଜାନକୀ ବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ପଦରୁ ବିଦାୟ ହେଲେ । ପରବର୍ତୀ ମୁଖ୍ୟମନ୍ତ୍ରୀ ହେଲେ ଗିରିଧର ଗମାଙ୍ଗ । ତାଙ୍କ ସମୟରେ ଶିକ୍ଷା ବିଭାଗ ସମ୍ମୁଖରେ ମହୁଫେଣାଟିଏ ହୋଇଥିଲା । ଗିରିଧର ମୁଖ୍ୟମନ୍ତ୍ରୀ

ମୁକୁଟ ପିନ୍ଧିବା ପରେ ଏହି ମହୁଫେଣାକୁ ଭାଙ୍ଗିଦେବା ପାଇଁ ପ୍ରସ୍ତାବ ଦିଆଯାଇଥିଲା । କିନ୍ତୁ କେଜାଣି କାହିଁକି ମହୁଫେଣାଟି ଭଙ୍ଗା ଗଲା ନାହିଁ ।ଜାନକୀଙ୍କ ପରି ଗିରିଧରଙ୍କୁ ମଧ ମୁଖ୍ୟମନ୍ତ୍ରୀ ପଦରୁ ଆକସ୍ମିକ ଭାବେ ବିଦାୟ ନେବାକୁ ପଡ଼ିଥିଲା । ମହୁଫେଣା ଯୋଗୁଁ ଗିରିଧରଙ୍କ ବିଦାୟ ହେଲା ବୋଲି ସେତେବେଳେ ସଚିବାଳୟରେ ଚର୍ଚ୍ଚା ବି ହୋଇଥିଲା । ଏବେ ସଚିବାଳୟରେ ଏକ ମହୁଫେଣା ହୋଇଥିବାର ଦେଖାଗଲା । ନବୀନଙ୍କୁ ଶୁଭ ଦୃଷ୍ଟିରେ ଦେଖୁଥିବା କେତେକ କର୍ମଚାରୀଙ୍କ ନଜରରେ ଏହି ମହୁଫେଣାଟି ପଡ଼ିଲା । ସେମାନେ ତୁରନ୍ତ ମହୁଫେଣାଟିକୁ ଭାଙ୍ଗିଦେଇ ମହୁମାଛିଙ୍କୁ ଘଉଡ଼ାଇ ଦେଲେ । ମହୁଫେଣା ଭାଙ୍ଗିବା ସମୟରେ ସେମାନେ ବଡ଼ପାଟିରେ କହୁଥା'ନ୍ତି- ମହୁମାଛିଙ୍କୁ ଘଉଡ଼ାଅ ନ ହେଲେ ନବୀନ ସରକାରର ପତନ ଘଟିବ ।

## ଧେତ୍ ବାଜେ କଥା



ପ୍ରଥମ ବ୍ୟକ୍ତି : ଓଡ଼ିଶାରେ ବାତ୍ୟା ହେବା ବେଳେ ଆନ୍ଧ୍ରପ୍ରଦେଶ ମୁଖ୍ୟମନ୍ତ୍ରୀ ଚନ୍ଦ୍ରବାବୁ ନାଇଡୁ ଓଡ଼ିଶାକୁ ବହୁ ସାହାଯ୍ୟ କରିଥିଲେ । କିନ୍ତୁ ଆନ୍ଧ୍ରର ଦୁଃଖ ସମୟରେ ଆମ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କ ପାଖରେ ଠିଆ ହେଲେ ନାହିଁ ।

ଦ୍ୱିତୀୟ ବ୍ୟକ୍ତି : ଆମ ରାଜ୍ୟ ଓଡ଼ିଶା ଏବେ ଆର୍ଥିକ ଦୁର୍ଗତି ଦେଇ ଗତି କରୁଛି । ଏ କ୍ଷେତ୍ରରେ ଅନ୍ୟ ରାଜ୍ୟ ଆମକୁ ଟଙ୍କା ଦେବା କଥା । ଆମେ କାହିଁକି ଅନ୍ୟକୁ ଦେବା ?

ପ୍ରଥମ ବ୍ୟକ୍ତି : ନବୀନଙ୍କ ବାପା ବିଜୁ ପଟ୍ଟନାୟକଙ୍କୁ ଜାଣିଛ । ସେ ଆନ୍ଧ୍ରକୁ ସାହାଯ୍ୟ କରିଥିଲେ ବୋଲି ଆମ ଦୁଃଖରେ ଆନ୍ଧ୍ରବାସୀ ପାଖରେ ଆସି ଠିଆ ହେଲେ ।

ଦ୍ୱିତୀୟ ବ୍ୟକ୍ତି : ବାତ୍ୟା ସମୟରେ ବିଧାନସଭା ଅଧିବେଶନ କଥା ମନେଅଛି । ତତ୍କାଳୀନ ବାଚସ୍ପତି ଗୃହର ସଭ୍ୟମାନଙ୍କୁ ବାତ୍ୟା କ୍ଷତିଗ୍ରସ୍ତ ଲୋକଙ୍କ ପାଇଁ ସାହାଯ୍ୟ ନିମନ୍ତେ ବିଧାୟକମାନେ ମାସକର ଦରମା ଦାନ କରିବାକୁ ପ୍ରସ୍ତାବ ଦେଇଥିଲେ । ବାଚସ୍ପତିଙ୍କ ପ୍ରସ୍ତାବକୁ ଶୁଣି ସମସ୍ତେ ଚୁପ୍ ରହିଥିଲେ । ଏହାପରେ ବାଚସ୍ପତି ମାସକର ଦରମା ପରିବର୍ତ୍ତେ ଦିନକର ଦରମା ଦାନ କରିବାକୁ କହିଥିଲେ । ସେଥିରେ ମଧ କେହି ପାଟି ଫିଟାଇ ନଥିଲେ । ସମସ୍ତେ ପୂର୍ବପରି ଚୁପ୍ ହୋଇ ବସିରହିଥିଲେ । ଶେଷକୁ ବାଚସ୍ପତି କହିଥିଲେ ଯେ ସବୁ ରାଜ୍ୟର ବିଧାୟକମାନେ ମାସକର କିମ୍ବା ଦିନକର ଦରମା ଓଡ଼ିଶାର ବାତ୍ୟା କ୍ଷତିଗ୍ରସ୍ତ ଅଂଚଳ ପାଇଁ ଦାନ କରୁଛନ୍ତି । ଯଦି ଓଡ଼ିଶାର ବିଧାୟକମାନେ ସେହିପରି ଦାନ ନ କରନ୍ତି ତେବେ ସେଥିପାଇଁ ସେମାନଙ୍କୁ ନିନ୍ଦିତ ହେବାକୁ ପଡ଼ିବ ।

ପ୍ରଥମ ବ୍ୟକ୍ତି : ବିଧାୟକମାନେ ଯାହା କରିଥିଲେ ତାହା ଠିକ୍ । ଆମେ ସମସ୍ତଙ୍କ ଠାରୁ ଆଣୁ କିନ୍ତୁ କାହାକୁ ଦେଉନାହୁଁ । ଏହା ଆମ ସଂସ୍କୃତି । ଏଥିରୁ 'ନବୀନ' କିପରି ବାଦ୍ ପଡ଼ିବେ ?

ଦ୍ୱିତୀୟ ବ୍ୟକ୍ତି : ଧେତ୍, ବାଜେ କଥା ।

xxxxx

# ଜଉମୁଦା ଫାଇଲ

**ଫା**ଇଲ ତ ଫାଇଲ ପୁଣି ଜଉମୁଦା ଫାଇଲ କ'ଣ । ଏହା ଦେଖିବାକୁ ଆମକୁ ଯିବାକୁ ପଡ଼ିବ ରାଜ୍ୟ ସଚିବାଳୟର ଦ୍ୱିତୀୟ ମହଲାରେ ଥିବା ଅର୍ଥ ଓ ଅବକାରୀ ମନ୍ତ୍ରୀ ପ୍ରଫୁଲ୍ଲ ଘଡ଼ାଇଙ୍କ ପ୍ରକୋଷ୍ଠକୁ । ଯେତେବେଳେ ମନ୍ତ୍ରୀ ପ୍ରଫୁଲ୍ଲ ଘଡ଼ାଇ ପ୍ରକୋଷ୍ଠରେ ଉପସ୍ଥିତ ଥାଇ ଫାଇଲ କାମ କରୁଥିବେ ସେତେବେଳେ ଏହି ଦୃଶ୍ୟ ଦେଖିବାକୁ ମିଳିବ । ଏମିତି ତାଙ୍କୁ ମିଳିଥିବା ଅର୍ଥ ଓ ଅବକାରୀ ବିଭାଗ ମଧ୍ୟରୁ ଅର୍ଥ ବିଭାଗର ଫାଇଲ ପ୍ରାୟ ସବୁଦିନ ତାଙ୍କ ପାଖକୁ ଆସେ । କିନ୍ତୁ ଅବକାରୀ ବିଭାଗର ଫାଇଲର ସେତେ ଚଳପ୍ରଚଳ ନଥାଏ । ଆଉ ଯେତେବେଳେ ଫାଇଲ ଆସେ ସେତେବେଳେ ସେହି ଫାଇଲ ପଛରେ କିଛି ବ୍ୟବସାୟୀ କିମ୍ବା ଅଫିସର ଗୋଡ଼ାଇଥା'ନ୍ତି । ଏହା ପ୍ରଫୁଲ୍ଲଙ୍କ ନଜରକୁ ଆସିଲା । ପ୍ରଫୁଲ୍ଲ ଏହି ସମସ୍ୟାର ସମାଧାନ କରିବା ପାଇଁ ଏକ ଉପାୟ ବାହାର କଲେ । ସେହି ଉପାୟଟି ହେଲା ଅବକାରୀ ବିଭାଗରୁ ଯେତେବେଳେ ତାଙ୍କ ପାଖକୁ ଫାଇଲ ଆସିବ ତାହା ଖୋଲା ହୋଇ ନୁହେଁ । ମାନେ ଫାଇଲଟି ଖାମ୍ ଭିତରେ ରହିବ ଆଉ ସେଥିରେ ଜଉମୁଦା ସିଲ୍ ଲାଗିଥିବ । ଫାଇଲଟି ପୂରାପୂରି ସୁରକ୍ଷିତ ହୋଇ ପ୍ରଫୁଲ୍ଲଙ୍କ ପାଖକୁ ଆସିବ ଆଉ ପ୍ରଫୁଲ୍ଲ ସେହି ଜଉମୁଦା ଖାମ୍‌କୁ ଚିରି ଫାଇଲ ବାହାର କରିବେ । ପୁଣି ତୁରନ୍ତ ସେହି ଫାଇଲ କାମ ସାରିଦେବେ । ସେଦିନ ଏମିତି ଜଣେ ବ୍ୟକ୍ତି ପ୍ରଫୁଲ୍ଲଙ୍କ ଠାରୁ ଜଉମୁଦା ଫାଇଲ ସମ୍ପର୍କରେ ଜାଣିବାକୁ ଚାହିଁଲେ । ପ୍ରଫୁଲ୍ଲ କହିଲେ- ଛୋଟ ସାପର ବିଷ ଅଧିକ । ଅବକାରୀ ବିଭାଗ ଅନ୍ୟ ବିଭାଗ ତୁଳନାରେ ଛୋଟ ଅଟେ । କିନ୍ତୁ ଅନେକ ସମୟରେ ଏଠାରେ ବହୁ ମାରାତ୍ମକ ଫାଇଲର କାମ ହୁଏ । ଅଫିସରଙ୍କ ଠାରୁ ଫାଇଲ ଉପରକୁ ଆସିଲେ ସେହି ଖବର ମନ୍ତ୍ରୀ ଜାଣିବା ଆଗରୁ ସତେ ଯେମିତି ଖୋଲା ମାର୍କେଟକୁ ଚାଲିଯାଏ । ମାନେ ଫାଇଲ ପଛରେ ବ୍ୟବସାୟୀ ଠାରୁ ଆରମ୍ଭ କରି ଅଫିସର ଗୋଡ଼ାଇଥା'ନ୍ତି । ଆଉ ଫାଇଲରେ କ'ଣ ବିବରଣୀ ଦିଆଗଲା ତାହା ମଧ୍ୟ ସେମାନେ ଟିକିନିଖି ବୁଝିଦିଅନ୍ତି । ଏହି ଦୃଷ୍ଟିରୁ ଫାଇଲର

ଗୋପନୀୟତା ପାଇଁ ସେ ଏହି ଜଉମୁଦା ପ୍ୟାକେଟ୍ ବ୍ୟବସ୍ଥା କରିଛନ୍ତି । କିଛି ନହେଲେ ମଧ ସଚିବଙ୍କ ଠାରୁ ଫାଇଲ ତାଙ୍କ ପାଖକୁ ଆସିବା ବେଳକୁ ତାହା ଗୋପନୀୟ ହୋଇରହିବ । ମାନିବାକୁ ପଡ଼ିବ ପ୍ରଫୁଲ ଘଡ଼ାଇଙ୍କୁ । ନଚେତ୍ ଅର୍ଥ ବିଭାଗ ପରି ଏକ ଗୁରୁତ୍ୱପୂର୍ଣ୍ଣ ବିଭାଗକୁ ସେ ବର୍ଷବର୍ଷ ଧରି ସଫଳତାର ସହ ଚଳାଉ ନଥା'ନ୍ତେ । ସଚିବାଳୟର ସବୁ ଫାଇଲ ଏମିତି ଖାମ୍ ଭିତରେ ଜଉମୁଦା ହୋଇ ଆସିବା ନିମନ୍ତେ ପ୍ରଫୁଲ୍ଲ ବରଂ କ୍ୟାବିନେଟ ବୈଠକରେ ପ୍ରସ୍ତାବ ଦେଇ ତାହାକୁ ଗୃହୀତ କରାନ୍ତୁ । ଏହା ହେଲେ ସଚିବାଳୟ ଫାଇଲର ଗୋପନୀୟତା ରହିପାରନ୍ତା ।

# ଚିତ୍ରକର ନବୀନ

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ଲେଖକ ବୋଲି ଅନେକ ସମୟରେ ମଧ ବର୍ଣ୍ଣନା କରାଯାଇଥାଏ । ଏମିତି ଯେଉଁ କେତୋଟି ଉଲ୍ଲେଖନୀୟ ଇଂରାଜୀ ପୁସ୍ତକ ନବୀନ ରଚନା କରିଛନ୍ତି ସେଗୁଡ଼ିକ ମଧ୍ୟରେ ଅଛି 'ଏ ସେକେଣ୍ଡ ପାରାଡାଇଜ୍', 'ଏ ଡେଜର୍ଟ କିଙ୍ଗଡମ୍', 'ଦି ଗାର୍ଡନ ଅଫ୍ ଲାଇଫ୍' । ମାନେ ନବୀନ ଜଣେ କ୍ରିଏଟିଭ୍ ବ୍ୟକ୍ତି । ଭାରତୀୟ ଡିଜାଇନକୁ ଆନ୍ତର୍ଜାତୀୟ ସ୍ତରରେ ସ୍ୱୀକୃତିଲାଭ କରାଇବା ସହିତ ଭାରତୀୟ ହସ୍ତତନ୍ତ ଓ ବୟନଶିଳ୍ପରେ କାରିଗରଙ୍କ ପାଇଁ ଯେପରି ବ୍ୟାପକ ସୁବିଧାସୁଯୋଗ ମିଳିବ ସେ ଦିଗରେ ସେ ରାଜନୀତିକୁ ଆସିବା ପୂର୍ବରୁ କାମ କରୁଥିଲେ । ପୁଣି ଭାରତୀୟ କଳା ଓ ସଂସ୍କୃତିର ବାର୍ତ୍ତାବାହକ ବୋଲି କୁହାଯାଉଥିବା ଇନ୍‌ଟାକ୍‌ର ମଧ ସେ ପ୍ରତିଷ୍ଠାତା ସଭ୍ୟ । ତାଙ୍କର ସଂସ୍କୃତି ଓ ପରିବେଶ କ୍ଷେତ୍ରରେ ବିଶେଷ ଆଗ୍ରହ ରହିଛି । ଅବସର ସମୟ ପାଇଲେ ସେ ପଢ଼ନ୍ତି । ପୁଣି ସଂସ୍କୃତି, ଇତିହାସ ଓ ପରିବେଶ ସମ୍ପର୍କରେ ହେଉଥିବା କାର୍ଯ୍ୟକ୍ରମକୁ ସେ ମଧ ମନ ଦେଇ ଦେଖନ୍ତି । ଅନେକ ସମୟରେ ମଧ ଆଶା କରାଯାଉଥିଲା ଯେ ନବୀନଙ୍କ ପରି ଜଣେ କ୍ରିଏଟିଭ୍ ବ୍ୟକ୍ତି ରାଜନୀତିକୁ ଆସିଥିବାରୁ ତାଙ୍କୁ ରାଜନୀତି ଭଲ ଲାଗିବ ନାହିଁ । ୧୯୯୭ ମସିହାରୁ ଏଯାବତ୍ ନବୀନଙ୍କୁ କେତେବେଳେ ରାଜନୀତି ପିତା ଲାଗୁଛି ତାହାର ଟେର୍ କେହି ପାଇନାହାନ୍ତି । ଅବଶ୍ୟ ରାଜନୀତିରେ ପୂରା ସମୟ ଦେଉଥିବାରୁ ନବୀନଙ୍କର କ୍ରିଏଟିଭିଟି ନଷ୍ଟ ହୋଇଗଲାଣି ବୋଲି ମଧ ଚର୍ଚ୍ଚା ହୁଏ । କିନ୍ତୁ ନବୀନ ରାଜନୀତିରୁ ଟିକିଏ ସମୟ ମିଳିଲେ କ୍ରିଏଟିଭ୍ ଆଡ଼କୁ ଚାଲିଯାଆନ୍ତି । ଏମିତି ତାଙ୍କର ମୁଡ୍ ଯଦି ଭଲ ଥିବ ତା' ହେଲେ ଯାହାଙ୍କ ସହିତ ସେ ଗପୁଥିବେ ତାଙ୍କୁ ଦେଖି ସେହି ସମୟ ମଧ୍ୟରେ ତାଙ୍କର ଚିତ୍ରଟିଏ ମଧ ସେ ଆଙ୍କି ଦିଅନ୍ତି । ଆଉ ସେ ଚିତ୍ରକୁ ଦେଖିଦେଲେ ନବୀନଙ୍କୁ ଜଣେ ଦାମୀ ଚିତ୍ରକର ବୋଲି ଯେକୌଣସି ବ୍ୟକ୍ତି କହିବେ ହିଁ କହିବେ । ସେହି ଚିତ୍ରଟିରେ କେଉଁଠି ବି ଖୁଣ ରହି ନଥାଏ । ବୋଧହୁଏ ନବୀନଙ୍କର ଏହି କ୍ରିଏଟିଭ୍ ପାଇଁ ତାଙ୍କ ମନରେ

ବିରକ୍ତି ଭାବ ଦେଖାଯାଇ ନଥାଏ । ଏମିତି ମଣିଷ ହେଲେ ନିଶ୍ଚିତ ଭାବେ ହସକାନ୍ଦ ଭରା ଦୁନିଆ ସହିତ ରହିବ ହିଁ ରହିବ । ନବୀନଙ୍କ ମନରେ ଦୁଃଖ ଆଉ ରାଗ ଯେ ବେଳେବେଳେ ଆସୁ ନଥିବ ତାହା ମଧ୍ୟ କୁହାଯିବନାହିଁ । ସୃଷ୍ଟିକର୍ତା ଭଗବାନଙ୍କ ପାଖରେ ମଧ୍ୟ ଦୁଃଖ ଆଉ ରାଗ ଦେଖିବାକୁ ମିଳିଥାଏ । ନବୀନ ଯେହେତୁ ଜଣେ ସାଧାରଣ ମଣିଷ ତେଣୁ ସେ ମଧ୍ୟ ଏହି ଦୁଃଖ ଓ ରାଗ ମଧ୍ୟ ଦେଇ ନିଶ୍ଚିତ ଭାବେ ଯାଉଥିବେ । ତେବେ କାହିଁକି ନବୀନଙ୍କ ଠାରେ ଦୁଃଖ ଆଉ ରାଗ ଦେଖାଯାଉନାହିଁ ତାହାର କାରଣ ଖୋଜିବାକୁ ଆଉ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । କ୍ରିଏଟିଭ୍ ଲୋକମାନେ ଚିତ୍ରଟିଏ ଆଙ୍କିଦେଲେ କି ବହି ପଢ଼ିଦେଲେ କି ଗଛ ଓ ପରିବେଶକୁ ଚାହିଁଦେଲେ କି କିଛି ଲେଖାଲେଖି କରିଦେଲେ ତାଙ୍କର ଦୁଃଖ ଆଉ ରାଗ ଆପେଆପେ ଉଭେଇଯାଏ । ଏମିତି ନବୀନ କ୍ରିଏଟିଭ୍ ଲୋକ ହୋଇ ଚିତ୍ର ଆଙ୍କନ୍ତି, ବହି ପଢ଼ନ୍ତି, ଲେଖାଲେଖି କରନ୍ତି ପୁଣି ଗଛ ଓ ପରିବେଶ ପ୍ରତି ଅଧିକ ଆଗ୍ରହ ଦେଖାଇଥା'ନ୍ତି । ଏହି ଦୃଷ୍ଟିରୁ ନବୀନଙ୍କ ପାଖରେ ରାଗ ଆଉ ଦୁଃଖ ପଶିପାରୁନାହିଁ । ଦେଖାଯାଉ ରାଜନୀତିରେ ପୂର୍ଣ୍ଣ ସମୟ ଦେଇ ନବୀନ କେତେଦିନ କ୍ରିଏଟିଭ୍ ବ୍ୟକ୍ତି ହୋଇରହିପାରୁଛନ୍ତି ।

## ମହାରଥୀଙ୍କ ତୁଳସୀମାଳ

ଏମିତି ଦରବାର ଚାଲିଥିବା ବେଳେ ପିପିଲି ବିଧାୟକ ପ୍ରଦୀପ ମହାରଥୀ ତାଙ୍କର ଗୁମର କଥାଟିଏ ଫିଟାଇଦେଲେ । ସେ ପିନ୍ଧିଥିବା ତୁଳସୀମାଳିଟିକୁ ଅନେକ ଲୋକ ଚାହୁଁଥିବାରୁ ସେ ଆଉ ଥୟ ହୋଇରହିପାରିଲେ ନାହିଁ । ପ୍ରଦୀପ ମହାରଥୀ କହିଲେ- କାହିଁକି ଏହି ତୁଳସୀମାଳିକୁ ଚାହୁଁଛ । ଏହି ମାଳିର ଗୁମର କଥା କେହି ଜାଣିନାହାନ୍ତି । ପିପିଲିରୁ ସେ ପାଂଚଥର ବିଧାୟକ ହେଲେଣି । ତାଙ୍କର ପାରମ୍ପରିକ ପ୍ରତିଦ୍ୱନ୍ଦ୍ୱି ହେଉଛନ୍ତି କଂଗ୍ରେସର ଯୁଧିଷ୍ଠିର ସାମନ୍ତରାୟ । ସେ ମୋଟା ସୁନାଚେନ୍ ବେକରେ ପକାନ୍ତି । ଏହା କୁଆଡ଼େ ତାଙ୍କ ପତ୍ନୀ ପ୍ରତିଭାଙ୍କ ନଜରକୁ ଆସିଥିଲା । ସେ ଆଉ ଧୈର୍ଯ୍ୟ ଧରି ରହିପାରିଲେ ନାହିଁ । ସୁନାଦୋକାନକୁ ଯାଇ ଏକ ମୋଟା ସୁନାଚେନ୍ ତାଙ୍କ ପାଇଁ କିଣିଲେ । ଘରକୁ ଆସି ବଡ଼ ପ୍ରେମରେ ତାଙ୍କୁ କହିଲେ- ସେହି ସୁନାଚେନ୍‌ଟିକୁ ପିନ୍ଧିବା ପାଇଁ । ପତ୍ନୀଙ୍କ ପ୍ରେମଭରା କଥା ଶୁଣି ପ୍ରଦୀପ ସୁନାଚେନ୍‌ଟିକୁ ହାତକୁ ନେଲେ । ଚେନ୍‌ଟି ବହୁତ ମୋଟା ଥିଲା । ପତ୍ନୀଙ୍କୁ ପ୍ରଦୀପ ପଚାରିଲେ- କେଉଁଠୁ ଆଣିଲ ଏହି ସୁନାଚେନ୍‌ଟି । ପତ୍ନୀ ପ୍ରତୀଭା ଚଟାପଟ୍ କହିଲେ- ସୁନାଦୋକାନରୁ । ପ୍ରଦୀପ କହିଲେ- କେତେ ଟଙ୍କା ପଡ଼ିଲା । ପ୍ରତିଭା କହିଲେ- ୧ ଲକ୍ଷ ୯୦ ହଜାର ଟଙ୍କା । ପ୍ରଦୀପ କହିଲେ- ଏତେ ଟଙ୍କା ମୂଲ୍ୟର ସୁନାଚେନ୍ ପିନ୍ଧିବା ପାଇଁ ତାଙ୍କର ଆଦୌ ଆଗ୍ରହ ନାହିଁ । ପ୍ରତିଭା କହିଲେ- ତାଙ୍କ ପ୍ରତିଦ୍ୱନ୍ଦ୍ୱି ଯୁଧିଷ୍ଠିର ସାମନ୍ତରାୟ

ଏହାଠାରୁ ଅଧିକ ମୋଟା ସୁନାଚେନ୍ ପିନ୍ଧିଛନ୍ତି । ପ୍ରଦୀପ ମହାରଥୀ ସେହିଭଳି ସୁନାଚେନ୍ ପିନ୍ଧିଲେ ଯାଇ ତାଙ୍କୁ ପିପିଲି ଲୋକେ ଖାତିର କରିବେ । ପ୍ରଦୀପ ଜୋର୍‌ରେ ହସିଲେ ଏବଂ କହିଲେ- ମୋର ସୁନାଚେନ୍ ଦରକାର ନାହିଁ । ମୋ ବେକରେ ଠାକୁର ଥିଲେ ହିଁ ଯଥେଷ୍ଟ । ପ୍ରଦୀପଙ୍କ ଏହି କଥାରୁ ସେତେବେଳେ ପତ୍ନୀ ପ୍ରତିଭା କିଛି ବୁଝିପାରି ନଥିଲେ । ଦରବାରରେ ଥିବା ଲୋକମାନଙ୍କୁ ମଧ୍ୟ ପ୍ରଦୀପ ପଚାରିଲେ ଯେ ତାଙ୍କ କଥା ସେମାନେ ବୁଝିପାରୁଛନ୍ତି କି ନାହିଁ । ସମସ୍ତେ 'ଥ' ହୋଇ ଚାହିଁରହିଥା'ନ୍ତି । ପ୍ରଦୀପ କହିଲେ- ସେ ଜାଣିଛନ୍ତି ଆଜିକାଲି ଯୁଗରେ ସୁନା ପ୍ରତି ସମସ୍ତଙ୍କର ଆଗ୍ରହ ରହିଛି । କିନ୍ତୁ ତୁଳସୀ ହେଉଛି ଆମ ପାଇଁ ଅମୂଲ୍ୟ । ତାହାର ମୂଲ୍ୟ କେହି କହିପାରିବେ ନାହିଁ । ଏହା କହି ସେ ବେକରେ ପକାଇଥିବା ତୁଳସୀମାଳିଟିକୁ ଦେଖାଇଲେ ଆଉ ମୁଣ୍ଡିଆ ବି ମାରିଲେ । କହିଲେ- ସୁନାଚେନ୍ ପକାଇଥିଲେ କ'ଣ ଏମିତି ମୁଣ୍ଡିଆ ମାରିପାରିଥା'ନ୍ତି । ଆଉ ଏତେ ଗର୍ବରେ ଏହି କଥା କହିପାରିଥା'ନ୍ତି । ପ୍ରଦୀପଙ୍କର ଏହି କଥା ଶୁଣି ସେଠାରେ ଉପସ୍ଥିତ ଥିବା ଲୋକମାନେ ସେ ଠିକ୍ କହୁଛନ୍ତି ବୋଲି କହୁଥିବାର ଦେଖାଯାଇଥିଲା । ସେତେବେଳକୁ ପ୍ରଦୀପଙ୍କର ଯାତ୍ରା ଷ୍ଟାଇଲ ଆରମ୍ଭ ହୋଇଯାଇଥିଲା । ଆଉ ଯାତ୍ରା ଷ୍ଟାଇଲରେ ପ୍ରଦୀପ କହିଲେ- ଯାହା କହେ ମହାରଥୀ ତାହା ସତ । ପ୍ରଦୀପ ମହାରଥୀଙ୍କର ଏହି ଯାତ୍ରା ଷ୍ଟାଇଲର ଡାଇଲଗ୍ ଶୁଣି ସେଠାରେ ଥିବା ଲୋକମାନେ ହୋ ହୋ ହୋଇ ହସି ଉଠିଲେ ଆଉ ତାଙ୍କ ସହିତ ତାଳ ଦେଇ ହସିଲେ ମହାରଥୀ ।

# ପିପିଲି ଲାଇଭ୍ ଓ ସୂର୍ଯ୍ୟ

ଏ 'ପିପିଲି ଲାଇଭ୍' କ'ଣ । ଏହା ସାଧାରଣ ଲୋକଟିଏ ବୁଝିପାରିବ ନାହିଁ । ଯଦି ଅବିଭକ୍ତ ପୁରୀ ଜିଲା ଲୋକଟିଏ ଏହା ଶୁଣିବ ତେବେ ନିଶ୍ଚିତ ଭାବେ ଭାବିବ ଯେ, ଏହା ପୁରୀରାସ୍ତାରେ ପଡୁଥିବା ପିପିଲିର ଚାନ୍ଦୁଆ କଥା ହୋଇପାରେ । କିନ୍ତୁ ପ୍ରସଙ୍ଗ ତାହା ନୁହେଁ । ଏହା ଏକ ହିନ୍ଦୀ ଚଳଚ୍ଚିତ୍ରର ନାମକରଣ । ଏହି ଚଳଚ୍ଚିତ୍ରଟି ରାଜନୀତି ପ୍ରତି ଆଗ୍ରହ ରଖୁଥିବା ବ୍ୟକ୍ତିମାନଙ୍କୁ ବେଶ୍ ଉତ୍ସାହିତ କରିଛି । ଏହି ସିନେମାର ସତେ ଯେମିତି ବ୍ରାଣ୍ଡଆମ୍ବାସଡ଼ର ପାଲଟି ଯାଇଛନ୍ତି ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ ସୂର୍ଯ୍ୟନାରାୟଣ ପାତ୍ର । ଏମିତି ସେଦିନ ସୂର୍ଯ୍ୟ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ବସି ଫାଇଲ କାମ କରୁକରୁ ହଠାତ୍ କେତେକ ନେତାଙ୍କୁ ସେଠି ଦେଖି ସେ ବେଶ୍ ଉତ୍ସାହିତ ହୋଇଯାଇଥିଲେ । କହୁକହୁ କହିଦେଲେ 'ପିପିଲି ଲାଇଭ୍' ଚଳଚ୍ଚିତ୍ର କଥା । କେନ୍ଦ୍ର ସରକାର ଓ ରାଜ୍ୟ ସରକାର ପରସ୍ପର ବିରୋଧୀ ହୋଇ କେମିତି ଅନାହାର ମୃତ୍ୟୁକୁ ନେଇ ରାଜନୀତି କରୁଛନ୍ତି ତାହାର ଏକ ଝଲକ୍ ଏହି 'ପିପିଲି ଲାଇଭ୍' ଚଳଚ୍ଚିତ୍ରରେ ରହିଛି । ରାଜନୀତି କରୁଥିବା ବ୍ୟକ୍ତିମାନେ

ଏହି ସିନେମା ଦେଖିବା ଉଚିତ୍ ବୋଲି ସୂର୍ଯ୍ୟ ସେଦିନ ମତ ଦେଲେ । ଆଉ ସବୁ ପ୍ରଶଂସା ଅମୀର ଖାଁଙ୍କ ଉପରେ ଢାଳିଦେଲେ । ଅବଶ୍ୟ ସେଦିନ ଯେଉଁମାନଙ୍କୁ ସୂର୍ଯ୍ୟ 'ପିପିଲି ଲାଇଭ୍' ସମ୍ପର୍କରେ ବଖାଣୁଥିଲେ ସେମାନେ କେହି ଏହି ସିନେମା ଦେଖି ନଥିଲେ । ସୂର୍ଯ୍ୟ ଏମିତି କହୁକହୁ କହିଦେଲେ ଯେ ସିନେମା ଦେଖିବା ଅପରାଧ ତାହା ନୁହେଁ । ବରଂ ସିନେମାରେ ବହୁ ଶିକ୍ଷଣୀୟ ପ୍ରସଙ୍ଗ ରହିଛି । ସେ ବରାବର ସିନେମା ଦେଖନ୍ତି । ଏମିତି ସିନେମା ଦେଖିଲେ ମନ ଖୁସି ରହେ । ଟେନ୍‌ସନ୍ କମିଯାଏ । ମାନିବାକୁ ପଡ଼ିବ ସୂର୍ଯ୍ୟଙ୍କୁ । ନହେଲେ ଛାତ୍ର ଜୀବନରେ ଯେଉଁ ସିନେମା ଦେଖା ନିଶା ତାଙ୍କର ଥିଲା ରାଜନୀତିରେ ଅଭିଜ୍ଞ ନେତା ହେବାପରେ ମଧ୍ୟ ସେହି ନିଶାକୁ ସେ ବଜାୟ ରଖି ନଥା'ନ୍ତେ ।

# ପାଟଶାଣୀଙ୍କ ଗୋଡ଼ମୋଡ଼ା

**ସେ**ଦିନ ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀ ଦରବାରରେ ବସିଥା'ନ୍ତି । ହଠାତ୍ ତାଙ୍କ ଆଗରେ ପଡ଼ିଥିବା ଏକ ଚୌକି ଉପରେ ସେ ଗୋଡ଼ ଥୋଇଲେ । ସେଠାରେ ଥିବା କେହି ଜଣେ ବ୍ୟକ୍ତି ଏହା ଦେଖି ତାଙ୍କ ଗୋଡ଼ ପାଖକୁ ଚାଲିଆସିଲେ ଆଉ ଗୋଡ଼କୁ ଛୁଇଁ ମୁଣ୍ଡିଆଟିଏ ମାରିଲେ । ଏହାପରେ ସେହି ବ୍ୟକ୍ତି ଜଣଙ୍କ ପ୍ରସନ୍ନଙ୍କ ଗୋଡ଼ର ଆଙ୍ଗୁଠି ଫୁଟାଇ ଚାଲିଲେ । ସେତେବେଳକୁ ପ୍ରସନ୍ନ ତାଙ୍କ ପାଖକୁ ଆସିଥିବା ଜଣେ ବ୍ୟକ୍ତିଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ସେହି ବ୍ୟକ୍ତି ଜଣଙ୍କ ତାଙ୍କୁ ବଢ଼ାଇ ଦେଇଥିବା ଦରଖାସ୍ତଟିକୁ ସେ ପଢୁଥିଲେ । ପ୍ରସନ୍ନଙ୍କ ଗୋଡ଼ ମୋଡୁଥିବା ଲୋକଟି ତାଙ୍କର ଗୋଡ଼ ଆଙ୍ଗୁଠିକୁ ଫୁଟାଇ ଚାଲିଥାଏ । ଏଥିରେ ପ୍ରସନ୍ନ ପ୍ରତିକ୍ରିୟା ପ୍ରକାଶ କରୁ ନଥିଲେ । ଯେତେବେଳେ ଆଙ୍ଗୁଠି ଫୁଟା ଛାଡ଼ି ଦେଇ ସେହି ବ୍ୟକ୍ତି ଜଣଙ୍କ ଜୋର୍‌ରେ ଗୋଡ଼ ମୋଡ଼ିଲେ ସେତେବେଳେ ପ୍ରସନ୍ନ ଜୋର୍‌ରେ ପାଟି କରି କହିଲେ- କାହିଁକି ଗୋଡ଼ ମୋଡୁଛୁ । ମୁଁ ମୋଡ଼ା ଖାଏନାହିଁ । କିଏ ମୋଡ଼ା ଖାଏ ଆଉ କିଏ ମୋଡ଼େ ସେ ସମ୍ପର୍କରେ ବଖାଣିଲେ ପ୍ରସନ୍ନ । ସେ କହିଲେ- ସ୍ୱାମୀକୁ ବଶ କରିବା ପାଇଁ ସ୍ତ୍ରୀ ତାଙ୍କର ଗୋଡ଼ ମୋଡ଼େ । ଏହି ଗୋଡ଼ମୋଡ଼ା ଅଭ୍ୟାସ ହୋଇଗଲେ ସ୍ୱାମୀ ସେହି ସମୟରେ ସ୍ତ୍ରୀକୁ ହିଁ ମନେ ପକାଇଥାଏ । ଆଉ ସ୍ତ୍ରୀ ଏହି ସୁଯୋଗକୁ ବେଶ୍ ସଦ୍‌ବ୍ୟବହାର କରେ । ଏହା ସେ ଭଲ ଭାବେ ଜାଣିଛନ୍ତି । ଆଜି ନୁହେଁ କେଉଁ ଆଦିମକାଳରୁ ଏହି ଗୋଡ଼ମୋଡ଼ା ପ୍ରଥା ଚାଲିଆସିଛି । ସେ କିନ୍ତୁ ଏହି ଗୋଡ଼ମୋଡ଼ା ଠାରୁ ଦୂରରେ ଅଛନ୍ତି । ଯେଉଁଥିପାଇଁ କେବେବି ତାଙ୍କର ମନେ ପଡ଼େନାହିଁ ସ୍ତ୍ରୀ ପାଖରେ ଥିଲେ ଗୋଡ଼ ମୋଡ଼ି ଦିଅନ୍ତା ବୋଲି । ଯେଉଁ ସ୍ତ୍ରୀ ସବୁଦିନ ସ୍ୱାମୀର ଗୋଡ଼ ମୋଡ଼େ ସେହି ସ୍ୱାମୀ ନିଶ୍ଚିତ ଭାବେ ସ୍ତ୍ରୀ ବୋଲରେ ଉଠ୍‌ବସ୍ ହେବ ହିଁ ହେବ । ସ୍ତ୍ରୀ ଗୋଡ଼ ମୋଡୁ ନଥିବାରୁ ତାଙ୍କର ସ୍ତ୍ରୀଙ୍କ ଦ୍ୱାରା ଉଠ୍‌ବସ୍ ହେବାର ନାହିଁ । ଏହାପରେ ପ୍ରସନ୍ନ ଦୁଇଟି ଘଟଣା ସମ୍ପର୍କରେ

ବର୍ଣ୍ଣନା କଲେ । ପାର୍ଲାମେଂଟ କମିଟି ଯାଇଥିଲା ଥାଇଲାଣ୍ଡ । ସେଠାକୁ ଯିବା ପୂର୍ବରୁ କମିଟିରେ ଯାଇଥିବା ସାଂସଦମାନେ ଗୋଡ଼ ଘସା ଆଉ ମାଲିସ୍ ପାଇଁ ବରାଦ କରିଦେଇଥିଲେ । ଏମିତି ଥାଇଲାଣ୍ଡରେ ସୁନ୍ଦରୀ ମହିଳାମାନେ ବଡ଼ ସୁନ୍ଦର ଭାବେ ଦେହ ଘସି ଦିଅନ୍ତି ଆଉ ଗୋଡ଼ ମୋଡ଼ି ଦିଅନ୍ତି ପୁଣି ମାଲିସ୍ କରନ୍ତି । ସୁନ୍ଦରୀ ମହିଳାଙ୍କ ଠାରୁ ମାଲିସ୍ ହେବା ନିମନ୍ତେ ସାଂସଦମାନେ ବେଶ୍ ଆଗ୍ରହ ପ୍ରକାଶ କରିଥିଲେ । ଭାରତରୁ ଯାଇଥିବା ସାଂସଦମାନଙ୍କୁ ଥାଇଲାଣ୍ଡରେ ସୁନ୍ଦରୀ ମହିଳାମାନେ ମାଲିସ୍ କରିଥିଲେ । କିନ୍ତୁ ସେ ଏକମାତ୍ର ସାଂସଦ ଯେ କି ଏହି ମାଲିସ୍ ଠାରୁ ଦୂରେଇ ରହିଥିଲେ । ଏହାପରେ ସେହି ପାର୍ଲାମେଂଟ କମିଟି ଚୀନ୍ ଗସ୍ତ କଲେ । ଥାଇଲାଣ୍ଡର ସୁନ୍ଦରୀ ମହିଳାଙ୍କର ମାଲିସ୍ ସେମାନଙ୍କୁ ବେଶ୍ ଆନନ୍ଦ ଦେଇଥିଲା । ଚୀନ୍ ଯିବା ପୂର୍ବରୁ ସେମାନେ ଭାବି ନେଇଥିଲେ ଯେ, ଥାଇଲାଣ୍ଡରେ ଯେପରି ସୁନ୍ଦରୀ ମହିଳାମାନେ ସେମାନଙ୍କୁ ମାଲିସ୍ କରିଥିଲେ ସେହିପରି ଚୀନ୍‌ରେ ମଧ୍ୟ ସୁନ୍ଦରୀ ମହିଳା ସେମାନଙ୍କୁ ମାଲିସ୍ କରିବେ ବୋଲି । ଯେଉଁଥିପାଇଁ ପୂର୍ବରୁ ବରାଦ କରିଦେଇଥିଲେ ମାଲିସ୍ ହେବା ପାଇଁ । ଚୀନ୍‌ରେ ପହଂଚିବା ପରେ ସମସ୍ତେ ତୁରନ୍ତ ଜାଣିବାକୁ ଚାହିଁଲେ କେତେବେଳେ ସେମାନଙ୍କୁ ମାଲିସ କରିବା ପାଇଁ ସୁନ୍ଦରୀ ମହିଳା ଆସିବେ ବୋଲି । କେତେକ ମଧ୍ୟ ମାଲିସ୍ ହେବା ପାଇଁ ବ୍ୟଗ୍ରତା ପ୍ରକାଶ କଲେ । ଏହାପରେ ସେମାନେ ରହୁଥିବା ପ୍ରକୋଷ୍ଠକୁ ମାଲିସ୍ କରାଯିବା ପାଇଁ ସମସ୍ତ ସାମଗ୍ରୀ ପଠାଗଲା । ଏହି ମାଲିସ୍ ସାମଗ୍ରୀକୁ ଦେଖି ସେମାନେ ଅତ୍ୟନ୍ତ ଖୁସି ହୋଇଯାଇଥିଲେ । ହଠାତ୍ ଦେଖାଗଲା ଛୋଟିଆ କୌପୁନି ପିନ୍ଧି କଚ୍ଛା ମାରି ବହୁ ପହିଲମାନ ସେଠାକୁ ଆସିଗଲେ । ଜଣେ ସାଂସଦଙ୍କୁ ଜଣେ ଲେଖାଏଁ ପହିଲାମାନ ମାଲିସ୍ କଲେ । ସେମାନଙ୍କର ମାଲିସ୍‌ରେ ସାଂସଦମାନେ ମାଆଲୋ, ବାପାଲୋ ଚିତ୍କାର କରୁଥିବାର ଦେଖାଗଲା । ଆଉ ମାଲିସ୍ ହେବାର କିଛି ସମୟ ପରେ ସେମାନେ ଆଉ ମାଲିସ୍ ହେବେନାହିଁ ବୋଲି କହିବାରୁ ସେହି ପହିଲମାନ ମାନେ ସେଠାରୁ ଚାଲିଯାଇଥିଲେ । ଅନେକ ମଧ୍ୟ କହିଲେ ଯେ ଆଉ କିଛି ସମୟ ମାଲିସ୍ ହୋଇଥିଲେ ସେମାନଙ୍କର ହାତଗୋଡ଼ ଭାଙ୍ଗିଯାଇଥା'ନ୍ତା ବୋଲି । ସେହିଠାରୁ ହିଁ କମିଟିରେ ଯାଇଥିବା ସାଂସଦମାନଙ୍କ ମନରୁ ମାଲିସ୍ ନିଶା ଛାଡ଼ିଯାଇଥିଲା ବୋଲି ପ୍ରସନ୍ନ କହି ଜୋର୍‌ରେ ହସିଲେ । ତାଙ୍କ ହସ ସହିତ ମଧ୍ୟ ଦରବାରରେ ଥିବା ଲୋକମାନେ ହସି ଚାଲିଲେ । ପ୍ରସନ୍ନ ତାଙ୍କୁ ମୋଡୁଥିବା ସେହି ଲୋକଟିକୁ କହିଲେ- କେବେ ହେଲେ ମୋତେ ମାଲିସ୍ କରିବାକୁ ଆସିବୁ ନାହିଁ । ଜାଣିଲୁ ତ ମାଲିସ୍‌ର ମଜା କ'ଣ ବୋଲି । ସେହି ଲୋକ ଜଣକ କହିଲେ- ଆଜ୍ଞା, ମାଲିସ୍ କରିବା ତାଙ୍କର ଉଦ୍ଦେଶ୍ୟ ନୁହେଁ । ପୂଜା ଅଛି ତ ତେଣୁ ମାଲିସ୍ ଟିକିଏ କରିଦେଲେ ପୂଜା ଖର୍ଚ୍ଚ ମିଳିଯିବ । ଆଉ ଯେଉଁଠିକୁ ସେ ଯାଉଛନ୍ତି

ସେଠାରେ ମାଲିସ୍ କରିବା ଯୋଗୁଁ ହିଁ ପୂଜା ଖର୍ଚ୍ଚ ମିଳୁଛି । ପ୍ରସନ୍ନ କହିଲେ- ମୋ ଠୁ ପୂଜା ଖର୍ଚ୍ଚ ନେଇ ଅନ୍ୟ କାହାକୁ ମାଲିସ୍ କର । କିନ୍ତୁ ମୋର ଗୋଡ଼ ମୋଡ଼ିବାକୁ କେବେ ସାହସ କରିବୁ ନାହିଁ ।

# ପ୍ୟାରୀଙ୍କ ଗିଲାସ

**ସା**ଧାରଣତଃ ଚା' ପାନ ହେଲେ କପ୍‌ପ୍ଲେଟ୍‌କୁ ଖୋଜା ପଡ଼ିଥାଏ । କିନ୍ତୁ କିଛି ବ୍ୟକ୍ତି ଅଛନ୍ତି ଯେଉଁମାନଙ୍କୁ କପ୍‌ପ୍ଲେଟ୍ ଭଲ ଲାଗେନାହିଁ । ହୋଇପାରେ ସେମାନେ ଖାଂଟି ଦେଶୀ ହୋଇ ରହିବାକୁ ଚାହିଁ ଥାଇପାରନ୍ତି । ଏବେ ସେମିତି ଜଣେ ବ୍ୟକ୍ତିଙ୍କ ପାଖକୁ ଯିବା । ସେ ହେଲେ ବିଜେଡିର ପ୍ରକୃତ କ୍ଷମତାକେନ୍ଦ୍ର ତଥା ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ଏମିତି ଆଇଏଏସ୍ ଅଫିସର ଥିବାବେଳେ ତାଙ୍କର ଅନେକ ଅଭ୍ୟାସ ବି ଥିଲା । କୁଆଡ଼େ ସେ ଥିଲେ ଜଣେ ଚେନ୍‌ସ୍ମୋକର୍ । ତେବେ ବିଜେଡିର କର୍ଣ୍ଣଧାର ହୋଇଯିବା ପରେ ପ୍ୟାରୀମୋହନଙ୍କର ଯୁବକ ସମୟର ଅନେକ ଅଭ୍ୟାସ ଆଉ ଦେଖିବାକୁ ମିଳୁନାହିଁ । ତେବେ ଗୋଟିଏ ଅଭ୍ୟାସ ତାଙ୍କର ରହିଛି । ତାହା ହେଲା ଚା' ପିଇଲେ ସେ କେବେବି କପ୍‌ପ୍ଲେଟ୍‌ରେ ପିଅନ୍ତି ନାହିଁ । କାଚଗ୍ଲାସ୍‌ରେ ଚା' ଆସିବ ଆଉ ତାହାକୁ ସେ ପିଅନ୍ତି । ଅନେକ କହନ୍ତି ଯେ, କୁଆଡ଼େ କାଚଗ୍ଲାସ୍‌ରେ ଚା' ପିଇଲେ ବୟସ ଯେତିକି ବଢ଼େ ବୁଦ୍ଧି ମଧ ସେହି ଅନୁଯାୟୀ ପ୍ରଖର ହୁଏ । ଅବଶ୍ୟ ଆଉ କାହା ପାଇଁ ଏହା ସତ କି ମିଛ ହୋଇଥାଇପାରେ । କିନ୍ତୁ ପ୍ୟାରୀମୋହନଙ୍କ ପାଇଁ ଏହା ଖାଂଟି ସତ ବୋଲି କୁହାଯାଇପାରେ । ୨୦୦୦ ମସିହା ବେଳକୁ ପ୍ୟାରୀମୋହନ ବିଜେଡି ରାଜନୀତିର ସେତେ ଜୋର୍‌ଦାର୍ ଗୋଟିଚାଳନା କରୁ ନଥିଲେ । ୨୦୦୪ ନିର୍ବାଚନ ବେଳକୁ ବିଜେଡି ରାଜନୀତି ହିଁ ତାଙ୍କରି ଗୋଟିଚାଳନାରେ ଚାଲିଥିଲା । ୨୦୦୯ ନିର୍ବାଚନ ବେଳକୁ ବିଜେଡି ରାଜନୀତିରେ ପ୍ୟାରୀମୋହନଙ୍କୁ ଛାଡ଼ିଦେଇ ଚିନ୍ତା ବି କରାଯାଇପାରୁ ନଥିଲା । ପ୍ୟାରୀମୋହନଙ୍କ ଇସାରା ନମିଳିଲେ ବିଜେଡି ରାଜନୀତିରେ ପତ୍ରଟିଏ ବି ହଲେନାହିଁ । ନବୀନ ପଟ୍ଟନାୟକ କ୍ରମାଗତ ଭାବେ ତିନିଥର ମୁଖ୍ୟମନ୍ତ୍ରୀ ହେବା ପଛରେ ପ୍ୟାରୀମୋହନଙ୍କର ଗୋଟିଚାଳନା ହିଁ କାମ କରିଛି । ପ୍ୟାରୀଙ୍କର ପ୍ରଖର ବୁଦ୍ଧିରେ ଏହି ଗୋଟିଚାଳନା ହୋଇଥାଏ । ତେବେ କପ୍‌ପ୍ଲେଟ୍ ପରିବର୍ତ୍ତେ କାଚଗ୍ଲାସ୍‌ରେ ଚା' ପିଉଥିବାରୁ ପ୍ୟାରୀମୋହନଙ୍କର ବୟସ ଯେତିକି ବଢ଼ିଯାଉଛି ବୁଦ୍ଧି ସେତିକି ପ୍ରଖର ହେଉଛି ବୋଲି କୁହାଗଲେ ବି କିଛି ଅତ୍ୟୁକ୍ତି ହେବନାହିଁ । ବିଜେଡି ହେଉ କି କଂଗ୍ରେସ ହେଉ କି ବିଜେପି ହେଉ କି ଅନ୍ୟ ବରିଷ୍ଠ ନେତା ସେ ଯେଉଁ ଦଳର ହୁଅନ୍ତୁ ପଛେ ସେମାନେ ପ୍ୟାରୀଙ୍କ ପରି କାଚଗ୍ଲାସ୍‌ରେ ଚା' ପିଇବା ଅଭ୍ୟାସ କରନ୍ତୁ । ସେମାନେ ବି ଦିନେ ଦେଖିବେ ପ୍ୟାରୀଙ୍କ ପରି ମଧ ରାଜନୀତିରେ ଶ୍ରେଷ୍ଠ ଗୋଟିଚାଳକ ହୋଇଯାଇଥିବେ ।

# ସୂର୍ଯ୍ୟଙ୍କ ସକାଳ

ସୂର୍ଯ୍ୟ ସକାଳେ ଉଦୟ ହୁଅନ୍ତି ଆଉ ସଂଧ୍ୟାରେ ଅସ୍ତ ହୁଅନ୍ତି । ଏଠାରେ କିନ୍ତୁ ଆମେ ଯେଉଁ ସୂର୍ଯ୍ୟଙ୍କ କଥା ବର୍ଣ୍ଣନା କରୁଛୁ ସେ କିନ୍ତୁ ସୂର୍ଯ୍ୟଦେବତା ନୁହନ୍ତି । ସେ ହେଉଛନ୍ତି ମଣିଷ । ଆଉ ନବୀନ ପଟ୍ଟନାୟକଙ୍କ ସରକାରରେ ସେ ହେଉଛନ୍ତି ଗୁରୁତ୍ୱପୂର୍ଣ୍ଣ ରାଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ବିଭାଗର ମନ୍ତ୍ରୀ । ସୂର୍ଯ୍ୟଙ୍କର ବୟସ ୬୨ ଟପିଗଲାଣି । କିନ୍ତୁ ତାଙ୍କର ଚାଲିଚଳଣିକୁ ଦେଖିଲେ କେହିବି କହିପାରିବେ ନାହିଁ ଯେ ତାଙ୍କୁ ୬୦ ପରର ବୟସ ହୋଇଗଲାଣି ବୋଲି । ପଦଯାତ୍ରା ବେଳେ ସୂର୍ଯ୍ୟ କିଲୋମିଟର ପରେ କିଲୋମିଟର ଚାଲନ୍ତି । ସତେ ଯେମିତି ସ୍ପୋର୍ଟସମ୍ୟାନ୍ । ହାପ୍‌ପ୍ୟାଂଟ, ଗଂଜି ଠାରୁ ଆରମ୍ଭ କରି କୁର୍ତ୍ତା, ପାଇଜାମା ପର୍ଯ୍ୟନ୍ତ ସବୁକିଛି ସୂର୍ଯ୍ୟ ପିନ୍ଧନ୍ତି । ସତେ ଯେମିତି ଗଜା ଟୋକା । ଏସବୁ ରହସ୍ୟ ଜାଣିବାକୁ ହେଲେ ସୂର୍ଯ୍ୟଙ୍କ ପାଖକୁ ଯିବାକୁ ପଡ଼ିବ । ସକାଳେ ସୂର୍ଯ୍ୟ ବିଭିନ୍ନ ଔଷଧୀୟ ବୃକ୍ଷର ଫଳ କିମ୍ବା ପତ୍ରକୁ ଖାଆନ୍ତି । ଅବଶ୍ୟ ସିଧାସଳଖ ସେସବୁକୁ ସେ ଚୋବାନ୍ତି ନାହିଁ । ଗ୍ରାଇଣ୍ଡରରେ ରସ ବାହାର କରି ସେ ତାହାକୁ ପିଅନ୍ତି । ତାହା ହେଲା ହରିଡ଼ା, ଘିକୁଆଁରି, ଅଁଳା ପ୍ରଭୃତି । ଅନ୍ୟ ନେତାଙ୍କ ପରି ସୂର୍ଯ୍ୟ ମଧ ଯୋଗ କରନ୍ତି । କିନ୍ତୁ ଏହି ଯୋଗ ଅନ୍ୟ ଯୋଗ ଠାରୁ ଭିନ୍ନ ଅଟେ । ଜଣେ ବ୍ୟକ୍ତି ଆସନ୍ତି ଓ ସୂର୍ଯ୍ୟଙ୍କୁ ଯୋଗରେ ବସାଇ ଶରୀରକୁ ଫିଟ୍‌ଫାଟ୍ କରାଇ ଦିଅନ୍ତି । ପାଦ ଠାରୁ ଆରମ୍ଭ କରି ମୁଣ୍ଡ ପର୍ଯ୍ୟନ୍ତ ଶରୀରର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗକୁ ସୂର୍ଯ୍ୟଙ୍କର ସେ ଚଳଚଂଚଳ କରାଇ ଦିଅନ୍ତି । ଯଦି ସେହି ବ୍ୟକ୍ତିଙ୍କ ଠାରୁ କେହି ବୁଝିବାକୁ ଚାହିଁବେ ସେ କି ପ୍ରକାର ଯୋଗ ବୋଲି ତେବେ ଉତର ପାଇବେ ତାହା ହେଉଛି ବିପରୀତ ଯୋଗ । ମାନେ ଯୋଗ କଲାବେଳେ ଶରୀରର ଅଙ୍ଗପ୍ରତ୍ୟଙ୍ଗ ଯେଉଁ ଆଡ଼େ ଥିବ ଏହି ବ୍ୟକ୍ତି ଜଣଙ୍କ ତାହାକୁ ବିପରୀତ ଆଡ଼କୁ ନେବେ । ଏହା ଫଳରେ ଶରୀର ଚଳଚଂଚଳ ହୋଇଯାଏ ବୋଲି ସେ ମତ ଦିଅନ୍ତି । ଯୋଗ ପରେ ସୂର୍ଯ୍ୟ ପୁଣି ମାଲିସ୍‌କୁ ମଧ ପସନ୍ଦ କରିଥା'ନ୍ତି । ସୂର୍ଯ୍ୟଙ୍କର ଯେଉଁ ମାଲିସ୍ ହୁଏ ତାହା ପୁଣି ୧୦ କି ୧୫ ମିନିଟ୍ ନୁହେଁ । ୧ ଘଂଟାରୁ ଅଧିକ ସମୟ ମାଲିସ୍ । ମାଲିସ୍ ହୋଇସାରିବା ପରେ ସୂର୍ଯ୍ୟ ପୂରାପୂରି ଚେଙ୍ଗା ହୋଇଯାଆନ୍ତି । ଚାଲିରେ ତାଙ୍କ ଆଗରେ ବି ଗଜା ଟୋକା ହାର୍ ମାନିଯିବ । ୮ଟା ବେଳକୁ ସୂର୍ଯ୍ୟଙ୍କର ମାଲିସ୍ ଠାରୁ ଆରମ୍ଭ କରି ସେହି ସଂକ୍ରାନ୍ତୀୟ କାମ ସବୁ ସରିଯାଇଥାଏ । ତା'ପରେ ଆରମ୍ଭ ହୁଏ ସୂର୍ଯ୍ୟଙ୍କର ଦରବାର । ବେଶ୍ ଖୁସି ମନରେ ଦରବାର ଚଳାନ୍ତି ସୂର୍ଯ୍ୟ । ସୂର୍ଯ୍ୟ ଉଦୟ ହେବା ସମୟରେ ମନ୍ତ୍ରୀ ସୂର୍ଯ୍ୟଙ୍କ ପାଖରେ ପହଂଚିଗଲେ ସବୁ କିଛି ଜାଣିହେବ ।

# ଢୋଲକିଆ, ଆଚାର ଓ ନବୀନ

**ଢୋ**ଲକିଆ ମାନେ ରାଜେନ୍ଦ୍ର ଢୋଲକିଆ । ଆଉ ଏହି ରାଜେନ୍ଦ୍ର ଢୋଲକିଆ ହେଉଛନ୍ତି ନୂଆପଡ଼ାର ବିଜେଡି ବିଧାୟକ । ୨୦୦୪ ମସିହାରେ ସେ ସାଧୀନ ଭାବେ ନୂଆପଡ଼ାରୁ ବିଧାୟକ ହୋଇଥିଲେ । ଏହି ସମୟରେ ସେ ବିଜେଡିର ସହଯୋଗୀ ସଭ୍ୟ ଥିଲେ । ନୂଆପଡ଼ା ଜିଲାରେ ଆଖି ଚିକିତ୍ସା କ୍ୟାମ୍ପ କରି ସେ ବେଶ୍ ଲୋକପ୍ରିୟ ହୋଇଥିଲେ । ୧୪ ବର୍ଷରୁ ଅଧିକ ସମୟ ଧରି ଏହି ଆଖି ଚିକିତ୍ସା କ୍ୟାମ୍ପରେ ସେ ୧୦ ହଜାରରୁ ଅଧିକ ଲୋକଙ୍କର ମୋତିଆବିନ୍ଦୁ ଅସ୍ତ୍ରୋପଚାର କରାଇଛନ୍ତି । କେବଳ ଆଖି ଚିକିତ୍ସା କ୍ୟାମ୍ପରେ ତାଙ୍କର ସମାଜସେବା ବନ୍ଦ ହୋଇ ନଥିଲା । ଦାନ୍ତ ଚିକିତ୍ସା, କୃତ୍ରିମ ଗୋଡ଼ ଲଗାଇବା ପାଇଁ ବିଭିନ୍ନ ଶିବିରର ଆୟୋଜନ ସମେତ ବିଭିନ୍ନ ସମାଜସେବା କାମ କରି ସେ ନୂଆପଡ଼ା ଅଂଚଳରେ ବେଶ୍ ଲୋକପ୍ରିୟ ହୋଇଯାଇଥିଲେ । ଖରିଆର ରୋଡ୍ ଏନ୍ଏସିର ସେ ଅଧ୍ୟକ୍ଷ ହେଲେ । ଏହାପରେ ତାଙ୍କର ଆଖି ରହିଲା କିପରି ବିଧାୟକ ହେବେ ବୋଲି । ୨୦୦୪ ନିର୍ବାଚନରେ ସେ ସାଧୀନ ପ୍ରାର୍ଥୀ ହୋଇ ବିଜୟୀ ହେଲେ । ୨୦୦୯ରେ ସେ ବିଜେଡି ପ୍ରାର୍ଥୀ ହୋଇ ଦ୍ୱିତୀୟ ଥର ପାଇଁ ବିଜୟୀ ହେଲେ । ଏହାପରେ ସେ ଚାହିଁଲେ କିପରି ମନ୍ତ୍ରୀ ହେବେ ବୋଲି । ନୂଆପଡ଼ା ଜିଲାରେ ରହିଛି ଦୁଇଟି ନିର୍ବାଚନମଣ୍ଡଳୀ । ତାହା ହେଲା ନୂଆପଡ଼ା ଆଉ ଖରିଆର । ନୂଆପଡ଼ାରୁ ବିଜେଡିର ରାଜେନ୍ଦ୍ର ଢୋଲକିଆ ବିଜୟୀ ହୋଇଥିବା ବେଳେ ଖରିଆରରୁ ବିଜେପିର ହିତେଶ କୁମାର ବଗର୍ତି ବିଜୟୀ ହୋଇଛନ୍ତି । କଳାହାଣ୍ଡି ଲୋକସଭା ନିର୍ବାଚନମଣ୍ଡଳୀ ସହିତ ନୂଆପଡ଼ା ଜିଲାର ନୂଆପଡ଼ା ଓ ଖରିଆର ବିଧାନସଭା ନିର୍ବାଚନମଣ୍ଡଳୀ ସାମିଲ ହୋଇଛି । କଳାହାଣ୍ଡି ଜିଲାର ୫ଟି ଆଉ ନୂଆପଡ଼ା ଜିଲାର ୨ଟି ନିର୍ବାଚନମଣ୍ଡଳୀକୁ ନେଇ କଳାହାଣ୍ଡି ଲୋକସଭା ନିର୍ବାଚନମଣ୍ଡଳୀ ଗଠିତ ହୋଇଛି । ଏମିତି କଳାହାଣ୍ଡି ଜିଲାରେ ୫ଟି ବିଧାନସଭା ନିର୍ବାଚନମଣ୍ଡଳୀରୁ ୪ଟି କଂଗ୍ରେସ କବ୍ଜାରେ ରହିଛି । କେବଳ ଧର୍ମଗଡ଼ ନିର୍ବାଚନମଣ୍ଡଳୀରେ ବିଜେଡିର ପୁଷ୍ପେନ୍ଦ୍ର ସିଂହଦେଓ ବିଜୟୀ ହୋଇଛନ୍ତି । ଯେଉଁଥିପାଇଁ ତାଙ୍କୁ ମନ୍ତ୍ରୀ ପଦ ମିଳିଛି । କୁଆଡ଼େ ନବୀନ ପଟ୍ଟନାୟକ ଆଚାର ପ୍ରିୟ ଆଉ ନବୀନଙ୍କୁ ରାଜେନ୍ଦ୍ର ଢୋଲକିଆ ଆଚାର ଦେଇ ତାଙ୍କର ବେଶ୍ ପ୍ରିୟ ହୋଇଗଲେଣି । ଆଚାର ଦେବାବେଳେ ନବୀନ କୁଆଡ଼େ ବେଶ୍ ପ୍ରୀତ ହୋଇଯାଆନ୍ତି ଆଉ ଖୁବ୍ ଶୀଘ୍ର ମନ୍ତ୍ରୀ କରାଯିବ ବୋଲି ତାଙ୍କୁ କହନ୍ତି । ତେବେ ମନ୍ତ୍ରିମଣ୍ଡଳର ସଂପ୍ରସାରଣରେ ସ୍ପଷ୍ଟ ହୋଇଗଲା ଯେ, ନବୀନ ଆଚାର ପ୍ରିୟ ସତ କିନ୍ତୁ ଢୋଲକିଆ ପ୍ରିୟ ନୁହନ୍ତି । ଯେଉଁଥିପାଇଁ ରାଜେନ୍ଦ୍ର ଢୋଲକିଆ ମନ୍ତ୍ରିମଣ୍ଡଳ ସଂପ୍ରସାରଣରେ ମନ୍ତ୍ରୀ ହୋଇପାରିଲେ ନାହିଁ ।

# ପାଟଶାଣୀଙ୍କ ପାରିବାର ପଣିଆ

ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀଙ୍କର ବିଭିନ୍ନ ନାମ ରହିଛି । କିଏ ତାଙ୍କୁ ବାବା କହିଲାଣି ତ କିଏ ତାଙ୍କୁ ଯୋଗଗୁରୁ କହିଲାଣି ପୁଣି ଆଉ କିଏ ତାଙ୍କୁ ସାଂସଦ କହିଲାଣି ତ ଆଉ କିଏ ପ୍ରଫେସର କହିଲାଣି । ତେବେ ପ୍ରସନ୍ନ ପାଟଶାଣୀଙ୍କର ପ୍ରକୃତ ପରିଚୟ ହେଉଛି ଭୁବନେଶ୍ୱର ଲୋକସଭା ସାଂସଦ । ସେଦିନ ଲୋକସଭାରେ ଓଡ଼ିଶାର ଇଂରାଜୀ ନାମ ପରିବର୍ତ୍ତନ ନିମନ୍ତେ ବିଲ୍ ଆସିଲା । ଏହି ଆଲୋଚନାରେ ଅଂଶଗ୍ରହଣ କରିବା ପାଇଁ ପ୍ରସନ୍ନ ପାଟଶାଣୀଙ୍କ ନାମ ନଥିଲା । କିନ୍ତୁ ପ୍ରସନ୍ନ ନଛୋଡ଼ ବନ୍ଧା । ଯେମିତି ହେଲେ ସେ କହିବେ । ଯେତେ ବାରଣ ସତ୍ତ୍ୱେ ପ୍ରସନ୍ନ ନିଜ ଆସନ ନିକଟରେ ଠିଆ ହେଲେ ଓ ତାଙ୍କର ଚିରାଚରିତ ଢଙ୍ଗରେ ଭାଷଣ ଦେଲେ । ସମସ୍ତେ ଭାବୁଥିଲେ ପ୍ରସନ୍ନ ଇଂରାଜୀ କିମ୍ବା ହିନ୍ଦୀରେ ଭାଷଣ ଦେବେ ବୋଲି । କିନ୍ତୁ ଦେଖାଗଲା ଓଡ଼ିଆରେ ଭାଷଣ ଦେଲେ ପ୍ରସନ୍ନ । ଏମିତି ଅନର୍ଗଳ ଭାବେ ସେ ଭାଷଣ ଦେଲେ ଯେ ସମସ୍ତେ ତାଙ୍କୁ ଚାହିଁରହିଲେ । ଏମିତି ତ ସୋନିଆ ଗାନ୍ଧୀଙ୍କ ଠାରୁ ଆରମ୍ଭ କରି ପ୍ରଧାନମନ୍ତ୍ରୀ ମନମୋହନ ସିଂହ, ବାଚସ୍ପତି ମୀରା କୁମାର ମଧ 'ଥ' ହୋଇ ପ୍ରସନ୍ନଙ୍କ ମୁହଁକୁ ଚାହିଁରହିଥା'ନ୍ତି । ଇଂରାଜୀରେ ଲେଖାଯାଉଥିବା 'ଓରିଶା'କୁ 'ଓଡ଼ିଶା' କରାଯିବା ପାଇଁ ବିଧାନସଭାରେ ଗୃହୀତ ପ୍ରସ୍ତାବ ଲୋକସଭାକୁ ପଠାଯାଇଥିଲା । ଲୋକସଭାରେ ଏହା ଗୃହୀତ ହେବା ପୂର୍ବରୁ ଆଲୋଚନା କରାଯାଇଥିଲା । ପ୍ରସନ୍ନଙ୍କର ସେଦିନର ଭାଷଣ କେବଳ ଯେ ଲୋକସଭାରେ ସୀମିତ ହୋଇରହିଲା ତାହା ନୁହେଁ । ସାରା ଓଡ଼ିଶାରେ ଟିଭି ପରଦାରେ ତାହାକୁ ଦର୍ଶକ ଦେଖିଲେ । ପ୍ରସନ୍ନଙ୍କୁ ତାଙ୍କ ନିର୍ବାଚନମଣ୍ଡଳୀ ଭୁବନେଶ୍ୱର ନୁହେଁ ସାରା ଓଡ଼ିଶାବାସୀ ମଧ ପ୍ରଶଂସା କଲେ । ଆଉ ଏକ ପ୍ରସଙ୍ଗ ସମ୍ପର୍କରେ ଏଠାରେ ଉଲ୍ଲେଖ କରାଯାଇପାରେ । ତାହା ହେଲା ଆମେରିକା ରାଷ୍ଟ୍ରପତି ବାରାକ ଓବାମା ମିଳିତ ସଂସଦରେ ଭାଷଣ ଦେବା ସମୟର ଘଟଣା । ଏମିତି ଓବାମା ସାଂସଦମାନଙ୍କ ସହିତ ହାତ ମିଳାଇଲେ । ଦେଖାଗଲା ରାହୁଲ ଗାନ୍ଧୀ ଓ ପ୍ରସନ୍ନ ପାଟଶାଣୀଙ୍କ ପାଖରେ ସେ କିଛି ସମୟ ଅଟକି ଗଲେ । ପ୍ରସଙ୍ଗ ଏଇଠି ମଧ ଶେଷ ହେଲାନାହିଁ । ପ୍ରସନ୍ନ ପାଟଶାଣୀ ତାଙ୍କର ଇଂରାଜୀରେ ଲିଖିତ ଦୁଇଟି ପୁସ୍ତକ ଓବାମାଙ୍କ ହାତକୁ ବଢ଼ାଇଦେଲେ । ଏମିତି ଓବାମାଙ୍କୁ ଯିଏ ଯାହା ବଢ଼ାଇ ଦିଅନ୍ତି ସେ ତାହାକୁ ସଙ୍ଗେସଙ୍ଗେ ତାଙ୍କ ପାଖରେ ଥିବା ସହାୟକଙ୍କୁ ଦେଇ ଦେଇଥା'ନ୍ତି । କିନ୍ତୁ ଏହି ଦୁଇଟି ପୁସ୍ତକରୁ ଗୋଟିଏ ପୁସ୍ତକ ତାଙ୍କ ସହାୟକଙ୍କୁ ବଢ଼ାଇ ଦେଇ ଓବାମା ଅନ୍ୟ ପୁସ୍ତକଟିକୁ ହାତରେ ଧରି ଚାଲିଲେ । ଏହାକୁ ଦେଖି ବହୁ ସାଂସଦ ପ୍ରସନ୍ନଙ୍କ ସହିତ ହାତ ମିଳାଇଲେ । ସମସ୍ତେ ଜାଣିବାକୁ ଚାହିଁଲେ କେଉଁ ବହି ସେ ଓବାମାଙ୍କୁ ଦେଇଥିଲେ ବୋଲି । ଯିଏ ଯାହା

କହନ୍ତୁ ପଛେ ପ୍ରସନ୍ନଙ୍କୁ ମାନିବାକୁ ପଡ଼ିବ । ଉପସ୍ଥିତ ବୁଦ୍ଧିରେ ସେ ପାରଙ୍ଗମ । ନହେଲେ ନିର୍ବାଚନରେ ଗାଡ଼ି ନାହିଁ, ପୋଷ୍ଟର ନାହିଁ, ଏଜେଂଟ ନାହାନ୍ତି, ପ୍ରଚାର ନାହିଁ କି ଟଙ୍କା ବି ଖର୍ଚ୍ଚ ନାହିଁ । ଏହାସତ୍ତ୍ୱେ ସେ ୧୯୮୦ ମସିହାରୁ ନିର୍ବାଚନରେ ବିଜୟୀ ହୋଇଚାଲିଛନ୍ତି । ମାନେ ସଫଳତା ପରେ ସଫଳତା । ଦେଖାଯାଉ ପ୍ରସନ୍ନ ତାଙ୍କର ଏହି ଟ୍ୟାଲେଂଟକୁ କେତେଦିନ ବଜାୟ ରଖୁଛନ୍ତି ।

# ଅତନୁ ଓ ମେନକା

**ଶକ୍ତି**ମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ ଦଳ ହେଉଛି ବିଜେଡି । ବିଜେପି ନାଁ ଶୁଣିଲେ ଅତନୁଙ୍କ ନାହି ତିଏଁ । ପୁଣି ତାଙ୍କର ପରମ ଶତ୍ରୁ ବୋଲି କୁହାଯାଉଥିବା ବିଜୟ ମହାପାତ୍ର ଏବେ ବିଜେପିରେ ଅଛନ୍ତି । ଏହାସତ୍ତ୍ୱେ ବିଜେପି ପ୍ରତି ଅତନୁଙ୍କର ଟିକିଏ ଦୁର୍ବଳ ମନୋବୃତ୍ତି ରହିଛି ବୋଲି ଚର୍ଚ୍ଚା ହେଉଛି । ଏହାର କାରଣ ଆଉ କିଛି ନୁହେଁ । ତାହା ହେଉଛି ମେନକା ଗାନ୍ଧୀ । ଅବଶ୍ୟ ନେତାମାନେ ସବୁବେଳେ ସୁବିଧାବାଦୀ । ଏହି ଦୃଷ୍ଟିରୁ ଅତନୁ ଯେ ସୁବିଧାବାଦୀ ହୋଇ ନଥିବେ ତାହା ବି କହି ହେବନାହିଁ । ସରକାରୀ କାର୍ଯ୍ୟକ୍ରମରେ ଯୋଗ ଦେବା ପାଇଁ ଦିଲ୍ଲୀ ଗସ୍ତରେ ଯାଇଥିଲେ ଅତନୁ । ମାହାଙ୍ଗା ନିର୍ବାଚନମଣ୍ଡଳୀର ଅସୁରେଶ୍ୱର ଠାରେ ଯେଉଁ ଗୋମଙ୍ଗଳ ସମିତି ରହିଛି ସେଠାରେ ଅତନୁଙ୍କ ବାପା ରାଜକିଶୋର ନାୟକ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ । ସେଠାରେ ଅର୍କମଣ୍ୟ ଓ ଅଲୋଡ଼ା ହୋଇଯାଇଥିବା ଗୋରୁମାନଙ୍କର ସେବା କରାଯାଏ । ପୂର୍ବଜନ୍ମର କର୍ମଫଳ ମହାନ୍ ଥିଲେ ଏହି ସେବା କରିବାର ସୁଯୋଗ ମିଳିଥାଏ । ସବୁବର୍ଷ ଅତନୁଙ୍କ ବାପା ଏହି ଗୋମଙ୍ଗଳ ସମିତିର ଉତ୍ସବରେ ଉପସ୍ଥିତ ଥା'ନ୍ତି । କିନ୍ତୁ ତାଙ୍କର ଦେହାନ୍ତ ହୋଇଯିବା ପରେ କାହାକୁ ଏହି ଉତ୍ସବରେ ଅତିଥି କରାଯିବ ସେ ନେଇ ଅତନୁ ନିଷ୍ପତି ନେଇ ନଥିଲେ । କିନ୍ତୁ ଦିଲ୍ଲୀରେ ହଠାତ୍ ତାଙ୍କର ଏକ ଧାରଣା ହେଲା ଯେ ମେନକା ଗାନ୍ଧୀଙ୍କୁ ଏହି ଉତ୍ସବରେ ଅତିଥି କରିବା ନିମନ୍ତେ । ମେନକା ଏପଟେ ବିଜେପି ନେତ୍ରୀ ସେପଟେ ଜଣେ ପରିବେଶବିତ୍ । ପୁଣି ପଶୁମାନଙ୍କ ପାଇଁ ତାଙ୍କର ଅବଦାନ ଯଥେଷ୍ଟ ରହିଛି । ଅତନୁ ଯୋଗାଯୋଗ କଲେ ମେନକାଙ୍କୁ । ତାଙ୍କୁ ଅନୁମତି ମିଳିଲା ସାକ୍ଷାତ କରିବା ପାଇଁ । ମେନକାଙ୍କ ଘରକୁ ଯିବା ବେଳକୁ ଅତନୁଙ୍କୁ କେମିତି କେମିତି ଲାଗିଲା । ବିଭିନ୍ନ କୁକୁର ସେଠାରେ ଥିଲେ । କେଉଁ କୁକୁର ଚିକିତ୍ସିତ ହେଉଛି ତ କେଉଁ କୁକୁର ରୋଗଗ୍ରସ୍ତ ହୋଇ ଦୁର୍ବଳ ହୋଇଯାଇଛି । ଆଉ କେଉଁ କୁକୁର ଚିକିତ୍ସିତ ହେବାପରେ ବେଶ୍ ଶକ୍ତିଶାଳୀ ହୋଇଯାଇଛି । ଗୋଟିଏ କି ଦୁଇଟି କୁକୁର ନୁହେଁ ଡଜନରୁ ଅଧିକ କୁକୁର । ଏମିତି ଗୋଟିଏ କୁକୁରକୁ ଦେଖିଲେ ଆମର ପିଳେହିପାଣି ହୋଇଯାଏ । ୧୨ଟିରୁ ଅଧିକ କୁକୁରଙ୍କୁ ଏକାଠି ଦେଖିଲେ

ସେତେବେଳେ ଅତନୁଙ୍କ ଅବସ୍ଥା କ'ଣ ହୋଇଥିବ ତାହା ସହଜରେ ଅନୁମେୟ । ଏହାସତ୍ତ୍ୱେ ଅତନୁ ନିଜର ଦାମ୍ଭିକତା ଦେଖାଇ ମେନକାଙ୍କୁ ସାକ୍ଷାତ କଲେ ଆଉ ଅସୁରେଶ୍ୱର ଗୋମଙ୍ଗଳ ସମିତି ଉତ୍ସବରେ ଯୋଗ ଦେବା ପାଇଁ ନିମନ୍ତ୍ରଣ କଲେ । ମେନକା ସମ୍ମତି ଦେବାପରେ ଅତନୁ ସେଠାରୁ ବାହାରକୁ ଆସିଲେ । କିନ୍ତୁ ଶେଷ ପର୍ଯ୍ୟନ୍ତ ତାଙ୍କ ମନରେ କୁକୁର ଭୟ ଲାଗିରହିଥାଏ । କୁକୁରଙ୍କ ସହିତ ରହି ମେନକା କିପରି ଜୀବନ କଟାଉଛନ୍ତି ତାହା ନଦେଖିବା ଲୋକ ଜାଣିପାରିବେ ନାହିଁ । ଏବେ ଅତନୁ ଜାଣିସାରିବେଣି ମେନକା ଯେଉଁ ସଫଳତା ପାଇଛନ୍ତି ତାହା କୁକୁରଙ୍କ ପାଇଁ ବୋଲି । ଅତନୁ କାଳବିଳମ୍ବ ନକରି ମେନକାଙ୍କ ପରି ବହୁ କୁକୁର ରଖନ୍ତୁ । ଦେଖିବେ ରାଜନୀତିରେ ଆଉ କେହି ତାଙ୍କ ପାଖ ମାଡ଼ିପାରିବେ ନାହିଁ ।

# ଗୋଲକିପର

ଫୁଟ୍‌ବଲ ଖେଳ ପ୍ରସଙ୍ଗ ଉଠିଲେ କିଏ ଗୋଲ ଦେଲା ନଦେଲା ସେ ନେଇ ଆଲୋଚନା ହୁଏ । କିନ୍ତୁ ଗୋଲକିପରଙ୍କ ସମ୍ପର୍କରେ ପ୍ରାୟ ଆଲୋଚନା ହୁଏନାହିଁ । ଏହାସତ୍ତ୍ୱେ ଗୋଲକିପରଙ୍କର ଭୂମିକା ଫୁଟ୍‌ବଲ ଖେଳରେ ଗୁରୁତ୍ୱପୂର୍ଣ୍ଣ ଅଟେ । ବଲ୍‌କୁ ବୁଦ୍ଧି ଖର୍ଚ୍ଚ କରି ଯଦି ସେ ନଅଟକାଇବେ ତେବେ ବଲ୍ ଗୋଲପୋଷ୍ଟ ଭିତରକୁ ଚାଲିଯିବ ଆଉ ଦଳ ହାରିଯିବ । ଗୋଲକିପର ଗୋଲ୍ ଦେଇ ନପାରନ୍ତି କିନ୍ତୁ ଦଳକୁ ହାରିବା ଲଜ୍ଜାରୁ ରକ୍ଷା କରିପାରିବେ । ଏହି ଗୋଲକିପର ସମ୍ପର୍କରେ ବର୍ଣ୍ଣନା କରିବାର କାରଣ ଆଉ କିଛି ନୁହେଁ । ଉତର-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନା ତାଙ୍କ ନିର୍ବାଚନମଣ୍ଡଳୀର ଟାଙ୍ଗୀ-ବନ୍ତ ଠାରେ ଜ୍ଞାନ ପଟ୍ଟନାୟକ ସ୍ମାରକୀ ଫୁଟ୍‌ବଲ ପ୍ରତିଯୋଗିତାର ଶୁଭାରମ୍ଭ କଲେ । କାହିଁକି ଭାଗିରଥୀଙ୍କର ଫୁଟ୍‌ବଲପ୍ରେମ ଜାଗିଛି ସେ ସମ୍ପର୍କରେ ପ୍ରଶ୍ନ ହେବା ମଧ୍ୟ ସ୍ୱାଭାବିକ । ଭାଗିରଥୀଙ୍କ ଅତୀତକୁ ଚାଲିଗଲେ ଏହା ବେଶ୍ ବାରି ହୋଇଯିବ । ସେ କୁଆଡ଼େ ତାଙ୍କ ଯୁବକ ସମୟରେ ଫୁଟ୍‌ବଲପ୍ରେମୀ ଥିଲେ । ମାନେ ଦର୍ଶକ ନୁହେଁ ଫୁଟ୍‌ବଲ ଖେଳୁଥିଲେ । ତେବେ ତାଙ୍କ ନାମ ସେପରି ଭାବେ ଚର୍ଚ୍ଚାକୁ ଆସୁ ନଥିଲା । ଏହାର କାରଣ ଆଉ କିଛି ନଥିଲା । ଭାଗିରଥୀ ଗୋଲକିପର ଥିଲେ । ମାନେ ଦଳକୁ ପରାଜୟରୁ ବଂଚାଉଥିଲେ । ବିଜେବି କଲେଜର ଫୁଟ୍‌ବଲ ଟିମ୍‌ରେ ସେ ମଧ୍ୟ ଗୋଲକିପର ଥିଲେ । ଏହି ଗୋଲକିପର ହିଁ ତାଙ୍କୁ ରାଜନୀତି ଆଡ଼କୁ ଟାଣି ନେଇଥିଲା । ଦଳକୁ ବଂଚାଇବା ପାଇଁ ଗୋଲକିପରର ଭୂମିକା ଗୁରୁତ୍ୱପୂର୍ଣ୍ଣ ବୋଲି ଆଉ କେହିନୁହନ୍ତି ନିଜେ ଭାଗିରଥୀ ଜାଣିପାରିଥିଲେ । ପରୋକ୍ଷରେ କୁହାଗଲେ ଏହା ହେବ ଯେ ଯଦିଓ ଫୁଟ୍‌ବଲ ଦଳର ଅଧିନାୟକ ଅନେକ ସମୟରେ ଗୋଲ ଦେଉଥିବା ଖେଳାଳୀ ହୋଇଥା'ନ୍ତି କିନ୍ତୁ ପ୍ରକୃତ

ଅଧିନାୟକ ହେଉଛନ୍ତି ଗୋଲକିପର । ଏହାକୁ ଆଦର୍ଶ ଭାବେ ଧରି ନେଇଥିଲେ ଭାଗିରଥୀ । ଯେଉଁଥିପାଇଁ ପରବର୍ତୀ ସମୟରେ ରାଜନୀତିକୁ ଆସି ସେ ଗୋଲକିପର ଭୂମିକା ନିଭାଇଲେ । ମାନେ ନେତା । ଅର୍ଥାତ୍ ଲୋକଙ୍କ ପାଖରେ ସେ ହାରିବେ ନାହିଁ । ମାନେ ଗୋଲପୋଷ୍ଟକୁ ସେ ଜଗିରହିବେ ଆଉ ଗୋଲପୋଷ୍ଟରେ ତାଙ୍କ ବିରୋଧୀ ଗୋଲ ଦେଇପାରିବେ ନାହିଁ । ଏହି ଆଦର୍ଶକୁ ନେଇ ଭାଗିରଥୀ ରାଜନୀତି କରୁଥିବାରୁ ସେ ବେଶ୍ ଲୋକପ୍ରିୟ ହୋଇଛନ୍ତି । ଦେଖାଯାଉ ଭାଗିରଥୀ କେତେଦିନ ଗୋଲକିପର ରାଜନୀତିକୁ ବଜାୟ ରଖୁଛନ୍ତି ।

# ବାବା ତୁମେ ମହାନ୍

ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀ ଏମିତି ବିଭିନ୍ନ ଉତ୍ସବରେ କବିତା ବୋଲି ଶ୍ରୋତାଙ୍କ ମନ ହରଣ କରିଥା'ନ୍ତି । କିନ୍ତୁ ତାଙ୍କୁ ନେଇ ଯେ କବିତା ଲେଖାହୁଏ ଆଉ ସେହି କବିତା ହାଟବଜାରରେ ବୋଲାଯାଏ ତାହା ବୋଧହୁଏ ପ୍ରସନ୍ନ ଜାଣି ନଥିବେ । ଖୋର୍ଦ୍ଧା ଜିଲାର ନିରାକାରପୁର ଅଂଚଳକୁ ଚାଲିଗଲେ ଏହି କବିତା ବେଶ୍ ବାରି ହୋଇଯିବ । ଏମିତି ସେଠାରେ ହାଟପାଳି ଥାଏ । ପ୍ରସନ୍ନ ପାଟଶାଣୀଙ୍କ ଉପରେ ଚର୍ଚ୍ଚା ଚାଲିଥାଏ । ଜଣେ କେହି କବିତା ବୋଲିଲେ- କେ କହେ କବି ପ୍ରସନ୍ନ, ଅନେକ କହନ୍ତି ପ୍ରସନ୍ନ ଭାଇ । ସଭିଏଁ ଗୋଡ଼ାନ୍ତି ବାବା ବାବା ବୋଲି, ଭକ୍ତି ଅନ୍ତରର ଭାବକୁ ନେଇ । ଏହି ସମୟରେ ଆଉ ଜଣେ ସେ କବିତା ସହିତ ଆଉ ଏକ ପଦ ଯୋଡ଼ିଦେଲେ । ସେ କହିଲେ- ବାଡ଼ି ହେଲା ତାଙ୍କ ଜୀବନ ସଙ୍ଗିନୀ, ବେକରେ ରୁଦ୍ରାକ୍ଷ ତୁଳସୀ ମାଳା । କାଠ ପାନିଆରେ ଜଟା କୁଣ୍ଡାଇଲେ, କଠଉ ଥିଲେ କି ନଥିଲେ ଭଲା । ପ୍ରସନ୍ନ ପାଟଶାଣୀଙ୍କୁ ନେଇ ଏଭଳି ଗୀତ ପ୍ରତିଯୋଗିତା ଚାଲିଥିବାରୁ ତାହାକୁ ଶୁଣିବାକୁ ସେଠାରେ ବହୁଲୋକଙ୍କର ସମାଗମ ହେବାକୁ ଲାଗିଲା । ଆଉ ଜଣେ ବ୍ୟକ୍ତି କହିଲେ- ବାବାଙ୍କର ରାଜନୀତି ମେଲା ଅଫିସି, ମଣିଷ କିବା ଗାଈ ସମସ୍ତେ ପ୍ରବେସି । କରନ୍ତି ସୁପାରିଶ ପତ୍ରକୁ ମଂଜୁରୀ, ଅନେକ ଏପରି ଯାଏକି ଯମପୁରୀ । ସେଠାରେ ଶ୍ରୋତାମାନେ 'ଥ' ହୋଇ ପ୍ରସନ୍ନ ପାଟଶାଣୀଙ୍କ ଉପରେ ବୋଲାଯାଉଥିବା କବିତାକୁ ଶୁଣୁଥା'ନ୍ତି । ଯେତେବେଳେ ଆଉ କେହି କବିତା ବୋଲିଲେ ନାହିଁ ସେତେବେଳେ ସେଠାରେ ଥିବା ଜଣେ ଲୋକ କହିଲେ- ଏବେ ଯବନିକା । ତା'ପରେ ସେ ନିଜେ କବିତା ବୋଲିଲେ- ତୋଳିଦେଲେ ଅଗଣିତ ବିଦ୍ୟାନିକେତନ, କିବା ରାସ୍ତା ରେଳବାଇ ପାନୀୟ ଜୀବନ । କୃଷିକାର୍ଯ୍ୟ ପାଇଁ ଦେଲେ ସରକାରୀ ଦାନ, ଯୁଗେଯୁଗେ ଅମର ରୁହହେ ପାଟଶାଣୀ ତୁମେ ମହାନ୍ । ଏତିକିରେ ପ୍ରସନ୍ନ ପାଟଶାଣୀଙ୍କ ଉପରେ କବିତା ଗାନ ଶେଷ ହେଲା । କିନ୍ତୁ ସେଠାରେ ଥିବା ଶ୍ରୋତାମାନେ ସ୍ଥାନ ଛାଡ଼ି ଯାଉ

ନଥିଲେ । ଏମିତି ଯେଉଁ ଶ୍ରୋତାମାନେ ସେଠାରେ ଥିଲେ ସେମାନେ ଯେ ସାହିତ୍ୟପ୍ରେମୀ ତାହା ନୁହେଁ । ହାଟକୁ ଆସିଥିଲେ ସଉଦା କରିବା ପାଇଁ । କିନ୍ତୁ ପ୍ରସନ୍ନ ପାଟ୍ଟଶାଣୀଙ୍କ ଉପରେ କବିତା ବୋଲାଯାଉଥିବାର ଦେଖି ସେଠାରେ ସେମାନେ ଜମା ହୋଇଥିଲେ । ସେମାନଙ୍କ ମଧ୍ୟରୁ କେତେକ ମଧ କବିତା ବୋଲିଲେ ଆଉ କେତେକ ତାଳି ମାରିଲେ । ମାନିବାକୁ ପଡ଼ିବ ପ୍ରସନ୍ନଙ୍କୁ । ଆଉ କିଛି ହେଉ କି ନହେଉ ଖୋର୍ଦ୍ଧା ଅଂଚଳରେ ସେ ବୀର ପାଇକଙ୍କ ମନରେ କବିତା ପ୍ରତି ଦୁର୍ବଳତା ସୃଷ୍ଟି କରିପାରିଛନ୍ତି । ସଭାସମିତିରେ ନିଜେ କବିତା ବୋଲି ସେ ଶ୍ରୋତାଙ୍କୁ ବି କବି କରିଦେଇଛନ୍ତି । ପ୍ରସନ୍ନ ଭଲ ରୂପେ ଜାଣିଛନ୍ତି ଯେ, ରାଜନୀତି ଚିରସ୍ଥାୟୀ ନୁହେଁ । କିନ୍ତୁ କବି ଚିରସ୍ଥାୟୀ । ଦେଖାଯାଉ ପ୍ରସନ୍ନ ତାଙ୍କର ପ୍ରେମୀମାନଙ୍କୁ କବି କରିବାରେ କେତେଦୂର ସହାୟକ ହେଉଛନ୍ତି ।

# ମେହେନ୍ଦି ଓ ଅରୁଣ

**ମେ**ହେନ୍ଦି କଥା ଚର୍ଚ୍ଚା ହେଲେ ସାଧାରଣତଃ ଝିଅପିଲାଙ୍କ ପ୍ରସଙ୍ଗ ଉଠିଥାଏ । ଗୋଟିଏ ସମୟରେ ମୁଣ୍ଡବାଳକୁ ଗାଢ଼କଳା କରିବା ପାଇଁ ଝିଅମାନେ ମୁଣ୍ଡରେ ମେହେନ୍ଦି ଲଗାଉଥିଲେ । ଏବେ କିନ୍ତୁ ଉଭୟ ପୁଅ ଆଉ ଝିଅମାନେ ଏହି ମେହେନ୍ଦି ମୁଣ୍ଡରେ ଲଗାଉଛନ୍ତି । ଏମିତି ଦେଖିଲେ ନୟାଗଡ଼ ବିଧାୟକ ଅରୁଣ ସାହୁଙ୍କ ଚେହେରା ବେଶ୍ ଢଉଲଢାଉଲ । ମୁଣ୍ଡବାଳରେ ସେ କୁଆଡ଼େ ପାନିଆ ଲଗାନ୍ତି ନାହିଁ । କିନ୍ତୁ ତାଙ୍କର ମୁଣ୍ଡବାଳ ସବୁବେଳେ କଳା ମଚମଚ ଆଉ ବେଶ୍ ସାଇଜ୍ ହୋଇରହିଥାଏ । ଏହାର ରହସ୍ୟ କେହି ଜାଣିପାରନ୍ତି ନାହିଁ । ହଠାତ୍ ଦିନେ ଦେଖାଗଲା ଅରୁଣଙ୍କର ମୁହଁ ଫୁଲିଯାଇଛି । ନିଜେ ଅରୁଣ ମଧ ଏହି ମୁହଁ ଫୁଲାର କାରଣ ଜାଣିପାରିଲେ ନାହିଁ । ତେବେ ଏମିତି କୌଣସି ପଦାର୍ଥ ତାଙ୍କ ମୁହଁରେ ଲାଗିଯାଇଛି ଯାହା ଆଲର୍ଜି ହୋଇଛି ଏବଂ ସେହି କାରଣରୁ ମୁହଁ ଫୁଲିଯାଇଛି ବୋଲି କୁଆଡ଼େ ଡାକ୍ତର କହିଲେ । ଏହାପରେ ବୁଝୁବୁଝୁ ଜଣାପଡ଼ିଲା ଅରୁଣ ତାଙ୍କ ମୁଣ୍ଡବାଳରେ ମେହେନ୍ଦି ଲଗାନ୍ତି ବୋଲି । କେତେବେଳେ ହେଲେ ଏହି ମେହେନ୍ଦି ତାଙ୍କ ପାଇଁ ବିପଦ ଆଣି ଦେଇ ନଥିଲା । ବରଂ ମେହେନ୍ଦି ହୋଇଯାଇଥିଲା ତାଙ୍କ ପାଇଁ ସମ୍ପଦ । ମେହେନ୍ଦି ଲଗାଇ ସେ ମୁଣ୍ଡବାଳକୁ ବେଶ୍ କଳା ମଚମଚ କରୁଥିଲେ । ଆଉ ଚେହେରା ମଧ ତାଙ୍କର ମୁଣ୍ଡବାଳକୁ ନେଇ ଚକ୍‌ଚକ୍ କରୁଥିଲା । କିନ୍ତୁ ମେହେନ୍ଦି ଯେ ତାଙ୍କ ପାଇଁ ବିପଦ ଆଣିଦେବ ତାହା ସେ କେବେବି ଭାବିପାରି ନଥିଲେ । ମୁଣ୍ଡବାଳରେ ମେହେନ୍ଦି ଲଗାଇବା ଦ୍ୱାରା ଅରୁଣଙ୍କର ମୁହଁ ଫୁଲିଯାଇଛି ବୋଲି ତାଙ୍କର ନିକଟତମ ବ୍ୟକ୍ତିମାନେ ଜାଣିପାରିଲେ । ଏହାପରେ ଖବରଟି କାନରୁ ଦୁଇ କାନ ତା' ପରେ ତିନି, ଚାରି ଏହିପରି ବ୍ୟାପିଚାଲିଲା । ପ୍ରସଙ୍ଗ ଯାଇ ପହଂଚିଲା ଅରୁଣଙ୍କ ନିର୍ବାଚନମଣ୍ଡଳୀ

ନୟାଗଡ଼ରେ । ତେବେ ଅରୁଣ ଡାକ୍ତରଙ୍କୁ ଦେଖାଇ ପ୍ରତିକାର କଲେ । ଏମିତି ଓଡ଼ିଆରେ ପ୍ରବାଦ ଅଛି- ଯାହାକୁ ସାପ କାମୁଡ଼େ ତା' ମାଆ ପାଳଦଉଡ଼ି ଦେଖିଲେ ଡରେ । ଏବେ ଅରୁଣ ମେହେନ୍ଦିକୁ ଡରୁଥିବେ କି ନାହିଁ ତାହା ଜଣାନାହିଁ । କିନ୍ତୁ ମେହେନ୍ଦି ଲଗାଇ ଅରୁଣଙ୍କ ମୁହଁ ଫୁଲିଯାଇଥିଲା ବୋଲି ନୟାଗଡ଼ ନିର୍ବାଚନମଣ୍ଡଳୀରେ ଯେଉଁ ଚର୍ଚ୍ଚା ହେଲା ତାହା ଅନେକ ଲୋକଙ୍କ କ୍ଷେତ୍ରରେ ମେହେନ୍ଦି ଭୟର କାରଣ ହୋଇଯାଇଛି । ଦେଖାଯାଉ ଏହି ମେହେନ୍ଦି ଭୟ କେତେଦିନ ଲାଗିରହୁଛି ।

# ରୁଦ୍ରଙ୍କ ଲୋକସଭା

ରୁଦ୍ରମାଧବ ରାୟ ହେଉଛନ୍ତି କନ୍ଧମାଳ ଲୋକସଭା ନିର୍ବାଚନମଣ୍ଡଳୀର ବିଜେଡି ସାଂସଦ । ୧୯୯୦ ଓ ୧୯୯୫ ମସିହାରେ ସେ ଜନତା ଦଳରୁ ଦଶପଲାରେ ପ୍ରାର୍ଥୀ ହୋଇ ବିଜୟୀ ହୋଇଥିଲେ । ତେବେ ନୟାଗଡ଼ ଜିଲା ପରିଷଦ ସଭାପତି ହେବା ପାଇଁ ତାଙ୍କୁ ନିଶା ଘାରିବାରୁ ସେ ବିଧାୟକ ପଦ ଛାଡ଼ି ଜିଲା ପରିଷଦ ସଭ୍ୟ ହେଲେ ଏବଂ ଜିଲା ପରିଷଦ ସଭାପତି ହୋଇ ତାଙ୍କର ସ୍ୱପ୍ନ ସାକାର କଲେ । ୨୦୦୪ ମସିହାରେ ରୁଦ୍ର ସ୍ୱାଧୀନ ଭାବେ ପ୍ରାର୍ଥୀ ହୋଇ ବିଜୟୀ ହେଲେ । ୨୦୦୯ରେ ରୁଦ୍ର କନ୍ଧମାଳ ଲୋକସଭା ଆସନରୁ ପ୍ରାର୍ଥୀ ହୋଇ ଏବେ ସାଂସଦ । ଅବଶ୍ୟ ରୁଦ୍ରଙ୍କ ଚେହେରା ଆଉ ପୋଷାକକୁ ଦେଖିଲେ ସେ ବେଶ୍ ସାଧାସିଧା ବୋଲି ଜଣାପଡ଼େ । କିନ୍ତୁ ରାଜନୀତିରେ ସେ ଯେ ସାଧାସିଧା ନୁହନ୍ତି ତାହା ନିଜେ ରୁଦ୍ର ପ୍ରତି କ୍ଷେତ୍ରରେ ପ୍ରମାଣିତ କରିଦିଅନ୍ତି । ସେଦିନ ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ ବିଧାନସଭା ପ୍ରାଙ୍ଗଣରେ ଥିବା କାର୍ଯ୍ୟାଳୟରେ ରୁଦ୍ର ବସିଥିଲେ । କୌଣସି ଏକ ପ୍ରସଙ୍ଗ ପଡ଼ିଲା । ସଙ୍ଗେସଙ୍ଗେ ରୁଦ୍ର ତାଙ୍କର ସାଂସଦ ପ୍ୟାଡ୍ ବାହାର କଲେ । ଆଉ ସେହି ପ୍ୟାଡ୍‌ରେ ସେ ଲେଖିଲେ ଏବଂ ଦସ୍ତଖତ ମଧ୍ୟ କଲେ । ଏହାପରେ ଖୋଜାଗଲା ରୁଦ୍ରଙ୍କ ସାଂସଦ ଷ୍ଟାମ୍ପକୁ । ସଙ୍ଗେସଙ୍ଗେ ଛାତି ପକେଟ୍‌ରୁ ପେନ୍ ପରି ଏକ ପଦାର୍ଥ ବାହାର କଲେ ରୁଦ୍ର । ସେହି ପେନ୍‌ର କ୍ୟାପ୍ ଖୋଲି ଦେଇ ପଛପଟେ ଚାପ ଦେଲେ । ସଙ୍ଗେସଙ୍ଗେ ତାହା ହୋଇଗଲା ଏକ ରବରଷ୍ଟାମ୍ପ । ସେହି ରବରଷ୍ଟାମ୍ପକୁ ରୁଦ୍ର ପ୍ୟାଡ୍‌ରେ ଯେଉଁଠି ଦସ୍ତଖତ କରିଥିଲେ ତା' ତଳେ ମାରିଲେ । ଆଉ ଦେଖାଗଲା ତାହା ହେଉଛି ରୁଦ୍ରଙ୍କର ଲୋକସଭା ସାଂସଦ ଷ୍ଟାମ୍ପ । ମାନିବାକୁ ପଡ଼ିବ ରୁଦ୍ରଙ୍କୁ । ସେ ଯୁଆଡ଼େ ଯାଆନ୍ତୁ ନା କାହିଁକି ସାଥିରେ ଲୋକସଭାକୁ ଧରି ଯାଉଛନ୍ତି । ମାନେ ନିଜେ ସାଂସଦ ପୁଣି ସାଥିରେ ସାଂସଦ ପ୍ୟାଡ୍ । ପୁଣି ସାଂସଦଙ୍କ ରବରଷ୍ଟାମ୍ପ । ସତେ ଯେମିତି ରୁଦ୍ର ପକେଟ୍‌ରେ ଲୋକସଭାକୁ ରଖିଛନ୍ତି । ଏମିତି ଭୁବନେଶ୍ୱର ଲୋକସଭା ସାଂସଦ ପ୍ରସନ୍ନ ପାଟଶାଣୀଙ୍କୁ ଅନେକ ସମୟରେ କୁହାଯାଏ ଯେ ତାଙ୍କୁ ଯେଉଁଠି ଯେଉଁ ସମୟରେ ଦରଖାସ୍ତଟିଏ ଦିଆଗଲେ ମଧ୍ୟ ସେ ଦସ୍ତଖତ

କରିଦିଅନ୍ତି । କିନ୍ତୁ ଷ୍ଟାମ୍ପ ସେ ମାରନ୍ତି ନାହିଁ । ପୁଣି ପ୍ୟାଡ୍ ବି ତାଙ୍କ ପାଖରେ ନଥାଏ । ଏସବୁକୁ ଯୋଗାଡ଼ କରିବାକୁ ହେଲେ ସଂପୃକ୍ତ ବ୍ୟକ୍ତିଙ୍କୁ ପ୍ରସନ୍ନଙ୍କ ଦରବାରକୁ ଯିବାକୁ ହିଁ ପଡ଼ିବ । କିନ୍ତୁ ପ୍ରସନ୍ନଙ୍କୁ ଟପିଯାଇଛନ୍ତି ରୁଦ୍ର । ସେ ଯେଉଁଠିକୁ ଗଲେ ସେଠାରେ ଦରବାର ଆଉ ସେହିଠାରେ ହିଁ ପ୍ୟାଡ୍ ଓ ଲୋକସଭା ରବରଷ୍ଟାମ୍ପ । ଦେଖାଯାଉ ରୁଦ୍ର ଲୋକସଭାକୁ ପକେଟ୍‌ରେ ରଖି କେତେଦୂର ଲୋକଙ୍କର ପ୍ରିୟ ହୋଇପାରୁଛନ୍ତି ।

# ବିକ୍ରମ ଓ କାଜୁ

୨୦୦୪ରେ ବିକ୍ରମ ବର୍ମା ମାହାଙ୍ଗାରୁ ବିଜେଡିରୁ ପ୍ରାର୍ଥୀ ହୋଇ ବିଜୟୀ ହେଲେ । ଏମିତି ବିଧାୟକ ହେବା ପୂର୍ବରୁ ବିକ୍ରମ କୃଷକ, ଶିକ୍ଷକମାନଙ୍କର ନେତା ପାଲଟି ଯାଇଥିଲେ । ବିଧାୟକ ହେବାପରେ ସେ ଯେ ସେଥିରୁ ଦୂରେଇଗଲେ ତାହା ନୁହେଁ । କିନ୍ତୁ ୨୦୦୯ରେ ବିକ୍ରମ ମାହାଙ୍ଗାରୁ ଆଉ ଟିକେଟ ପାଇଲେ ନାହିଁ । କାହିଁକି ଟିକେଟ ମିଳିଲା ନାହିଁ ବୋଲି ପ୍ରଶ୍ନ ହେବାରୁ ବିକ୍ରମ ବେଳେବେଳେ କହିଦେଉଥିଲେ ଯେ ବିଧାନସଭାରେ ବିଧାୟକଙ୍କ ଦରମା ଓ ଭତା ବଢ଼ାଯିବାକୁ ସେ ବିରୋଧ କରୁଥିଲେ । ବୋଧହୁଏ ଏଥିନିମନ୍ତେ ତାଙ୍କର ଶତ୍ରୁ ଅଧିକ ହୋଇଗଲେ । ଯେଉଁଥିପାଇଁ ତାଙ୍କୁ ଟିକେଟ ମିଳିଲା ନାହିଁ । ଅବଶ୍ୟ ଟିକେଟ ନମିଳିବାରୁ ବିକ୍ରମ ଯେ ହତାଶ ହୋଇଯାଇଥିଲେ ତାହା ନୁହେଁ । ସେ ଭାବିନେଇଥିଲେ ଯେ ତାଙ୍କୁ ବିଜେଡି ସରକାର ପକ୍ଷରୁ ଏକ ନିଗମରେ ଥଇଥାନ କରାଯିବ ବୋଲି । ଯଦିଓ ବିଳମ୍ବ ହେଲା କିନ୍ତୁ ବିକ୍ରମ ନିଗମ ଅଧକ୍ଷ ପଦବୀରେ ଥଇଥାନ ହେଲେ । ଆଉ ସେ ହେଲେ କାଜୁ ନିଗମର ଅଧକ୍ଷ । ଓଡ଼ିଆରେ ଏକ ପ୍ରବାଦ ଅଛି । ତାହା ହେଲା ବିଳମ୍ବେ କାର୍ଯ୍ୟ ସିଦ୍ଧି । ଏହା ଆଉ କାହା ପାଇଁ ସତ ହେଉ କି ନହେଉ କିନ୍ତୁ ବିକ୍ରମଙ୍କ ପାଇଁ ଖାଂଟି ସତ । କାଜୁ ନିଗମର କାର୍ଯ୍ୟ କ'ଣ ତାହା ଜାଣିବା ପାଇଁ ଆମକୁ ଭିତରକୁ ଯିବାକୁ ପଡ଼ିବନାହିଁ । ତେବେ ବିକ୍ରମଙ୍କ ବର୍ତମାନର କାର୍ଯ୍ୟକଳାପକୁ ଦେଖିଦେଲେ ତାହା ବେଶ୍ ବାରି ହୋଇଯାଉଛି । ବିକ୍ରମ ବିଭିନ୍ନ ଅଫିସର ଓ ରାଜନେତାଙ୍କୁ ବିଭିନ୍ନ ସମୟରେ କାଜୁ ବାଂଟୁଥିବାର ଦୃଶ୍ୟ ଦେଖିବାକୁ ମିଳୁଛି । କାଜୁ ନିଗମର ଅଧକ୍ଷ ହୋଇଥିବାରୁ ବୋଧହୁଏ ତାଙ୍କୁ କାଜୁ ମାଗଣାରେ ମିଳୁଛି ଆଉ ସେ ତାହାକୁ ବାଂଟୁଛନ୍ତି ବୋଲି ଏକ ଧାରଣା ସୃଷ୍ଟି ହେଉଛି । ସାଧାରଣରେ ଚର୍ଚ୍ଚା ହେଉଛି ଯେ, ବିକ୍ରମ କାଜୁ ନିଗମ ଅଧକ୍ଷ ହୋଇଥିବାରୁ ତାଙ୍କ ପାଖରେ କାଜୁ ସାଲୁବାଲୁ ହେଉଛି । ମାନିବାକୁ ପଡ଼ିବ ବିକ୍ରମଙ୍କୁ । ଯେଉଁ ନିଗମର ସେ ଅଧକ୍ଷ ହୋଇଛନ୍ତି ସେହି ନିଗମର ନାମକରଣଟି ଠିକ୍ ବୋଲି ସେ କାଜୁ ବାଂଟି ପ୍ରମାଣିତ କରିଦେଇଛନ୍ତି । ଦେଖାଯାଉ ବିକ୍ରମ କେତେଦିନ କାଜୁ ବାଂଟି ଚାଲୁଛନ୍ତି ।

# ଡାକ୍ତର ପାଟ୍ଟଶାଣୀ

ଏମିତି ରାଜନୀତି କଲେ ସବୁ ବିଷୟରେ ପାରଙ୍ଗମ ହେବାକୁ ପଡ଼ିବ । ଯାହା ନଜାଣିଥିବ ତାହା ଜାଣିଛି ବୋଲି କହିବ ଆଉ ଯାହା ଜାଣିଥିବ ତାହା ଅଧିକ ଜାଣିଛି ବୋଲି ପ୍ରଚାର କରିବ । ଏହାକୁ ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟ୍ଟଶାଣୀ ଅକ୍ଷରେ ଅକ୍ଷରେ ମାନି ଚଳୁଛନ୍ତି । ଏମିତି ଗୋଟିଏ ସମୟରେ ପ୍ରସନ୍ନଙ୍କୁ ନକ୍ସଲ ବୋଲି କୁହାଯାଉଥିଲା । ତା'ପରେ ତାଙ୍କୁ ଖୋର୍ଦ୍ଧା ବିଧାୟକ ବୋଲି କୁହାଗଲା । ପୁଣି କବି ପାଟ୍ଟଶାଣୀ ଭାବେ ତାଙ୍କର ପରିଚୟ ମଧ୍ୟ ସୃଷ୍ଟି ହେଲା । ଏମିତି ଯୋଗ ବିଶାରଦ ଭାବେ ମଧ୍ୟ ଗୋଟିଏ ସମୟରେ ସେ ବେଶ୍ ନାଁ କରିଥିଲେ । ଏବେ କ୍ରମାଗତ ଭାବେ ଚାରିଥର ଭୁବନେଶ୍ୱର ଲୋକସଭା ସାଂସଦ ପ୍ରସନ୍ନ ହେଲେଣି । ପୁଣି ଗେରୁଆ ବସ୍ତ୍ର, ଦାଢ଼ି ସାଙ୍ଗକୁ ହାତରେ ବାଡ଼ିଟିଏ ଧରି ଚାଲୁଥିବାରୁ ତାଙ୍କର ପରିଚୟ ମଧ୍ୟ ବାବା ବି ହୋଇଗଲାଣି । ଏମିତି ମଧ୍ୟ ସେ ପିଏଚ୍‌ଡି କରିଛନ୍ତି । ମାନେ ତାଙ୍କ ନାମ ଆଗରୁ ଡକ୍ଟର ଲେଖାଯାଇପାରିବ । କିନ୍ତୁ ପିଏଚ୍‌ଡି କରି ଡକ୍ଟର ଉପାଧି ଲାଭ କରିଥିବା ବ୍ୟକ୍ତିଙ୍କୁ ଡାକ୍ତର କୁହାଯିବ ନାହିଁ । ସେଦିନ ପ୍ରସନ୍ନଙ୍କ ଦରବାର ଚାଲିଥିବା ବେଳେ ହଠାତ୍ ଜଣେ ବ୍ୟକ୍ତି ସେଠାରେ ପହଂଚିଲେ । ପ୍ରସନ୍ନ କହିଲେ- ବହୁଦିନ ହେଲା ତୋ'ର ଦେଖାନାହିଁ । କ'ଣ କାମ ଅଛି କହ କରିଦେବା । ବ୍ୟକ୍ତି ଜଣଙ୍କ କହିଲେ- ୧୯୯୦ ମସିହା ପରଠାରୁ ପ୍ରସନ୍ନ ପାଟ୍ଟଶାଣୀଙ୍କ ସହିତ ଆଉ ଦେଖାସାକ୍ଷାତ ପ୍ରାୟ ହୋଇନାହିଁ । ପ୍ରସନ୍ନ କହିଲେ- ଅତୀତକୁ ଯିବାନାହିଁ ବର୍ତ୍ତମାନକୁ ଯିବା । ହଠାତ୍ ପ୍ରସନ୍ନଙ୍କର ଆଖି ପଡ଼ିଗଲା ସେହି ବ୍ୟକ୍ତିଙ୍କ ଗୋଡ଼ ଉପରେ । ଫାଇଲେରିଆ ରୋଗରେ ଆକ୍ରାନ୍ତ ହୋଇ ସେହି ବ୍ୟକ୍ତିଙ୍କର ଗୋଡ଼ିଟି ଗୋଦର ହୋଇଯାଇଥିବାର ପ୍ରସନ୍ନ ଦେଖିଲେ । ପ୍ରସନ୍ନ କହିଲେ- କେମିତି ହେଲା ଏସବୁ । ମୋ ପାଖକୁ ତୁ କାହିଁକି ଆସିଲୁ ନାହୁଁ । ଯେତେବେଳେ ମୁଁ ଯୋଗଶିକ୍ଷା ଓଡ଼ିଶାରେ ଆରମ୍ଭ କରିଥିଲି ସେତେବେଳେ ତୁ ମୋର ଡାହାଣ ହାତ ଥିଲୁ । ତୁ ମୋ ପାଖକୁ ଆସିଥିଲେ ଫାଇଲେରିଆରେ ଆକ୍ରାନ୍ତ ହୋଇ ନଥା'ନ୍ତୁ କି ତୋର ଗୋଡ଼ ଗୋଦର ହୋଇ ନଥା'ନ୍ତା । ବ୍ୟକ୍ତି ଜଣଙ୍କ କହିଲେ- ଯାହା ଭଗବାନଙ୍କର ବରାଦ ଥିବ ତାହା ହିଁ ହେବ । ଭଗବାନଙ୍କ ବରାଦ ଅନୁଯାୟୀ ତାଙ୍କ ଗୋଡ଼ ଗୋଦର ହୋଇଯାଇଛି । ଯଦି ସେ ପ୍ରସନ୍ନଙ୍କ ପାଖକୁ ଆସିଥା'ନ୍ତେ ତେବେ କ'ଣ ଗୋଡ଼ ଗୋଦର ହୋଇ ନଥା'ନ୍ତା ବୋଲି ସେ ପ୍ରଶ୍ନ କରିବାରୁ ପ୍ରସନ୍ନ କହିଲେ- ଆଦୌ ହୋଇ ନଥା'ନ୍ତା । ଏହାର ଏକ ଫର୍ମୁଲା ଅଛି । ସେହି ଫର୍ମୁଲା ପ୍ରୟୋଗ କଲେ ଗୋଡ଼ ଗୋଦର ହେବନାହିଁ । ଏଥିପାଇଁ ଔଷଧ ବି ଖାଇବାକୁ ପଡ଼ିବ ନାହିଁ । ବ୍ୟକ୍ତି ଜଣଙ୍କ କହିଲେ- ଆପଣ ତ ଡାକ୍ତର ନୁହନ୍ତି ଫାଇଲେରିଆ ରୋଗର ଚିକିତ୍ସା କେମିତି ଜାଣିଲେ । ଆପଣ ଡାକ୍ତର ନହୋଇ

ଚିକିତ୍ସା ବତାଇଲେ ତାହାକୁ କେହି ଶୁଣିବେ ନାହିଁ । ପ୍ରସନ୍ନ କହିଲେ- ଶୁଣନ୍ତୁ କି ନଶୁଣନ୍ତୁ ତାଙ୍କର ସେଥିରେ କିଛି ଯାଏଆସେ ନାହିଁ । ତେବେ ତାଙ୍କ ଠାରୁ ସେହି ତତ୍ୱ ଶୁଣିବା ପରେ ତାହାକୁ ପ୍ରୟୋଗ କରି ଅନେକ ବ୍ୟକ୍ତି ଫାଇଲେରିଆ ରୋଗରୁ ମୁକ୍ତି ପାଇଛନ୍ତି । ବ୍ୟକ୍ତି ଜଣଙ୍କ କହିଲେ- ତା' ହେଲେ ମୁଁ ବି ଶୁଣିବି । ପ୍ରସନ୍ନ କହିଲେ- ତା' ହେଲେ ତୁ ହୋଇଯା ଅବୋଲକରା । ଅର୍ଥାତ୍ ମୁଁ ଜାଣିଛି ତୁ ମୋ ବୋଲ ମାନିବୁ ନାହିଁ । ତଥାପି କହୁଛି ଶୁଣ । ସବୁଦିନ ସମୁଦ୍ର ପାଣି ଚାମୁଚେ ଲେଖାଏଁ ପିଇବୁ ଆଉ ଖାଇବା ପୂର୍ବରୁ ଓ ଖାଇବା ପରେ ପରିସ୍ରା ଯିବୁ । ଏତିକି କଲେ ଫାଇଲେରିଆ ରୋଗ ହେବନାହିଁ । ଏହା ହେଉଛି ମୋର ପ୍ରେସ୍‌କ୍ରିପ୍‌ସନ୍ । ବ୍ୟକ୍ତି ଜଣଙ୍କ କହିଲେ- ତା' ହେଲେ ମୁଁ ଯାଉଛି ସମୁଦ୍ର ପାଣି ବୋତଲରେ ଆଣିବି ଓ ଆପଣଙ୍କ କହିବା ଅନୁଯାୟୀ କାମ କରିବି । ପ୍ରସନ୍ନ କହିଲେ- ତୋ ଗୋଡ଼ ଫାଇଲେରିଆରେ ବଡ଼ ଧରଣର ଗୋଦର ହୋଇଯାଇଛି । ତେଣୁ ସମୁଦ୍ର ପାଣି ପିଇଲେ କି ଖାଇବା ପୂର୍ବରୁ କି ପରେ ପରିସ୍ରା କଲେ ଗୋଦର ଗୋଡ଼ଟି ଆଉ ପୂର୍ବ ଅବସ୍ଥାକୁ ଆସିବ ନାହିଁ । ତାହାର ଅପରେସନ୍ ଦରକାର । ତୁ ଅପରେସନ୍ କରିବାର ବନ୍ଦୋବସ୍ତ କର । ମୋ ଦରବାରକୁ ଯଦି କେତେବେଳେ ଆସିବୁ ତେବେ ମୁଁ ଦରବାରରେ ଥିବା ଲୋକଙ୍କ ଠାରୁ ଟଙ୍କା ଆଦାୟ କରି ତୋ ଅପରେସନ୍‌ର ଖର୍ଚ୍ଚ ବାବଦରେ ଆର୍ଥିକ ସହାୟତା ଦେବାର ବନ୍ଦୋବସ୍ତ କରିବି । ଏତିକିରେ ବ୍ୟକ୍ତି ଜଣଙ୍କ ବେଶ୍ ଖୁସି ହୋଇଯାଇଥିଲେ ଆଉ କହିଲେ- ପ୍ରକୃତରେ ବାବା ହିଁ ଡାକ୍ତର ଆଉ ବାବା ହିଁ ଭଗବାନ ।

# ଭାଗିରଥୀଙ୍କ ପର୍ବ

ଏ ହେଲେ ଭାଗିରଥୀ ବଡ଼ଜେନା । ଓଡ଼ିଶା ସମବାୟ ଆନ୍ଦୋଳନର ଅନ୍ୟତମ ପ୍ରମୁଖ ନେତା । ୨୦୦୯ ନିର୍ବାଚନରେ ଉତର-ଭୁବନେଶ୍ୱରରୁ ଭାଗିରଥୀ ବିଜେଡି ପ୍ରାର୍ଥୀ ହୋଇ ବିଜୟୀ ହୋଇଛନ୍ତି । ଏମିତି ସମାଜସେବୀ ଭାବେ ତାଙ୍କର ବେଶ୍ ନାମ ରହିଛି । ଯୁବକ ସମୟରେ ଭୁବନେଶ୍ୱର ବ୍ଲକର ମଧ୍ୟ ସେ ଅଧ୍ୟକ୍ଷ ଥିଲେ । ଖୋର୍ଦ୍ଧା କେନ୍ଦ୍ର ସମବାୟ ବ୍ୟାଙ୍କର ସେ ପୂର୍ବରୁ ସଭାପତି ଥିଲେ ଆଉ ଏବେବି ସଭାପତି ଅଛନ୍ତି । ଏମିତି ଭଗବାନ ଭାଗିରଥୀଙ୍କୁ ଡଉଲଡାଉଲ ଚେହେରାଟିଏ ବି ଦେଇଛନ୍ତି । କିନ୍ତୁ ଚେହେରା ଦେଇଥିଲେ ଯେ ସବୁଦିନ ସେହିପରି ଚେହେରା ରହିବ ତାହା ନୁହେଁ । ଚେହେରାକୁ ମଧ୍ୟ ସଜାଇବାକୁ ପଡ଼ିବ । ଆଉ ଚେହେରା ପ୍ରତି ଯତ୍ନବାନ ହେବାକୁ ପଡ଼ିବ । ଆଉ କେହି ନୁହଁନ୍ତି ଭାଗିରଥୀ କିନ୍ତୁ ଏସବୁକୁ ବେଶ୍ ମାନନ୍ତି । ଯେଉଁଥିପାଇଁ ତାଙ୍କ ଚେହେରା ଡ଼ଉଲଡ଼ାଉଲ ହୋଇରହିଛି । ଏମିତି ସକାଳ ହେଲେ ଭାଗିରଥୀଙ୍କ ଦରବାରରେ ଲୋକଙ୍କର ବେଶ୍ ଭିଡ଼ ହୋଇଯାଏ । ସେଦିନ ମଧ୍ୟ ବେଶ୍ ଭିଡ଼ ହୋଇଥିଲା । କିନ୍ତୁ ବ୍ୟତିକ୍ରମ ଦେଖାଯାଇଥିଲା ଭାଗିରଥୀଙ୍କ ବେଶରେ ।

ଭାଗିରଥୀ ଏକ ଚୌକିରେ ବସିଥା'ନ୍ତି । କିନ୍ତୁ ସବୁଦିନର ପୋଷାକ ତାଙ୍କ ଦେହରେ ନଥାଏ । ଏକ କଳା ଆପ୍ରୋନ୍ ସେ ପିନ୍ଧିଥା'ନ୍ତି । କେହି ଜଣେ ବ୍ୟକ୍ତି ତାଙ୍କ ମୁଣ୍ଡବାଳ କୁଣ୍ଡାଉଥା'ନ୍ତି । ବୁଝୁବୁଝୁ ଜଣାପଡ଼ିଲା ଭାଗିରଥୀ ତାଙ୍କ ମୁଣ୍ଡବାଳ କଳା କରୁଛନ୍ତି । ମାନେ ଭାଗିରଥୀ ସେଲୁନ୍‌କୁ ଯାଆନ୍ତି ନାହିଁ । ଭଣ୍ଡାରୀ ତାଙ୍କ ପାଖକୁ ଆସେ । ଆଉ ଯେତିକି ସମୟ ଭଣ୍ଡାରୀ ତାଙ୍କର ବାଳ କାଟେ ଓ ବାଳ କଳା କରେ ସେତିକି ସମୟ ଭାଗିରଥୀଙ୍କ ଦରବାର ସତେ ଯେମିତି ହୋଇଯାଏ ସେଲୁନ୍ । ଯେମିତି ସେଲୁନ୍‌ରେ ବାଳ କାଟୁଥିବା କିମ୍ବା ବାଳ ରଙ୍ଗ କରୁଥିବା ବ୍ୟକ୍ତି ଜଣକ ସେହି ସମୟରେ ଯେ ଚୁପ୍ ହୋଇବସିଥା'ନ୍ତି ତାହା ନୁହେଁ । ବେଳେବେଳେ କଥାବାର୍ତ୍ତା ବି କରୁଥା'ନ୍ତି । ଭଣ୍ଡାରୀ ଜଣଙ୍କ ଭାଗିରଥୀଙ୍କୁ କଳା ଆପ୍ରୋନ୍ ପିନ୍ଧାଇ ତାଙ୍କର ବାଳ କାଟିବା ସହିତ ରଙ୍ଗ କରୁଥିବା ସମୟରେ ଭାଗିରଥୀ ମଧ ଦରବାର ଚଳାଇଥା'ନ୍ତି । ମାନେ ଲୋକମାନେ ତାଙ୍କ ପାଖକୁ ସେହି ସମୟରେ ବି ଆସନ୍ତି । ସେପଟେ ଭାଗିରଥୀଙ୍କ ବାଳ କଟା ଓ ବାଳ ରଙ୍ଗ କାମ ଚାଲିଥାଏ । ଏପଟେ ଭାଗିରଥୀ ଦରବାରକୁ ଆସିଥିବା ଲୋକଙ୍କ ସହିତ କଥାବାର୍ତ୍ତା ବି କରିଚାଲନ୍ତି । ଅବଶ୍ୟ ଏଭଳି ଦରବାର ସବୁଦିନ ଯେ ହୁଏ ତାହା ନୁହେଁ । ମାସକରେ ତିନି, ଚାରିଥର ହୁଏ । ଆଉ ଏହି ଦରବାରକୁ ଆସିବା ପାଇଁ ଲୋକଙ୍କର ମଧ ବେଶ୍ ଆଗ୍ରହ ଥାଏ । ବାଳ ରଙ୍ଗ ହେଉଥିବା ସମୟରେ ଭାଗିରଥୀଙ୍କୁ ଯିଏ ଯେଉଁ ବର ମାଗେ ତାହାକୁ ସେ କୁଆଡ଼େ ତଥାସ୍ତୁ ବୋଲି କହିଦିଅନ୍ତି । ଉତର-ଭୁବନେଶ୍ୱର ନିର୍ବାଚନମଣ୍ଡଳୀର ବାସିନ୍ଦାମାନେ ଭାଗିରଥୀଙ୍କୁ ଭେଟିବା ପାଇଁ ଏହି ବାଳ ରଙ୍ଗ ସମୟକୁ ଚାହିଁ ରହୁଛନ୍ତି । ଅବଶ୍ୟ ଏଭଳି ଦରବାର ମାତ୍ର ଦୁଇଘଂଟା ପାଇଁ ଚାଲେ । ଅନ୍ୟ କେଉଁ ନେତା ହୋଇଥିଲେ ବାଳ କାଟୁଥିବା କିମ୍ବା ବାଳ ରଙ୍ଗ କରୁଥିବା ସମୟରେ ଲୋକଙ୍କୁ ଭେଟିବେ ନାହିଁ । କିନ୍ତୁ ଭାଗିରଥୀ ସେଥିରୁ ବ୍ୟତିକ୍ରମ ହୋଇଯାଇଛନ୍ତି । ନିର୍ବାଚିତ ପ୍ରତିନିଧି ହୋଇଗଲେ ସିଏ ଆଉ ନିଜର ନୁହନ୍ତି ଲୋକମାନଙ୍କର ବୋଲି ଭାଗିରଥୀ କହନ୍ତି । ଅବଶ୍ୟ ଭାଗିରଥୀ କାହିଁକି ବେଶ୍ ଲୋକପ୍ରିୟ ହୋଇଯାଇଛନ୍ତି ତାହା ଏହି ବାଳ କଟା ଓ ରଙ୍ଗ ଦିଆଯିବାର ଦୁଇଘଂଟା ଦରବାରକୁ ଦେଖିଦେଲେ ଯେକୌଣସି ବ୍ୟକ୍ତି ଜାଣିଯିବ । ଦେଖାଯାଉ ଭାଗିରଥୀ ଲୋକପ୍ରତିନିଧି ହୋଇ ନିଜର ନହୋଇ ଲୋକମାନଙ୍କର ହୋଇ କେତେଦିନ କାମ କରୁଛନ୍ତି ।

# ନୂଆବର୍ଷର ଅନୁଚିନ୍ତା

**ସା**ଧାରଣତଃ ନୂଆବର୍ଷ ଆସିଲେ ସେ ନେତା ହୁଅନ୍ତୁ କି ଅଫିସର ହୁଅନ୍ତୁ କି ଛାତ୍ର ହୁଅନ୍ତୁ କି ଅନ୍ୟ ଯେକେହି ବ୍ୟକ୍ତି ହୁଅନ୍ତୁ ସମସ୍ତଙ୍କର ଏକ ଭାବନା ସୃଷ୍ଟି ହୁଏ ଯେ ବର୍ଷ ଆରମ୍ଭରୁ କିଛି କରିବେ ହିଁ କରିବେ । କିନ୍ତୁ ନୂଆବର୍ଷ ଚାଲିଗଲେ ଆଉ ସେ କ୍ଷେତ୍ରରେ କେହି ଭାବନ୍ତି

ନାହିଁ । ଏବେ ଯିବା ଆମେ ନବୀନ ପଟ୍ଟନାୟକଙ୍କ ସରକାରକୁ । ଏମିତି ଏକ ପରମ୍ପରା ରହିଆସିଛି ଯେ ମୁଖ୍ୟମନ୍ତ୍ରୀ ହୁଅନ୍ତୁ କି ମନ୍ତ୍ରୀ ହୁଅନ୍ତୁ ନୂଆବର୍ଷରେ ସେମାନଙ୍କ ପାଇଁ ଅଭିନନ୍ଦନ ପତ୍ର ଛପା ହୁଏ । ଆଉ ତାହାକୁ ସେମାନେ ବିଭିନ୍ନ ବ୍ୟକ୍ତିବିଶେଷଙ୍କୁ ପଠାଇଥା'ନ୍ତି । ଦେଖାଯାଏ ଯେ ଅନେକଙ୍କ ନୂଆବର୍ଷ ଅଭିନନ୍ଦନ କାର୍ଡ଼ରେ ଜଗନ୍ନାଥଙ୍କ ଫଟୋ ରହିଥାଏ । ଆଉ କାହା କାର୍ଡ଼ରେ ପ୍ରାକୃତିକ ସୌନ୍ଦର୍ଯ୍ୟର ଦୃଶ୍ୟ ରହିଥାଏ । କିନ୍ତୁ ଏମିତି ଏକ କାର୍ଡ଼ ସମ୍ପର୍କରେ ଏଠାରେ ବର୍ଣ୍ଣନା କରାଯାଉଛି ଯାହାକି ଅନ୍ୟମାନଙ୍କ ପାଇଁ ଆଦର୍ଶ ହେବ ହିଁ ହେବ । ଆମେ ସେହି କାର୍ଡ଼ ସମ୍ପର୍କରେ ବଖାଣିବାକୁ ହେଲେ ଆମକୁ ଯିବାକୁ ପଡ଼ିବ ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକଙ୍କ ପାଖକୁ । କେଜାଣି କେମିତି ତାଙ୍କର କାହିଁକି ମନେ ହେଲା ଏଥର ତାଙ୍କ ଅଭିନନ୍ଦନ କାର୍ଡ଼ଟିକୁ ବ୍ୟତିକ୍ରମ କରିବା ପାଇଁ । ଏମିତି ଯେ ସେ ଜଗନ୍ନାଥଙ୍କୁ ଭକ୍ତି କରନ୍ତି ନାହିଁ ତାହା ନୁହେଁ । ବରଂ ମାସକେ ଅନ୍ତତଃ ଦୁଇଥର ସେ ପୁରୀ ଯାଇ ଜଗନ୍ନାଥଙ୍କୁ ଦର୍ଶନ କରନ୍ତି । ପୁଣି ସମୟ ଓ ସୁଯୋଗ ପାଇଲେ ବିଭିନ୍ନ ସମୟରେ ମଧ୍ୟ ଜଗନ୍ନାଥଙ୍କ ପାଖରେ ସେ ହାଜର ହୋଇଯାଆନ୍ତି । ଏଥର ସେ ଜଗନ୍ନାଥଙ୍କର କି କୌଣସି ପ୍ରାକୃତିକ ସୌନ୍ଦର୍ଯ୍ୟ ଦୃଶ୍ୟର ଫଟୋକୁ ତାଙ୍କ ନୂଆବର୍ଷ ଅଭିନନ୍ଦନ କାର୍ଡ଼ରେ ସ୍ଥାନ ଦେଇନାହାନ୍ତି । ଏମିତି ତାଙ୍କ ବିଭାଗ ପକ୍ଷରୁ ଶକ୍ତି ସମ୍ପର୍କୀୟ ଏକ ଚିତ୍ରାଙ୍କନ ପ୍ରତିଯୋଗିତା ହୋଇଥିଲା । ଏହା ପ୍ରଥମ ଥର ପାଇଁ ଯେ ହେଉଥିଲା ତାହା ନୁହେଁ । ସବୁବର୍ଷ ମଧ୍ୟ ଏହା ହୁଏ । ଏଥିରେ ପ୍ରଥମ, ଦ୍ୱିତୀୟ, ତୃତୀୟ ପୁରସ୍କାର ମଧ୍ୟ ଦିଆଯାଏ । କେଜାଣି କାହିଁକି ଅତନୁଙ୍କର ଇଚ୍ଛା ହେଲା ଏହି ଚିତ୍ରାଙ୍କନ ପ୍ରତିଯୋଗିତାରେ ପୁରସ୍କାର ପାଇଥିବା ଏକ ଚିତ୍ରକୁ ସେ ତାଙ୍କର ୨୦୧୧ ଅଭିନନ୍ଦନ କାର୍ଡ଼ର ଉପରେ ସ୍ଥାନ ଦେବେ ବୋଲି । ଏହାପରେ ବଛାଗଲା କେଉଁ ଚିତ୍ରାଙ୍କନଟିକୁ କାର୍ଡ଼ରେ ଛପାଯିବ ବୋଲି । କାର୍ଡ଼ ପାଇଁ ଯେଉଁ ଚିତ୍ରାଙ୍କନର ରଙ୍ଗ ସୁହାଉଥିବ ସେହି ଚିତ୍ରାଙ୍କନକୁ ବଛାଯିବା ପାଇଁ ସ୍ଥିର ହେଲା । ପ୍ରଥମ ପୁରସ୍କାର ପାଇଥିବା ଏକ ଚିତ୍ରାଙ୍କନକୁ ଅତନୁ ନିଜେ ବାଛିଲେ ୨୦୧୧ ଅଭିନନ୍ଦନ କାର୍ଡ଼ର ଉପରେ ସ୍ଥାନ ଦିଆଯିବା ପାଇଁ । କେବଳ ସେତିକିରେ ପ୍ରସଙ୍ଗ ଅଟକି ଗଲାନାହିଁ । ଯିଏ ଚିତ୍ର ଆଙ୍କି ପୁରସ୍କାର ପାଇଥିଲେ ତାଙ୍କର ନାମ ମଧ୍ୟ ସେହି ଚିତ୍ରାଙ୍କନ ତଳେ ଦିଆଯିବା ପାଇଁ ଅତନୁ ନିର୍ଦ୍ଦେଶ ଦେଲେ । ଏହାକୁ ଏକ ଛୋଟ ଘଟଣା ବୋଲି ମନେ କରାଯାଇପାରେ । କିନ୍ତୁ ଚିତ୍ରାଙ୍କନ ପ୍ରତିଯୋଗିତାରେ କୃତିତ୍ୱ ହାସଲ କରିଥିବା ଜଣେ ପ୍ରତିଯୋଗୀଙ୍କର ଚିତ୍ରକୁ ରାଜ୍ୟ ସରକାରଙ୍କର ଜଣେ ମନ୍ତ୍ରୀ ତାଙ୍କ ଅଭିନନ୍ଦନ କାର୍ଡ଼ରେ ସ୍ଥାନ ଦେବା ଦ୍ୱାରା କ୍ରମେ ଛାତ୍ରଛାତ୍ରୀଙ୍କ ମଧରେ ଚିତ୍ର ଆଙ୍କିବା ପାଇଁ ଉତ୍ସାହ ବୃଦ୍ଧି ପାଇବ ହିଁ ପାଇବ । ୨୦୧୧ ନୂଆବର୍ଷରେ ଅତନୁଙ୍କ ଅଭିନନ୍ଦନ କାର୍ଡ଼ ହିଁ ହୋଇଯାଇଛି ଏକ ଶିକ୍ଷଣୀୟ ବ୍ୟତିକ୍ରମ । ଦେଖାଯାଉ ଏହି ବ୍ୟତିକ୍ରମଟି ଛାତ୍ରଛାତ୍ରୀମାନଙ୍କ ମନରେ ଚିତ୍ର ଆଙ୍କିବା ପାଇଁ କେତେ ସ୍ପୃହା ଆଣୁଛି ।

# ଏସିଡ୍ ଟେଷ୍ଟ

ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ପ୍ରତାପ ଜେନା ବେଶ୍ ଖୁସ୍ । ଅବଶ୍ୟ ମନ୍ତ୍ରୀ ଭାବେ ଯେ ସେ ଖୁସ୍ ତାହା ନୁହେଁ । କିନ୍ତୁ ତାଙ୍କର ଖୁସ୍ ହେଉଛି ବିଧାୟକ ଭାବେ । ଏମିତି ପ୍ରତାପ ପୂର୍ବରୁ କିଶନନଗର ବିଧାୟକ ଥିଲେ । ୨୦୦୯ ସୀମା ପୁନଃନିର୍ଦ୍ଧାରଣରେ କିଶନନଗର ସତା ହରାଇଲା । କେଉଁଠୁ ପ୍ରାର୍ଥୀ ହେବେ ବୋଲି ପ୍ରତାପ ଚିନ୍ତାରେ ଥିଲେ । ତାଙ୍କୁ ଶେଷରେ ମାହାଙ୍ଗାରେ ଥଇଥାନ କରାଗଲା । ମାହାଙ୍ଗାର ବିଧାୟକ ଥିବା ବିକ୍ରମ କେଶରୀ ବର୍ମା ବିଜେଡି ଟିକେଟ ପାଇବାରୁ ବଂଚିତ ହେଲେ । ଏମିତି ଦେଖିଲେ ପ୍ରତାପଙ୍କ ପାଇଁ ମାହାଙ୍ଗା ଥିଲା ନୂଆ ନିର୍ବାଚନମଣ୍ଡଳୀ । ପ୍ରତାପ କୁଆଁପାଳ ଠାରେ ଡିସେମ୍ବର ମାସରେ ଏକ ବଡ଼ଧରଣର ବିଜେଡି ସମାବେଶର ଆୟୋଜନ କରିଥିଲେ । ଥ, ଥ, ମ, ମ ଅବସ୍ଥାରେ ପ୍ରତାପ ଥିଲେ । କେତେ ଲୋକ ହେବେ ଶେଷ ପର୍ଯ୍ୟନ୍ତ ସେ ଜାଣିପାରି ନଥିଲେ । ସମାବେଶ ଆରମ୍ଭ ହେବା ବେଳକୁ ଦେଖାଗଲା ଲୋକଙ୍କର ସୁଅ ଛୁଟୁଥିବାର । ଏତେ ଲୋକ ହେଲେ ଯେ, ପ୍ରତାପ ସେଥିରେ 'ଥ' ହୋଇଯାଇଥିଲେ । ବେଶ୍ ସୁରୁଖୁରୁରେ ସମାବେଶ ଶେଷ ହେଲା । ଏହାପରେ ଆରମ୍ଭ ହୋଇଯାଇଥିଲା କେମିତି ଏତେ ଲୋକ ହେଲେ ବୋଲି ଅବଗଣନା । କିଏ କହିଲେ- ନବୀନ ପଟ୍ଟନାୟକଙ୍କର ପ୍ରତାପ ପାଖଲୋକ ହୋଇଥିବାରୁ ସେଥିପାଇଁ ମାହାଙ୍ଗା ନିର୍ବାଚନମଣ୍ଡଳୀ ବାସିନ୍ଦା ଏହି ସମାବେଶକୁ ଚାଲି ଆସିଥିଲେ । ଆଉ କିଏ କହିଲେ- ଗଣଶିକ୍ଷା ମନ୍ତ୍ରୀ ହୋଇଥିବାରୁ ପ୍ରତାପଙ୍କର ବେଶ୍ କାଟ୍‌ତି ଅଛି । ଯେଉଁଥିପାଇଁ ପ୍ରତାପଙ୍କୁ କାଟ୍‌ତି ମନ୍ତ୍ରୀ ଭାବି ସମାବେଶକୁ ଜନସାଧାରଣଙ୍କର ସୁଅ ଛୁଟିଥିଲା । ପୁଣି ଆଉ କିଏ କହିଲେ ଯେ ସମାବେଶକୁ ଲୋକଙ୍କୁ ଅଣାଯିବା ପାଇଁ ବେଶ୍ ବ୍ୟବସ୍ଥା ହୋଇଥିଲା । ଯେଉଁଥିପାଇଁ ଶହଶହ ସଂଖ୍ୟାରେ ସମାବେଶ ସ୍ଥଳକୁ ଲୋକଙ୍କ ସୁଅ ଛୁଟିଥିଲା । କିନ୍ତୁ ପ୍ରତାପଙ୍କ ମତ ଭିନ୍ନ । ଯେତେବେଳେ ପ୍ରତାପଙ୍କୁ ଏହି ସମାବେଶରେ କିପରି ଏତେ ଲୋକ ଭିଡ଼ ହେଲେ ବୋଲି ପ୍ରଶ୍ନ କରାଗଲା ସେତେବେଳେ ପ୍ରତାପଙ୍କ ମତ ଥିଲା- ତାଙ୍କ ପାଇଁ ସମାବେଶଟି ଥିଲା ଏସିଡ୍ ଟେଷ୍ଟ ପରି । ପୂର୍ବରୁ ସେ ଜାଣିପାରୁ ନଥିଲେ ସମାବେଶ ହେଲେ ମାହାଙ୍ଗାରେ କେତେ ଲୋକ ହୁଅନ୍ତି ବୋଲି । ଏହି ସମାବେଶଟି ବିଜ୍ଞାନ ଶାସ୍ତ୍ରର ଏସିଡ୍ ଟେଷ୍ଟ ପରି ତାଙ୍କ ପାଇଁ ହୋଇଛି । ଏବେ ସେ ଜାଣିପାରିଲେଣି ତାଙ୍କ ଦ୍ୱାରା ମାହାଙ୍ଗାରେ ସଭା ହେଲେ ଲୋକ ଆସିବେ ହିଁ ଆସିବେ । ପ୍ରତାପ ବିଜ୍ଞାନର ଛାତ୍ର ଥିଲେ କି ନାହିଁ ଜଣାନାହିଁ । କିନ୍ତୁ ଏସିଡ୍ ଟେଷ୍ଟ ହିଁ ତାଙ୍କୁ ବିଜ୍ଞାନ ଛାତ୍ର କରିଦେଇଛି । ଦେଖାଯାଉ ପ୍ରତାପ ତାଙ୍କ ନିର୍ବାଚନମଣ୍ଡଳୀ ମାହାଙ୍ଗାରେ ଆଉ କେଉଁ ଏସିଡ୍ ଟେଷ୍ଟ କରୁଛନ୍ତି ।

# ଆଚାର ତେଲ

ଏମିତି ଦେଖିଲେ ତେଲ ଶରୀର ପାଇଁ ହିତକାରକ ନୁହେଁ । କିନ୍ତୁ ଯିଏ ଖାଦ୍ୟ ରସିକେସୁ ତାଙ୍କର ତେଲ ପ୍ରତି ଦୁର୍ବଳତା ରହିବ ହିଁ ରହିବ । ତେଲ ଅଧିକ ନହେଲେ ତରକାରୀ କିମ୍ବା ଅନ୍ୟ ଖାଇବା ପଦାର୍ଥ ତାଙ୍କ ପାଇଁ ସ୍ୱାଦିଷ୍ଟ ହେବନାହିଁ । ଏହା ଦେଖିବାକୁ ଆମକୁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ଆମେ ଯିବା ବାଣିଜ୍ୟ ଓ ପରିବହନ ମନ୍ତ୍ରୀ ସଂଜୀବ ସାହୁଙ୍କ ପାଖକୁ । ଏମିତି ସଂଜୀବ ଜଣେ ଖାଦ୍ୟ ରସିକେସୁ । ସେ ମନଭରି ଖାଆନ୍ତି । ମଧ୍ୟାହ୍ନ ଭୋଜନ ହେଉ କିମ୍ବା ରାତ୍ରିଭୋଜନ ହେଉ ସେଥିରେ ସେ ପାଟି ସୁଆଦ ଖାଦ୍ୟ ଖାଇବାକୁ ଭଲ ପାଇଥା'ନ୍ତି । କିନ୍ତୁ ଜଳଖିଆ ତାଙ୍କର ଏସବୁଥିରୁ ବ୍ୟତିକ୍ରମ ଅଟେ । ବରା କିମ୍ବା ଛଣାଛଣି ଜଳଖିଆ ଖାଇବାକୁ ସେ ଭଲ ପାଆନ୍ତି ନାହିଁ । ମୁଢ଼ି ହେଲେ ତାଙ୍କର କଟେପୁଅ ବାର । ଆଉ ଯଦି ମୁଢ଼ିରେ ଆଚାରରେ ମିଶିଥିବା ତେଲ ପଡ଼ିଗଲା ତେବେ ଜାଣ ଯେତେ ମୁଢ଼ି ଦେଲେ ମଧ୍ୟ ସଂଜୀବ ଖାଇ ଦେବେ ହିଁ ଦେବେ । ମୁଢ଼ି ଆଣ ବୋଲି ଯଦି ସଂଜୀବ ତାଙ୍କ ଘରେ ନିର୍ଦ୍ଦେଶ ଦିଅନ୍ତି ତେବେ ମୁଢ଼ି ସହିତ ଆଚାର ତେଲ ଗୋଳାଯାଇ ଅଣାଯାଏ । ମୁଢ଼ି ଖାଇବା ପୂର୍ବରୁ ମୁଢ଼ିରେ ଆଚାର ତେଲ ବାସନା ଯଦି ହେଉ ନଥାଏ ତେବେ ସଂଜୀବ ସଙ୍ଗେସଙ୍ଗେ କହନ୍ତି- ଆଚାର ତେଲ କାହିଁକି ପଡ଼ିନାହିଁ ବୋଲି । ମାନିବାକୁ ପଡ଼ିବ ସଂଜୀବଙ୍କର ଆଚାର ତେଲ ମିଶା ମୁଢ଼ି ଖାଇବା ନିଶାକୁ । ଏମିତି ତ ସଂଧ୍ୟାବେଳେ ଯଦି କେହି ସଂଜୀବଙ୍କ ବାସଭବନକୁ ଯାଆନ୍ତି ତେବେ ସେଠାରେ ସେ ତାଙ୍କୁ ଆଚାର ତେଲ ମିଶା ମୁଢ଼ି ଖାଇବାକୁ ଦେବେ ହିଁ ଦେବେ । ଏହା ନୁହେଁ ଯେ ଅତିଥିଙ୍କୁ ଆଚାର ତେଲ ମିଶା ମୁଢ଼ି ଖୁଆଇ ତାଙ୍କୁ ଖୁସି କରାଇବା ସଂଜୀବଙ୍କର ଉଦ୍ଦେଶ୍ୟ । କିନ୍ତୁ ଅତିଥିଙ୍କ ନାମରେ ସଂଜୀବ ମଧ୍ୟ ସେତେବେଳେ ଆଚାର ତେଲ ମିଶା ମୁଢ଼ି ଖାଇ ଆତ୍ମସନ୍ତୋଷ ଲାଭ କରିଥା'ନ୍ତି । ଯଦି କେହି ଆଚାର ତେଲ ମିଶା ମୁଢ଼ିର ସ୍ୱାଦ ଚାଖିନାହାନ୍ତି ତେବେ ସଂଜୀବଙ୍କ ବାସଭବନକୁ ଯାଇ ଆଚାର ତେଲ ମିଶା ମୁଢ଼ି ଖାଇ ଆସନ୍ତୁ ।

# ମହିଳା, ବାଡ଼ି, ଆଶିର୍ବାଦ ଓ ପାଟଶାଣୀ

ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀ ତାଙ୍କର ବାଡ଼ି ପାଇଁ ବେଶ୍ ପ୍ରସିଦ୍ଧ । ତାଙ୍କ ପାଖକୁ ଆସୁଥିବା ଲୋକଙ୍କ ମୁଣ୍ଡରେ ସେ ବାଡ଼ିକୁ ଛୁଆଇଁ ଦେଲେ ସମସ୍ତେ ଭାବନ୍ତି ଯେ, ଭଗବାନଙ୍କର ଆଶିର୍ବାଦ ମିଳିଗଲା ବୋଲି । ଏହି ବାଡ଼ିକୁ ପ୍ରସନ୍ନ କହନ୍ତି ଧର୍ମବାଡ଼ି ବୋଲି । ସବୁବେଳେ ପ୍ରସନ୍ନଙ୍କ ହାତରେ ବାଡ଼ିଟି ଥାଏ । ଆଉ ଯାହାକୁ ଦେଖିଲେ ମଧ୍ୟ ପ୍ରସନ୍ନ ତାଙ୍କ ମୁଣ୍ଡରେ ବାଡ଼ି ଲଗାଇ ଆଶିର୍ବାଦ କରନ୍ତି । କିନ୍ତୁ ଏବେ ଦେଖାଗଲାଣି

ପ୍ରସନ୍ନ ବାଡ଼ିକୁ ବେଳେବେଳେ ଲୁଚାଇ ରଖୁଛନ୍ତି । ଆଉ ଯଦି ମହିଳାମାନେ ତାଙ୍କ ପାଖକୁ ଆସୁଛନ୍ତି ସେ ଆଉ ବାଡ଼ିକୁ ବାହାର କରୁନାହାନ୍ତି । କାହିଁକି ପ୍ରସନ୍ନ ମହିଳାଙ୍କୁ ଦେଖିଲେ ବାଡ଼ିକୁ ଲୁଚାଉଛନ୍ତି ସେ ସମ୍ପର୍କରେ ଖୋଳତାଡ଼ ମଧ ହେଲା । କିନ୍ତୁ ପ୍ରସନ୍ନଙ୍କ ପାଟିରୁ ଏ ସମ୍ପର୍କରେ କଥା ବାହାରିଲା ନାହିଁ । ଧୀରେଧୀରେ ଏହାର କାରଣ ଜଣାପଡ଼ିଲା । କୁଆଡ଼େ ପ୍ରସନ୍ନ କିଛି ମହିଳାଙ୍କ ମୁଣ୍ଡରେ ବାଡ଼ି ଲଗାଇ ଆଶିର୍ବାଦ ଦେବାପରେ ସେମାନେ ସେହି ବାଡ଼ିଟିକୁ ନେବା ପାଇଁ ଜିଦ୍ ଧରିଥିଲେ । ଅବଶ୍ୟ ସେମାନଙ୍କୁ ବୁଝାସୁଝା କରି ପ୍ରସନ୍ନ ଛାଡ଼ି ଦେଇଥିଲେ । କିନ୍ତୁ କେତେକ ଯୁବତୀଙ୍କ ମୁଣ୍ଡରେ ବାଡ଼ି ଲଗାଇଲା ବେଳକୁ ପ୍ରସନ୍ନ ଦେଖିଲେ ଯେ ସେମାନଙ୍କ ମୁଣ୍ଡବାଳ ଖସିଯିବାର । ଏଥିରେ ଉକ୍ତ ଯୁବତୀମାନେ ପ୍ରସନ୍ନଙ୍କ ଉପରେ ବେଶ୍ କ୍ଷୁବ୍ଧ ହୋଇଯାଇଥିଲେ । ବାଡ଼ି ତାଙ୍କ ମୁଣ୍ଡବାଳକୁ ଖସାଇ ଦେଲା ବୋଲି ସେମାନେ କହିଥିଲେ । ପ୍ରସନ୍ନ ଜାଣିଲେ ଯେ ସହରରେ ରହୁଥିବା ଅନେକ ଯୁବତୀ ତାଙ୍କର ମୁଣ୍ଡବାଳ ସୁନ୍ଦର କରିବା ପାଇଁ ଫଲ୍ସବାଳ ଲଗାଇ ଆସିଥା'ନ୍ତି । ସେମାନଙ୍କ ମୁଣ୍ଡରେ ଯେତେବେଳେ ବାଡ଼ିଟି ଖେଂଚି ହୋଇଯାଏ ସେତେବେଳେ ଲଗାଯାଇଥିବା ଫଲ୍ସବାଳ ଖସିଯାଏ । ପ୍ରସନ୍ନ ସ୍ଥିର କଲେ ଯେ ମହିଳାଙ୍କ ମୁଣ୍ଡରେ ଆଉ ବାଡ଼ି ଲଗାଇ ଆଶିର୍ବାଦ କରିବେ ନାହିଁ । ଏହା ଫଳରେ ମହିଳାମାନେ ବାଡ଼ିଟିକୁ ନେବା ପାଇଁ ଜିଦ୍ କରିବେ ନାହିଁ କି ସେମାନେ ମୁଣ୍ଡରେ ଲଗାଇଥିବା ଫଲ୍ସବାଳ ମଧ ଖସି ଯିବନାହିଁ । ଦେଖାଯାଉ ମହିଳାଙ୍କ ମୁଣ୍ଡରେ ବାଡ଼ି ଲଗାଇ ଆଶିର୍ବାଦ ନଦେବା ପାଇଁ ପ୍ରସନ୍ନ ଯେଉଁ ନିଷ୍ପତି ନେଇଛନ୍ତି ତାହା କେତେଦିନ କାଏମ୍ ରହୁଛି ।

# ଆମିଷ ବନାମ ନିରାମିଷ

**ସା**ଧାରଣତଃ ଆମିଷ ଖାଉଥିବା ଲୋକଙ୍କର ମାଛ, ମାଂସ, ଅଣ୍ଡା ଦେଖିଲେ ପାଟିରୁ ଲାଳ ବାହାରେ । କିନ୍ତୁ ନିରାମିଷ ଖାଉଥିବା ଲୋକ ଆମିଷ ପଦାର୍ଥକୁ ଦେଖିଲେ ଆଖିକୁ ଅନ୍ୟ ଆଡ଼କୁ ବୁଲାଇନିଅନ୍ତି । ତେବେ ଏସବୁଥିରୁ ବ୍ୟତିକ୍ରମ ଅଟନ୍ତି ଯାଜପୁର ବିଧାୟକ ପ୍ରଣବ ପ୍ରକାଶ ଦାସ । ଏମିତି ପ୍ରଣବଙ୍କ ବାପା ଅଶୋକ ଦାସ ଲୋକଙ୍କୁ ଖୁଆଇବାରେ ବେଶ୍ ପାରଙ୍ଗମ ଥିଲେ । ଲୋକମାନେ ଯଦି ଭଲ ଖାଇଲେ ତେବେ ସେଥିରେ ସେ ବେଶ୍ ଖୁସି ହେଉଥିଲେ । ଏବେବି ସାରା ଓଡ଼ିଶାରେ ଅଶୋକଙ୍କ ସମ୍ପର୍କରେ ଲୋକମାନେ ଉଣାଅଧିକେ ଜାଣିଛନ୍ତି । କୁଆଡ଼େ ପୋଖରୀରେ ଅଶୋକ ବଡ଼ବଡ଼ ମାଛ ପୋଷିଥା'ନ୍ତି । ମାଛଙ୍କ ନାଁ ମଧ ସେ ଦେଇଥିଲେ । ନାଁ ଧରି ଡାକିଲେ ମାଛ ପୋଖରୀ କୂଳକୁ ଆସୁଥିଲେ । କଥାରେ ଅଛି- ଯା' ବାପା ଚଢ଼େ ଘୋଡ଼ା, ତା' ପୁଅ ଥୋଡ଼ାଥୋଡ଼ା । ଅବଶ୍ୟ ଅଶୋକଙ୍କ ପରି ତାଙ୍କ ପୁଅ ପ୍ରଣବ

ଖାଦ୍ୟ ରସିକେସୁ ନୁହନ୍ତି । ସେ ଆମିଷ ଗ୍ରହଣ କରନ୍ତି ନାହିଁ । ସିଧାସଳଖ କୁହାଗଲେ ଏହା ହେବ ଯେ ପ୍ରଣବ ହେଉଛନ୍ତି ନିରାମିଷାସି । ମାନେ ସେ ଆମିଷ ଠାରୁ ଦୂରରେ ରହନ୍ତି । ଚକୁଳି ପିଠା ଆଉ ଆଳୁଦମ୍ ହେଉଛି ତାଙ୍କର ସବୁଠୁ ପ୍ରିୟ । ଚକୁଳି ପିଠା ସହିତ ଯଦି ଆଳୁଦମ୍‌କୁ ସେ ଦେଖିଦିଅନ୍ତି ତେବେ ଜାଣ ତାଙ୍କ ପାଟିରୁ ଲାଳ ବାହାରିବ ହିଁ ବାହାରିବ । ଚକୁଳି ପିଠା ଓ ଆଳୁଦମ୍ ଖୁଆଇ ତାଙ୍କ ପାଖରୁ ନହେବା କାମ ମଧ କରି ନେଇ ହେବ । କିନ୍ତୁ ଆମର ପ୍ରସଙ୍ଗ ତାହା ନୁହେଁ । ପ୍ରସଙ୍ଗ ହେଉଛି ବାପା ଅଶୋକ ଦାସଙ୍କର କେଉଁ ସଉକକୁ ପ୍ରଣବ ଗ୍ରହଣ କରିନେଇଛନ୍ତି । ଅନେକ ଭାବୁଥିଲେ ପ୍ରଣବ ଯେହେତୁ ନିରାମିଷାସି ତେଣୁ ବାପା ଅଶୋକଙ୍କର ଯେଉଁ ମାଛ ଧରିବା ସଉକ ଥିଲା ତାହାକୁ ସେ ପସନ୍ଦ କରି ନପାରନ୍ତି । ମାନେ ମାଛ ଧରିବା ଠାରୁ ସେ ଦୂରରେ ରହିଥିବେ । ତେବେ ପ୍ରକୃତ କ୍ଷେତ୍ରରେ ପ୍ରଣବ ମାଛ ଧରିବାକୁ ବେଶ୍ ଭଲ ପାଆନ୍ତି । ବାପା ଅଶୋକ ଯେପରି ପୋଖରୀରୁ ମାଛ ଧରିବାକୁ ଭଲ ପାଉଥିଲେ ସେହିପରି ପ୍ରଣବ ମଧ ମାଛ ଧରିବାକୁ ଭଲ ପାଆନ୍ତି ଆଉ ସେ ମାଛ ଧରନ୍ତି ମଧ । ଅନେକ ଭାବନ୍ତି ବୋଧହୁଏ ପ୍ରଣବ ଆମିଷ ଗ୍ରହଣ କଲେଣି । ନଚେତ୍ ମାଛ ଧରୁ ନଥା'ନ୍ତେ । ମାଛ ଧରୁଥିବା ବ୍ୟକ୍ତି ଆମିଷ ଭକ୍ଷଣ ନକରିବ ଏହା କେହି ଭାବିପାରିବେ ନାହିଁ । ଦେଖାଯାଉ ବାପା ଅଶୋକଙ୍କର ମାଛ ଧରା ସଉକକୁ ଆପଣାଇ ନେଇଥିବା ପ୍ରଣବ ବାପାଙ୍କର ଆଉ କେଉଁ ସଉକକୁ ଆପଣାଇ ନେଉଛନ୍ତି ।

# ଭୂତ କ୍ୱାର୍ଟର

**ର**ବି ମଲ୍ଲିକ ହେଉଛନ୍ତି କାକଟପୁର ବିଜେଡି ବିଧାୟକ । ଏମିତି କାକଟପୁରକୁ ହସ୍ତମୁଦି ମାହଲ କରିଥିଲେ ସୁରେନ୍ଦ୍ର ନାଥ ନାୟକ । ତେବେ ୨୦୦୯ ନିର୍ବାଚନରେ କାକଟପୁର ସଂରକ୍ଷିତ ହେବାପରେ ସୁରେନ୍ଦ୍ର ଆଉ ସେଠାରୁ ଲଢ଼ିପାରିଲେ ନାହିଁ । ଅବଶ୍ୟ ଉତ୍ତର-ଭୁବନେଶ୍ୱରରେ ଲଢ଼ିବା ପାଇଁ ସୁରେନ୍ଦ୍ରଙ୍କୁ ବିଜେଡିରୁ ଟିକେଟ ମିଳିଥିଲା । କିନ୍ତୁ ବିଜେଡି ହାଇକମାଣ୍ଡ ପରବର୍ତ୍ତୀ ସମୟରେ ତାଙ୍କ ଟିକେଟ କାଟିଦେଲେ । ନିର୍ବାଚନ ପରେ ବିଜେଡି ସରକାର ଗଢ଼ିଲା ଏବଂ ନବୀନ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଦାୟିତ୍ୱ ନେଲେ । ଏହାପରେ ସୁରେନ୍ଦ୍ରଙ୍କୁ ଯୋଜନା ବୋର୍ଡ଼ ଉପାଧକ୍ଷ ପଦବୀରେ ନିଯୁକ୍ତି ମିଳିଲା । ସୁରେନ୍ଦ୍ର ନାଲିବତୀ ଲାଗିଥିବା ଗାଡ଼ି ଚଢ଼ିଲେ । କିନ୍ତୁ ସୁରେନ୍ଦ୍ରଙ୍କର କାକଟପୁର ନିଶାକୁ ରବି ମଲ୍ଲିକ ଭଙ୍ଗ କଲେ । ବିଜେଡି ଉତ୍ସବ ହେଉ କି ବୈଠକ ହେଉ କେଉଁଥିରେ ହେଲେ ବି ସୁରେନ୍ଦ୍ରଙ୍କୁ ସାମିଲ କଲେନାହିଁ ରବି । ଉଭୟଙ୍କ ମଧରେ ଶତ୍ରୁତା ଅହି-ନକୁଳ ପରି ହୋଇଛି । ସୁରେନ୍ଦ୍ରଙ୍କ ଛାଇ ରବି ଦେଖିପାରୁନାହାନ୍ତି କି ରବିଙ୍କ ଛାଇ ସୁରେନ୍ଦ୍ର ଦେଖିଲେ ସହିପାରୁନାହାନ୍ତି । ଏଭଳି ପରିସ୍ଥିତିରେ କାକଟପୁର ବିଜେଡି ରାଜନୀତି ଚାଲିଛି ।

୧୯୭୧ ମସିହାରୁ ସୁରେନ୍ଦ୍ର ପ୍ରଥମେ ଉତ୍କଳ କଂଗ୍ରେସରୁ ପ୍ରାର୍ଥୀ ହୋଇ କାକଟପୁରର ବିଧାୟକ ହୋଇଥିଲେ । ଏହାପରେ ୧୯୭୭, ୧୯୮୫ ଉପନିର୍ବାଚନ, ୧୯୯୦, ୧୯୯୫ ଉପନିର୍ବାଚନ, ୨୦୦୦ ଓ ୨୦୦୪ରେ ସୁରେନ୍ଦ୍ର କାକଟପୁରରୁ ବିଧାୟକ ହୋଇଥିଲେ । ମାନେ ୭ ଥର ବିଧାୟକ । ଏହି ଦୃଷ୍ଟିରୁ କାକଟପୁର ପ୍ରତି ସୁରେନ୍ଦ୍ରଙ୍କର ଦୁର୍ବଳତା ରହିବା ସ୍ୱାଭାବିକ । କିନ୍ତୁ ରବିଙ୍କ ବାଣରେ ସୁରେନ୍ଦ୍ର ଏମିତି ଘାଇଲା ହୋଇଛନ୍ତି ଯେ ବିଜେଡି ଉତ୍ସବରେ ତାଙ୍କର ଯୋଗ ଦେବାର ଇଚ୍ଛା ଥିଲେ ମଧ୍ୟ ସେ ସେଠାକୁ ଯାଉନାହାନ୍ତି । ରବି ମଲ୍ଲିକଙ୍କୁ ମିଳିଛି ୪ ନମ୍ବରରେ ଥିବା ବିଧାୟକ କଲୋନୀରେ ଏକ କ୍ୱାର୍ଟର । କ'ଣ ହୋଇଛି କେଜାଣି ସେହି କ୍ୱାର୍ଟରରେ ଭୂତ ସବାର କରିଛି ବୋଲି ଚର୍ଚ୍ଚା ହେଉଛି । ଅବଶ୍ୟ ରବି ମଲ୍ଲିକ ଏହି ଚର୍ଚ୍ଚାକୁ ଗ୍ରହଣ କରୁଛନ୍ତି କି ନାହିଁ ତାହା ଜଣାପଡ଼ିନାହିଁ । କିନ୍ତୁ ସେହି କ୍ୱାର୍ଟରକୁ ସେ ବଦଳାଇବେ ବୋଲି କୁଆଡ଼େ ଇଚ୍ଛା ପ୍ରକାଶ କରିଥିବାରୁ ସେଠାରେ ଭୂତ ସବାର ହୋଇଥାଇପାରନ୍ତି ବୋଲି ଏବେ ଖୋଲାଖୋଲି ଚର୍ଚ୍ଚା ହେଲାଣି । ପୁଣି ଏହି ଚର୍ଚ୍ଚା ହାଟରେ ପଡ଼ି ଦାଣ୍ଡରେ ଗଡ଼ିଲାଣି । ଦେଖାଯାଉ ରବି ରହିଥିବା କ୍ୱାର୍ଟରରେ ଭୂତ ସବାର ପ୍ରକୃତରେ ହୋଇଛି କି ନାହିଁ । ଆଉ ଯଦି ଭୂତ ସବାର କରିଥାଏ ତା' ହେଲେ ସେହି କ୍ୱାର୍ଟରରୁ ଭୂତକୁ ତଡ଼ିବା ପାଇଁ କି ବ୍ୟବସ୍ଥା ଗ୍ରହଣ କରାଯାଉଛି ।

# ପାନ, ଗାଳି ଓ ଘଡ଼ାଇ

**ଆ**ମେ ଏବେ ଯିବା ଅର୍ଥ ମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇଙ୍କ ପାଖକୁ । ଏମିତି ଦରବାରରେ ବସିଥା'ନ୍ତୁ କି ସଚିବାଳୟରେ ଫାଇଲ କାମ କରୁଥା'ନ୍ତୁ ସତେ ଯେମିତି ପାନଟିଏ ପାଟିରେ ନଥିଲେ ତାଙ୍କ ପାଟି ଖଟା ହୋଇଯାଏ । ଆଉ ପାଟିରେ ପାନ ନଥିଲେ ସେ ଭଲରେ ଫାଇଲ କାମ କରିପାରନ୍ତି ନାହିଁ କି ଭଲରେ ଗପି ବି ପାରନ୍ତି ନାହିଁ । ଯଦି ସେହି ସମୟରେ ପ୍ରଫୁଲ୍ଲଙ୍କ ମନ ଜାଣି କେହି ପାନ ବଢ଼ାଇ ଦେଲେ ତ ତା' ହେଲେ ଭଲ କଥା । ନହେଲେ ପ୍ରଫୁଲ୍ଲ କାହା ପାଖରେ ପାନ ଅଛି ବୋଲି କହି ମାଗିବେ । ପ୍ରଫୁଲ୍ଲଙ୍କର ପାନ ପ୍ରତି ଦୁର୍ବଳତା ଦେଖି ତାଙ୍କ ପାଖକୁ ଯାଉଥିବା ଅନେକ ବ୍ୟକ୍ତି ପାନ ପ୍ୟାକେଟ୍ ତାଙ୍କୁ ନେଇ ଦିଅନ୍ତି । ଅବଶ୍ୟ ସବୁ ପାନକୁ ପ୍ରଫୁଲ୍ଲ ଗ୍ରହଣ କରନ୍ତି । ସତେ ଯେମିତି ଭାତ କି ଜଳଖିଆ ନଖାଇ ପ୍ରଫୁଲ ପାନ ଖାଇ ବଂଚନ୍ତି । ଗୋଟିଏ ସମୟରେ ପ୍ରଫୁଲ୍ଲଙ୍କୁ ପାନ ବାରଣ କରାଗଲା । ପାନର ବିକଳ୍ପ ମଧ୍ୟ ତାଙ୍କ୍ ଯୋଗାଇ ଦିଆଗଲା । ମାନେ ନିକୋଟିନ ଥିବା ଟାବଲେଟ୍‌ର ବ୍ୟବହାର ସେ କ'ଲେ । କିନ୍ତୁ ପାନରେ ଯେଉଁ ମଜା ଅଛି ସେ ମଜା ଟାବଲେଟ୍‌ରେ ନାହିଁ । ପାନ ସହିତ ଗୁଆ ଚୋବାଉଥିବ ପୁଣି ପାନରେ ଥିବା କଡ଼ା ମସଲାର ମଜା ପାଉଥିବ । ନହେଲେ

ଯୁଗେଯୁଗେ ପାନର ଆଦର ରହି ନଥା'ନ୍ତା । ଏହାକୁ ବେଶ୍ ଭଲ ଭାବେ ଜାଣିଯାଇଛନ୍ତି ପ୍ରଫୁଲ୍ଲ । କିଛିଦିନ ସେ ପାନ ବଦଳରେ ଟାବଲେଟ୍ ଚୁଚୁମିଲେ । କିନ୍ତୁ ପାନର ମଜା ନମିଳିବାରୁ ପ୍ରଫୁଲ୍ଲ ଆଉ ସେ ଟାବଲେଟ୍ ଖାଇଲେ ନାହିଁ । ପୁଣି ଫେରିଲେ ପାନ ପାଖକୁ । ଏମିତି ସେଦିନ କହୁକହୁ ପାନ ସମ୍ପର୍କରେ ପ୍ରଫୁଲ୍ଲ କହିଦେଲେ । ପାନ ଖାଇବାକୁ ଘରେ ତାଙ୍କୁ ବାରଣ କରାଯାଇଛି । ଘରେ ମାନେ କିଏ ବୋଲି ପ୍ରଶ୍ନ ହେବାରୁ ପ୍ରଫୁଲ୍ଲ କହିଲେ- ଆଉ କିଏ ହେବେ ତାଙ୍କ ପତ୍ନୀ ମହୋଦୟା । ଏମିତି ଯେ ପତ୍ନୀ ମହୋଦୟା ରାଗ ରଖି ତାଙ୍କୁ ପାନ ଖାଇବାକୁ ମନା କରିଛନ୍ତି ତାହା ନୁହେଁ । ପାନ ଅଧିକ ଖାଇବାରୁ ଗୋଟିଏ ସମୟରେ ସେ ଅସୁସ୍ଥ ହୋଇଯାଇଥିଲେ । ତାଙ୍କୁ ସୁସ୍ଥ ରଖିବା ପାଇଁ ପତ୍ନୀ ମହୋଦୟା ସବୁବେଳେ ଉଦ୍ୟମ କରୁଛନ୍ତି । କିନ୍ତୁ ପାନ ନିଶାରେ ଯିଏ ଥରେ ପଡ଼ିଥିବ ସେ ଯେ ଆଉ ପାନକୁ ଛାଡ଼ିପାରିବ ନାହିଁ ଏହା କେବଳ ପାନ ଖାଉଥିବା ବ୍ୟକ୍ତି ହିଁ ଜାଣନ୍ତି । ଯେଉଁଥିପାଇଁ ଯେତେ ବାରଣ କରାଗଲେ ମଧ୍ୟ ସେ ପାନକୁ ଛାଡ଼ି ପାରୁନାହାନ୍ତି । ଏଥିପାଇଁ ମଧ୍ୟ ଗାଳି ସହିବାକୁ ପଡୁଛି । ହଜାରେ ଗାଳି ଗୋଟିଏ ପାନ ଆଗରେ କିଛି ନୁହେଁ । ପାନ ଖଣ୍ଡିଏ ପାଟି ଭିତରକୁ ଚାଲିଗଲେ ଯେଉଁ ମଜା ଆସିଯାଏ ତାହା ଗାଳିକୁ ପାଣିଚିଆ କରିଦିଏ । ଅବଶ୍ୟ ପ୍ରଫୁଲ୍ଲଙ୍କ ମରମ କଥାକୁ ପାନ ଖାଉଥିବା ଅନ୍ୟ ବ୍ୟକ୍ତିମାନେ ବି ଗ୍ରହଣ କରିବେ ହିଁ କରିବେ । ଗୋଟିଏ ସମୟରେ ପ୍ରଫୁଲ ପାନ ନିଶାରେ ଉବୁଟୁବୁ ହେଉଥିଲେ । ଏବେ ପାନ ଖାଇବା ତାଙ୍କୁ ବାରଣ କରାଯାଇଛି । ଏହାସତ୍ତ୍ୱେ ବେଳେବେଳେ ପ୍ରଫୁଲ ଲୁଚେଇ ପାନ ଖାଉଛନ୍ତି । ପାନ ନିଶାର ଦମ୍ କେତେ ତାହା ପ୍ରଫୁଲଙ୍କୁ ଦେଖିଦେଲେ ସ୍ପଷ୍ଟ ହୋଇଯିବ ।

## ଫଳ ଆହାର

ଏମିତି ମୁନିଋଷିମାନେ ଫଳ ଆହାର କରି ଦୀର୍ଘାୟୁ ହେଉଥିଲେ । ସେମାନଙ୍କ ସ୍ୱାସ୍ଥ୍ୟ ଅତୁଟ ରହୁଥିଲା । ଏସମ୍ପର୍କରେ ବୋଧହୁଏ ବିଜେଡି ସାଧାରଣ ସଂପାଦକ ତଥା ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ ସଭାପତି ଯଜ୍ଞେଶ୍ୱରବାବୁ ବେଶ୍ ଗବେଷଣା କରିଛନ୍ତି । ଯଜ୍ଞେଶ୍ୱର ଜଣେ କାମିକା ନେତା । ତାଙ୍କୁ ଯେଉଁ ଦାୟିତ୍ୱ ମିଳେ ତାହାକୁ ସେ ସୁଚାରୁରୂପେ ତୁଲାଇବା ପାଇଁ ସବୁବେଳେ ଉଦ୍ୟମ କରିଥା'ନ୍ତି । ରାଜ୍ୟ ସମବାୟ ବ୍ୟାଙ୍କକୁ ସଫଳ ତଥା ଆଗଧାଡ଼ିର ବ୍ୟାଙ୍କ ଭାବେ ପ୍ରତିଷ୍ଠିତ କରିବା ପାଇଁ ଯଜ୍ଞେଶ୍ୱର କରିଚାଲିଛନ୍ତି ଉଦ୍ୟମ । ଅବଶ୍ୟ ପୂର୍ବର ରାଜ୍ୟ ସମବାୟ ବ୍ୟାଙ୍କ ଆଉ ବର୍ତ୍ତମାନର ରାଜ୍ୟ ସମବାୟ ବ୍ୟାଙ୍କକୁ ଦେଖିଦେଲେ ଏହା ବେଶ୍ ବାରି ହୋଇଯାଉଛି । ଓଡ଼ିଶା ରାଜ୍ୟ ସମବାୟ ବ୍ୟାଙ୍କ କାର୍ଯ୍ୟାଳୟରେ ଯଜ୍ଞେଶ୍ୱରବାବୁ ବହୁ ସମୟ ଉପସ୍ଥିତ ରହି ଫାଇଲ କାମ ବି କରନ୍ତି । ପୁଣି ତାଙ୍କ ଦ୍ୱାରା ପ୍ରତିଷ୍ଠିତ ବିନିକଲ ଯେପରି

ଲାଭଜନକ ସଂସ୍ଥାରେ ପରିଣତ ହେବ ସେ ଦିଗରେ ବି ସେ ଉଦ୍ୟମ କରନ୍ତି । ମାନେ ଦାୟିତ୍ୱ ପରେ ଦାୟିତ୍ୱ ତାଙ୍କ ଉପରେ ପଡ଼ିଛି । ତେବେ ଯଜ୍ଞେଶ୍ୱରବାବୁ ଫଳ ଆହାର ଉପରେ ବେଶ୍ ଗୁରୁତ୍ୱ ଦେଉଛନ୍ତି । ଅଫିସ କାମ ସାରି ସଂଧ୍ୟାବେଳେ ଯଜ୍ଞେଶ୍ୱର ତାଙ୍କ ୬ ନମ୍ବର ସରକାରୀ କ୍ୱାର୍ଟରକୁ ଚାଲିଗଲେ ଅନେକ ଭାବୁଥିବେ ଯେ ସେ ସେତେବେଳେ ଯେଉଁ ଜଳଖିଆ ଖାଆନ୍ତି ତାହା ଛଣାଛଣି ହୋଇଥାଇପାରେ ବୋଲି । କିନ୍ତୁ ସେହି ସମୟରେ ପହଂଚିଗଲେ ଜାଣିପାରିବେ ଯଜ୍ଞେଶ୍ୱର କିପରି ମୁନିଋଷିମାନଙ୍କର ପ୍ରିୟ ଫଳ ଆହାର କରନ୍ତି ବୋଲି । ଅବଶ୍ୟ ତାଙ୍କର ଫଳଆହାର ଋତୁକୁ ନେଇ । ଯେଉଁ ଋତୁରେ ଯେଉଁ ଫଳ ମିଳେ ତାହାକୁ ସେ ଖାଆନ୍ତି । ଏପରିକି ଶୀତଋତୁରେ ମୂଳାକୁ ମଧ୍ୟ ସେ ଫଳ ସହିତ ମିଶାଇ ଖାଆନ୍ତି । ସେଓ ହେଉ, ଅଙ୍ଗୁର ହେଉ, କଦଳୀ ହେଉ, ବେଦନା ହେଉ କି ନାଶପାତି ହେଉ ସବୁ ଫଳ ଖାଇବାକୁ ପସନ୍ଦ କରିଥା'ନ୍ତି ଯଜ୍ଞେଶ୍ୱରବାବୁ । ଯଜ୍ଞେଶ୍ୱରଙ୍କ ଚେହେରାଟି ମଧ୍ୟ ବେଶ୍ ଡଉଲଡାଉଲ । ବହୁ ପରିଶ୍ରମ କରୁଥିବା ବ୍ୟକ୍ତିଟିଏ କିପରି ତାହାର ଚେହେରାକୁ ସଜାଇ ରଖିଛି ତାହା ଭାବିଲା ବେଳକୁ ମଧ୍ୟ ଅନେକଙ୍କୁ ଆଶ୍ଚର୍ଯ୍ୟ ହେବାକୁ ପଡ଼ିବ । କିନ୍ତୁ ଯଜ୍ଞେଶ୍ୱର ଯେ ମୁନିଋଷିଙ୍କ ନୀତି ଧରିଛନ୍ତି ତାହା କେହି ଜାଣନ୍ତି ନାହିଁ । ଫଳ ଆହର କରି ମୁନିଋଷିଙ୍କ ପରି ଯଜ୍ଞେଶ୍ୱର ଶତାୟୁ ହେଉଛନ୍ତି କି ନାହିଁ ତାହା ସମୟ ହିଁ କହିବ । କିନ୍ତୁ ଫଳ ଆହାର କରି ଯଜ୍ଞେଶ୍ୱରଙ୍କ ଚେହେରାଟି ଡଉଲଡାଉଲ ହୋଇଯାଇଛି । ଏହାକୁ ସମସ୍ତେ ମାନିବେ ହିଁ ମାନିବେ । ଯଜ୍ଞେଶ୍ୱର ଯଦି ନିଜ ଚେହେରାକୁ ଦେଖାଇ ଫଳ ଆହାର କଲେ କିପରି ଚେହେରା ଡଉଲଡାଉଲ ରହେ ତାହା ସଭାସମିତିରେ ବଖାଣାନ୍ତେ ତେବେ ଫଳ ଆହାର କରିବା ପାଇଁ ଲୋକଙ୍କ ମଧ୍ୟରେ ଆଗ୍ରହ ସୃଷ୍ଟି ହୁଅନ୍ତା । ଦେଖାଯାଉ ଯଜ୍ଞେଶ୍ୱର ଫଳଆହାର ସମ୍ପର୍କରେ ପ୍ରଚାରକ ପାଲଟୁଛନ୍ତି ନା ନାହିଁ ।

# ଅରୁଣଙ୍କ ଗ୍ରିଟିଂସ୍

ଏମିତି ଗ୍ରିଟିଂସ୍‌କୁ ନେଇ ବିଭିନ୍ନ ସମୟରେ ଭିନ୍ନଭିନ୍ନ ନେତା ଚର୍ଚ୍ଚାରେ ରହନ୍ତି । ସରକାରୀ ଦଳ ଉପମୁଖ୍ୟ ସଚେତକ ଅରୁଣ ସାହୁଙ୍କର ଗ୍ରିଟିଂସ୍ ହିଁ ତାଙ୍କୁ ଚର୍ଚ୍ଚାକୁ ଆଣିଛି । ଅରୁଣଙ୍କର ଏହି ଗ୍ରିଟିଂସ୍‌ରେ ଯେଉଁ ଲେଖା ରହିଛି ତାହା ହିଁ ଚର୍ଚ୍ଚାର ଖୋରାକ ଯୋଗାଇ ଦେଇଛି । ଗ୍ରିଟିଂସ୍‌ର ଲେଖା ହୋଇଛି- ଡେଙ୍ଗା ଡେଙ୍ଗା ଶାଳଗଛ, ଘଂଚ ଜଙ୍ଗଲର ଝଙ୍କାଳିଆ ଗଛପତ୍ର ଉହାଡ଼ରୁ ହାଡ଼ଭଙ୍ଗା ଶୀତରେ କାଲୁଆ ମାରିଯାଉଥିବା ଦେହକୁ ପୂରା ଘୋଡ଼ାଇ ଦେଇ ନପାରି କୁକ୍କୁରି କାଙ୍କିରି ଜଙ୍ଘ ଦୁଇ ସନ୍ଧିରେ ହାତ ପୂରାଇ ସଂଜ ନଉଁ ନଉଁ ଖାଇପିଇ ଶୋଇଗଲାଣି - ସିଏ କ'ଣ ଜାଣିଛି - ଟିଭି ପରଦାରେ, ହୋଟେଲ୍, ବାର୍, କ୍ଲବ୍, ଭୋଜିଭାତ, ବାଣବାଜା, ନାଚଗୀତ, ଏସ୍‌ଏମ୍‌ଏସ୍‌ରେ କ'ଣ ରାତି ୧୨ଟାଟି ବଦଳିଗଲା ବୋଲି ! ଆଉ ନାଁ ଯା'ର ନୂଆବର୍ଷ । ଗତକାଲି ଆଉ ଆଜି ଭିତରେ କ'ଣ ଫରକ ଅଛି

ତା' ପାଇଁ ? ପେଟର ଦାଉ ସାଧିବାକୁ ତା' ପାଖରେ ସମୟ ଅଂଟୁନି । କିଛି ଫରକ ନାହିଁ- ଲୋଟାକଟା କରିହାରେ... ଦିନରେ ଅଂଧାରୁଆ ଘର ଭିତରେ ବା ବାହାର ଫର୍ଚା ଆଲୁଅରେ- । ଲଢ଼େଇ ଆଦିମ ଯୁଗରୁ- ବଂଚିବା ପାଇଁ ନାଟରେ- ମଉଜ ମସ୍ତି ପାଇଁ ନୁହେଁ । ବର୍ଷଯାକର ହିସାବ ନିକାଶର ହିସାବ ଫର୍ଦ ତା'ର ଲୋଡ଼ା ନାହିଁ କି ତାକୁ ଜଣାନାହିଁ । ସିଏ ବୁଝୁ ନବୁଝୁ, କେବେ ବୁଝିବେ ସେମାନେ, ଯିଏ ବୁଝିଛନ୍ତି ଉପରୋକ୍ତ ବିଷୟ ଆଉ ବିଷୟା ସାଥିରେ ଜଡ଼ିତ । ବର୍ଷ ପରେ ବର୍ଷ ଆସିବ ଯିବ, କିନ୍ତୁ ନୂଆ ସକାଳରେ ସିଏ ଆମ ଭିତରୁ ଜଣେ ହେଇ ଛିଡ଼ା ହୋଇପାରିବ ତ । ସେତେଦିନ ଯାଏ ଆମେ ସିଏ ହେଇଗଲେ କେମିତି ହୁଅନ୍ତା । ଏହି ଲେଖାଟି ଜଣେ ଦାର୍ଶନିକ ଲେଖିଲା ପରି ମନେ ହେବ ନିଶ୍ଚିତ । ମାନେ ଯେଉଁମାନଙ୍କ ପାଇଁ ନୂଆବର୍ଷ କିଛି ମାନେ ନଥାଏ । କେବଳ ବଂଚିବା ପାଇଁ ସେମାନେ ସଂଘର୍ଷ କରିଚାଲିଥା'ନ୍ତି । ଆଉ ଅରୁଣଙ୍କର ନିର୍ଯାସ ହେଉଛି ସେମାନଙ୍କ ପରି ଆମେ ହୋଇଗଲେ କେମିତି ହୁଅନ୍ତା । ଅରୁଣଙ୍କର ଦର୍ଶନଶାସ୍ତ୍ରରେ କି ପାଣ୍ଡିତ୍ୟ ଅଛି ତାହା ଜଣାନାହିଁ । କିନ୍ତୁ ଅରୁଣ ଯେପରି ତାଙ୍କର ଗ୍ରିଟିଂସ୍‌କାର୍ଡ଼ରେ ଦୁଇଧାଡ଼ି ଲେଖିଛନ୍ତି ତାହା ଜଣେ ଦାର୍ଶନିକ ହେଲେ ହିଁ ଲେଖିପାରିବେ । ଗୋଟିଏପଟେ ଦରିଦ୍ର ଅନ୍ୟପଟେ ବଂଚିବା ପାଇଁ ସଂଗ୍ରାମ । ଏହା ଆଗରେ ନୂଆବର୍ଷ ମୂଲ୍ୟହୀନ । ଏହାକୁ ନେତା ହୋଇ ଅରୁଣ ଯେପରି ବୁଝିପାରିଛନ୍ତି ସେଥିପାଇଁ ଧନ୍ୟବାଦ ତାଙ୍କ ଆଡ଼କୁ ଯିବ ହିଁ ଯିବ । ଅରୁଣଙ୍କ ଗାଁ ହେଉଛି ରାସଙ୍ଗ । ଏହା ପୁଣି ନୟାଗଡ଼ ଜିଲାର ଗଣିଆ ବ୍ଲକ ଅନ୍ତର୍ଗତ । ଗୋଟିଏ ସମୟରେ ଏହି ଗାଁ ଥିଲା ଅଗମ୍ୟ । ପିଲାଦିନେ ଅରୁଣ ଗାଁ ଚାରିପଟର ଦୃଶ୍ୟ ମଧ ଦେଖିଥିବେ । ଏହା ହୋଇଥିବ ତାଙ୍କର ଏହି ଗ୍ରିଟିଂସ୍‌କାର୍ଡ଼ର ଲେଖାପରି । ସତେ ଯେମିତି ମନେହୁଏ ଅରୁଣ ପିଲାଦିନରୁ ଦାରିଦ୍ର୍ୟକୁ ବେଶ୍ ବୁଝିପାରିଛନ୍ତି । ଯେଉଁଥିପାଇଁ ତାଙ୍କ ଗ୍ରିଟିଂସ୍‌କାର୍ଡ଼ରେ ଆପେଆପେ ଏହା ଚାଲିଆସିଛି । କିନ୍ତୁ ଦାରିଦ୍ର୍ୟକୁ ବୁଝିପାରୁଥିବା ନେତାଟିଏ ଦରିଦ୍ରଙ୍କ ପାଇଁ କେତେଦୂର ଅଂଟା ଭିଡୁଛନ୍ତି ତାହା ହିଁ ସବୁବେଳେ ପ୍ରଶ୍ନବାଚୀ ହୋଇରହିଯାଏ । ଦେଖାଯାଉ ଅରୁଣ ନୂଆବର୍ଷ ଗ୍ରିଟିଂସ୍ କାର୍ଡ଼ରେ ତାଙ୍କର ମନକଥା ଯେଉଁ ଲେଖିଛନ୍ତି ତାହାକୁ ନିଜେ ତ ବୁଝିଛନ୍ତି ତେବେ ଅନ୍ୟମାନଙ୍କୁ ବୁଝାଇ ପାରୁଛନ୍ତି ନା ନାହିଁ ।

# ଧଳା ପେଚା ଓ ଭାଗିରଥୀ

ସଚିବାଳୟରେ ଏକ ଧଳାରଙ୍ଗର ପେଚା ବସିଥିବାର ଦେଖିବାକୁ ମିଳିଲା । ଏହି ଖବରଟି ସାରା ସଚିବାଳୟରେ ପ୍ରଚାର ହୋଇଗଲା । ଧଳାରଙ୍ଗର ପେଚାକୁ ଦେଖିବାକୁ ସଚିବାଳୟର ବହୁ କର୍ମଚାରୀ ଜମା ହେଲେ । କିଏ କହିଲାଣି ନବୀନ ପଟ୍ଟନାୟକ ଓଡ଼ିଶା ପାଇଁ ଏଥର ଭଲ ଟଙ୍କା ଆଣିବେ ତ ଆଉ କିଏ କହିଲାଣି ଓଡ଼ିଶା ଆଉ ଦେଶର ସବୁଠାରୁ ଗରିବ ରାଜ୍ୟରେ ରହିବ ନାହିଁ । ସଚିବାଳୟରେ

ଧଳାବଗର ପେଟା ବସିବାରୁ ରାଜ୍ୟର ଭାଗ୍ୟ ବଦଳିଯିବ । ଏଭଳି ଆଲୋଚନା ହେବାର କାରଣ ହେଉଛି ମା' ଲକ୍ଷ୍ମୀଙ୍କର ବାହନ ହେଉଛି ପେଚା । ପୁଣି ଧଳାବଗର ପେଚା ଆହୁରି ମଙ୍ଗଳ । ସତେ ଯେମିତି ସଚିବାଳୟକୁ ମା' ଲକ୍ଷ୍ମୀ ପ୍ରବେଶ କରୁଛନ୍ତି ବୋଲି ଏହି ଧଳାବଗର ପେଚା ସଙ୍କେତ ଦେବାକୁ ଆସିଛି । କିଛି ସମୟ ପରେ ପେଚାଟି ସେଠାରୁ ଉଡ଼ିଗଲା । ଏହାର ଦିନକ ପରେ ଦେଖିବାକୁ ମିଳିଲା ସେହି ପେଚାକୁ ଉତ୍ତର-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନାଙ୍କ ଫଳାସପଲ୍ଲୀରେ ଥିବା ସି-୯୩ ବାସଭବନରେ । ଏହି ଧଳାବଗର ପେଚା ଭାଗିରଥୀଙ୍କ ଘରେ ବସୁଛି ବୋଲି ଜଣାପଡ଼ିବା ପରେ ତାକୁ ଦେଖିବାକୁ ମଧ୍ୟ ସେଠାକୁ ବହୁଲୋକଙ୍କର ସମାଗମ ହେଲା । ଏମିତି ଭାଗିରଥୀ ଏହି ଖବର ପାଇବା ପରେ ବେଶ୍ ଖୁସି ମଧ୍ୟ ହୋଇଗଲେ । ଲକ୍ଷ୍ମୀ ଆସିଯିବେ ବୋଲି ସେ ଭାବିନେଲେ । ରାଜନୀତି କରି ବିଧାୟକ ହେଲେ ଜନସାଧାରଣଙ୍କ ସେବା ପାଇଁ ବହୁ ଟଙ୍କା ବ୍ୟୟ କରିବାକୁ ହେଉଛି । ବେଳେବେଳେ ମଧ୍ୟ ଆର୍ଥିକ ସଙ୍କଟ ଦେଖାଯାଏ । ଲକ୍ଷ୍ମୀ ପାଖକୁ ଆସିଗଲେ ଆର୍ଥିକ ସଙ୍କଟ ଦେଖାଦେବ ନାହିଁ ବୋଲି ଭାଗିରଥୀ ଭାବିନେଲେ । ଆଉ ଧଳାବଗର ପେଚାଟି ଯେପରି ସବୁବେଳେ ତାଙ୍କ ଘର ଉପରେ ବସିବ ସେଥିପାଇଁ ମଧ୍ୟ ସେ ଉଦ୍ୟମ କଲେ । ପେଚାକୁ କ୍ଷୀର ପିଇବାକୁ ଭାଗିରଥୀ ନେଇ ଦେଲେ । କ'ଣ ହେଲା କେଜାଣି କ୍ଷୀରକୁ ଦେଖି ପେଚା ସେଠାରୁ ଉଡ଼ିଗଲା । ଅବଶ୍ୟ ଭାଗିରଥୀ ଖୁସି ଯେ ଲକ୍ଷ୍ମୀଙ୍କ ବାହନ ପେଚା ଆସି ତାଙ୍କ ଘର ଉପରେ ବସିଥିଲା । ଆଉ ଏଣିକି ସମାଜସେବା କରିବାକୁ ତାଙ୍କର ଅର୍ଥର ଅଭାବ ରହିବ ନାହିଁ । ଦେଖାଯାଉ ଭାଗିରଥୀଙ୍କର ଏହି ଭାବନାକୁ ଧଳାବଗର ପେଚା କେତେଦୂର ସଫଳ କରୁଛି ।

# ନାଚଗୀତ ଓ ଅରୁଣ

**ସା**ଧାରଣତଃ ନେତାମାନେ ନାଚିବା, ଗୀତ ଗାଇବା ଠାରୁ ଦୂରରେ ରହନ୍ତି । ସତେ ଯେମିତି ନେତା ଏକ ମଣିଷ ନୁହେଁ । ମାନେ ସେ ନାଚିଲେ ଭୁଲ୍, ଗୀତ ଗାଇଲେ ବି ଭୁଲ୍ । ଖାଲି ଭାଷଣ ଆଉ ଭାଷଣ ଦେବେ । ଏହାକୁ କିନ୍ତୁ ସରକାରୀ ଦଳ ଉପମୁଖ୍ୟ ସଚେତକ ଅରୁଣ ସାହୁ ମାନିବାକୁ ପ୍ରସ୍ତୁତ ନୁହନ୍ତି । ଏମିତି ଦିନେ କହୁକହୁ ସେ ତାଙ୍କ ଅନ୍ତରର କଥା କହିଦେଲେ । କୁଆଡ଼େ ତାଙ୍କ ନିର୍ବାଚନମଣ୍ଡଳୀ ନୟାଗଡ଼ରେ ଉତ୍ସବ ଚାଲିଥିବା ବେଳେ ସେ ସେଠାରେ ଧୁମ୍ ନାଚିଲେ । ଏହି ସମୟରେ ତାଙ୍କର କେତେକ ସମର୍ଥକ କହିଲେ ଯେ, ଯଦି ନାଚୁଛନ୍ତି ତେବେ ମୁହଁକୁ ଲୁଚାଇ ନାଚନ୍ତୁ । ଅରୁଣ ସେମାନଙ୍କ କଥାରେ ସହମତି ହେଲେନାହିଁ । କୁଆଡ଼େ ସେ କହିଲେ- ପ୍ରଥମେ ସେ ମଣିଷ ପରେ ସେ ନେତା । ମଣିଷର ସହଜାତ ପ୍ରବୃତି ତାଙ୍କ ପାଖରେ ରହିବ ହିଁ ରହିବ । ଲୁଚିଲୁଚି ନାଚିବାକୁ ସେ ଭଲ ପାଆନ୍ତି ନାହିଁ । ସମର୍ଥକମାନେ କହିଲେ- ଆଖିରେ ପାଖରେ ଇଲେକ୍ଟ୍ରୋନିକ୍ସ ମିଡ଼ିଆର କ୍ୟାମେରା ରହିଥିବ । ତେଣୁ ସେମାନେ ଫଟୋକୁ ଉଠାଇ ନେଇ ପ୍ରସାର କରିଦେବେ । ଅରୁଣ

କୁଆଡ଼େ କହିଲେ- ସେ ତାଙ୍କ ନିଜ ମାଟିରେ ନାଚୁଛନ୍ତି । କେଉଁ ହୋଟେଲ କିମ୍ବା କ୍ଲବ୍‌ରେ ନାଚୁନାହାନ୍ତି । ଆଉ ମୁହଁରେ ଲୁଗା ପକାଇ ନାଚିବାରେ କୌଣସି ଯଥାର୍ଥତା ନାହିଁ । ନାଚିବାର ଇଚ୍ଛା ଥିଲେ ଲାଜ କରିବାର ନଥାଏ । ଯଦି କୌଣସି ଇଲେକ୍‌ଟ୍ରୋନିକ୍ସ ମିଡ଼ିଆ ନାଚୁଥିବା ସମୟରେ ତାଙ୍କର ଫଟୋ ନେବ ତେବେ ତାଙ୍କର ସେଥିରେ କିଛି ଆପତି ରହିବ ନାହିଁ । ନିଜ ମାଟିରେ ନାଚୁଥିବା ବେଳେ ତାହାକୁ ଭିନ୍ନ ଅର୍ଥ କରି ପ୍ରସାର କରିବାର ଅଧିକାର ଇଲେକ୍‌ଟ୍ରୋନିକ୍ସ ମିଡ଼ିଆର ନାହିଁ ବୋଲି ଅରୁଣ ଦୃଢ଼ ଭାବେ କହିଥିଲେ । ଅରୁଣଙ୍କର ଏହି ଦୃଢ଼ତାକୁ ଦେଖି ବୋଧହୁଏ ସେ ଦିନ ଇଲେକ୍‌ଟ୍ରୋନିକ୍ସ ମିଡ଼ିଆ ସେ ନାଚୁଥିବା ଫଟୋ ଉତୋଳନ କଲେନାହିଁ । ଅବଶ୍ୟ ଅରୁଣ ବିଧାୟକ ଓ ସରକାରୀ ଦଳ ଉପମୁଖ୍ୟ ସଚେତକ ହୋଇ ନାଚିଲେ ତାହାକୁ ସାଧାରଣ ଲୋକ କେତେ ଗ୍ରହଣ କରିବେ ତାହା ପରର କଥା । କିନ୍ତୁ ଅରୁଣଙ୍କର ଯେଉଁ ଯୁକ୍ତି ଯେ ସେ ପ୍ରଥମେ ମଣିଷ ପରେ ନେତା ତାହାକୁ କିଏ କେମିତି ଗ୍ରହଣ କରୁଛନ୍ତି ତାହା ଦେଖିବାକୁ ବାକି ଅଛି ।

# ଇଲିସି ଓ ପାନ

**କ**ଥାରେ ଅଛି ଚାକିରି କରିବ ପୁଲିସି, ମାଛ ଖାଇବ ଇଲିସି । ମାନେ ଯେତେ ଚାକିରି ଅଛି ସବୁ ଦୃଷ୍ଟିରୁ ବେଶ୍ ଆଗରେ ପୁଲିସ ଚାକିରି । ଅବଶ୍ୟ ଏହା କେଉଁ ପୁରୁଣା କାଳର ପ୍ରବାଦ । ଏବେ ଚାକିରି ମଧ୍ୟରେ ପୁଲିସ ଶ୍ରେଷ୍ଠ କି ନାହିଁ ତାହା କହି ହେବନାହିଁ । କିନ୍ତୁ ମାଛ ଭିତରେ ଇଲିସି ଶ୍ରେଷ୍ଠ ହୋଇରହିଛି । ଏମିତି ଅନେକ ବ୍ୟକ୍ତି ଇଲିସି ମାଛ ପ୍ରେମରେ ପଡ଼ିଥା'ନ୍ତି । ଆମେ ଯିବା ଏବେ ଧାମନଗର ବିଧାୟକ ରାଜେନ୍ଦ୍ର ଦାସଙ୍କ ପାଖକୁ । ଏମିତି ରାଜେନ୍ଦ୍ର ପାନ ନିଶାରେ ବେଳେବେଳେ ଉବୁଟୁବୁ ହୁଅନ୍ତି । ତାଙ୍କ ପାଖରେ ସବୁବେଳେ ପାନ ଥାଏ ବୋଲି ଅନେକ ବିଧାୟକ ମଧ୍ୟ ଜାଣନ୍ତି । ତାଙ୍କର ମୈତ୍ର ହେଉଛନ୍ତି ଖୋର୍ଦ୍ଧା ବିଧାୟକ ରାଜେନ୍ଦ୍ର ସାହୁ । ହୋଇପାରେ ଦୁଇଜଣଙ୍କ ନାମ ରାଜେନ୍ଦ୍ର ହୋଇଥିବାରୁ ଆଉ ଦୁଇଜଣ ଯାକ ବିଧାୟକ ହୋଇଥିବାରୁ ମୈତ୍ର ହୋଇଛନ୍ତି । କହି ହେବନାହିଁ ଏହି ମୈତ୍ର ଚିରସ୍ଥାୟୀ କି ନୁହେଁ । ତେବେ ରାଜେନ୍ଦ୍ର ସାହୁ ମୈତ୍ର ଭାବେ ରାଜେନ୍ଦ୍ର ଦାସଙ୍କ ଠାରୁ ପାନ ମାଗି ନେଇ ଖାଉଥିବାରୁ ସେ ତାଙ୍କର ମୈତ୍ର ଦାୟିତ୍ୱ ଠିକ୍ ଭାବେ ତୁଲାଉଛନ୍ତି ବୋଲି କୁହାଯାଇପାରିବ । ସେହିପରି ରାଜେନ୍ଦ୍ର ଦାସ ମଧ୍ୟ ରାଜେନ୍ଦ୍ର ସାହୁଙ୍କୁ ପାନ ଦେଇ ତାଙ୍କର ମୈତ୍ର ଦାୟିତ୍ୱ ବି ଠିକ୍ ଭାବେ ତୁଲାଉଛନ୍ତି । କିନ୍ତୁ ଯେଉଁ ପ୍ରସଙ୍ଗକୁ ନେଇ ଆଲୋଚନା କରାଯାଉଛି ତାହା ମୈତ୍ର ପ୍ରସଙ୍ଗ ନୁହେଁ । ତାହା ହେଉଛି ଇଲିସି ପ୍ରସଙ୍ଗ । ମାନେ ରାଜେନ୍ଦ୍ର ଦାସ ଇଲିସିର ସ୍ୱାଦ ବେଶ୍ ଭଲ ଭାବେ ଜାଣିଯାଇଛନ୍ତି । ଆଉ ଇଲିସି ମାଛ ହେଲେ ଜାଣ ତାଙ୍କର ଭାତ ଉଠିଗଲା ବୋଲି । ଇଲିସି ବାସ୍ନା ଆସିଲେ ମଧ୍ୟ ରାଜେନ୍ଦ୍ର ଥୟଧରି

ରହିପାରନ୍ତି ନାହିଁ । ରାଜେନ୍ଦ୍ରଙ୍କର ଇଲିସି ପ୍ରୀତି ତାଙ୍କ ନିର୍ବାଚନମଣ୍ଡଳୀ ଧାମନଗରର ବାସିନ୍ଦାମାନେ ଜାଣିଗଲେଣି । ଯେତେବେଳେ ରାଜେନ୍ଦ୍ର ନିର୍ବାଚନମଣ୍ଡଳୀ ଗସ୍ତରେ ଯାଆନ୍ତି ସେତେବେଳେ ବିଭିନ୍ନ ଗ୍ରାମରେ ବାସିନ୍ଦାମାନେ ତାଙ୍କ ପାଇଁ ଇଲିସି ମାଛ ତରକାରୀ କରିଥା'ନ୍ତି । ଆଉ କେଉଁଠି ମଧ୍ୟ ଇଲିସି ମାଛ ଭଜା ହୋଇଥାଏ । ବେଶ୍ ଆନନ୍ଦରେ ଇଲିସି ମାଛ ସହିତ ଭୋଜନ କରନ୍ତି ରାଜେନ୍ଦ୍ର । ଏହା ନିରାଟ ସତ ଯେ, ଇଲିସି ମାଛ ନାଁ ଶୁଣିଲେ ରାଜେନ୍ଦ୍ର ଯେତେ ରାଗିଥିଲେ ମଧ୍ୟ ତାଙ୍କ ପାଟିରୁ ହସ ଟିକିଏ ବାହାରି ଯିବ ହିଁ ଯିବ । ଦେଖାଯାଉ ରାଜେନ୍ଦ୍ରଙ୍କୁ ଇଲିସି ମାଛ ନିଶା କେତେଦିନ ଘାରୁଛି ।

# ଆଗ ଠାକୁର ତା'ପରେ ଅନ୍ୟ କାମ

**ଅ**ନେକ ନେତା ଅଛନ୍ତି ଠାକୁର ଭକ୍ତ ହେଲେ ମଧ୍ୟ ଠାକୁର ପୂଜା କରିପାରନ୍ତି ନାହିଁ । ସେମାନଙ୍କ ପାଇଁ ଅନ୍ୟମାନେ ଠାକୁର ପୂଜା କରନ୍ତି । ଅବଶ୍ୟ ଏହା ସତ ଯେ, ନେତା ହେଲେ ତାଙ୍କୁ ସବୁବେଳେ ସମୟ ନିଅଂଟ । ଖାଉଥିବା ବେଳେ ଲୋକ ଆସନ୍ତି ତ ଶୋଇଥିବା ବେଳେ ମଧ୍ୟ ଲୋକ ଆସନ୍ତି । ପୁଣି ଠାକୁର ପୂଜା କଲାବେଳେ ଲୋକ ଯାଇ ପୂଜା ପାଖରେ ପହଂଚି ଯାଆନ୍ତି । ଲୋକପ୍ରତିନିଧି ହୋଇଥିବାରୁ ନେତା ଲୋକଙ୍କ ଉପରେ ରାଗି ପାରନ୍ତି ନାହିଁ । ଅବଶ୍ୟ ନେତାଙ୍କ ପାଖକୁ ଯେତେ ଅଧିକ ଲୋକ ଆସିବେ ତାଙ୍କ ପାଇଁ ସେତେ ଭଲ । ମାନେ ତାଙ୍କ ଉପରେ ଲୋକଙ୍କର ଆସ୍ଥା ରହିଛି ବୋଲି ଜଣାପଡ଼ିବ । କିନ୍ତୁ ଏଠାରେ ଯେଉଁ ନେତାଙ୍କ କଥା ଆମେ ବର୍ଣ୍ଣନା କରୁଛୁ ସେ କିନ୍ତୁ ଏସବୁଥିରୁ ବ୍ୟତିକ୍ରମ । ଏମିତି ତାଙ୍କର ବାପା ମା' ମଧ୍ୟ ବିଧାୟକ ଥିଲେ । ସେ ଏବେ ବିଧାୟକ ଆଉ ମନ୍ତ୍ରୀ । ଆମକୁ ଏ ସମ୍ପର୍କରେ ବଖାଣିବାକୁ ହେଲେ ପ୍ରଥମେ ତାଙ୍କର ପରିଚୟ ଦେବାକୁ ହେବ । ସେ ହେଲେ ହିନ୍ଦୋଳ ବିଧାୟିକା ଅଂଜଳି ବେହେରା । ତାଙ୍କ ବାପା ଓ ମା' ଉଭୟେ ବିଧାୟକ ଥିଲେ । ମାନେ ରାଜନୀତି ପରିବାରରେ ଅଂଜଳିଙ୍କର ଜନ୍ମ । ପିଲାଦିନୁ ରାଜନୀତିକୁ ଅତି ପାଖରୁ ଅଂଜଳି ଦେଖିଆସିଛନ୍ତି । ତେବେ ବାପା ଆଉ ମା' ଠାକୁର ପୂଜାରେ ନିଜକୁ ସମର୍ପି ଦେଉଥିଲେ କି ନାହିଁ ତାହା ଜଣାନାହିଁ । କିନ୍ତୁ ଅଂଜଳି ଯେ ଠାକୁରଙ୍କ ପାଖରେ ନିଜକୁ ସମର୍ପି ଦିଅନ୍ତି ତାହା ତାଙ୍କ ଘରକୁ ଗଲେ ଜାଣିହେବ । ଠାକୁର ପୂଜା ସମୟରେ ଅଂଜଳିଙ୍କୁ କେହି ଡିଷ୍ଟର୍ବ କରିବେ ନାହିଁ । ନିର୍ବାଚନମଣ୍ଡଳୀର ଲୋକ ହୁଅନ୍ତୁ କି ଅଫିସର କିମ୍ବା କର୍ମଚାରୀ ହୁଅନ୍ତୁ ଅଂଜଳି ଠାକୁର ପୂଜା କରୁଥିବା ସମୟରେ ସେମାନଙ୍କୁ ଅପେକ୍ଷା କରିବାକୁ ପଡ଼ିବ । ଖବର ମଧ୍ୟ ଅଂଜଳିଙ୍କ ପାଖକୁ ଯିବନାହିଁ । ଅଳ୍ପ ସମୟ ଯେ ଅଂଜଳି ଠାକୁର ପୂଜା କରନ୍ତି ତାହା ବି ନୁହେଁ । ଏମିତି ଘଂଟାଏରେ ମଧ୍ୟ ତାଙ୍କର ଠାକୁର ପୂଜା ସରେନାହିଁ । ଅନ୍ୟୁନ ଦେଢ଼ଘଂଟା

ଆଉ ଅଧିକ ହେଲେ ଦୁଇଘଂଟା । ଏହି ସମୟ ମଧ୍ୟରେ ଅଂଜଳି ଭୁଲି ଯାଆନ୍ତି ରାଜନୀତିକୁ । ଠାକୁର ହିଁ ସବୁକିଛି । ସେ ଚାହିଁଲେ ରାଜନୀତି, ସେ ନଚାହିଁଲେ ରାଜନୀତି ହେବନାହିଁ । ତେଣୁ ଠାକୁର ପୂଜାକୁ ବେଶ୍ ଗୁରୁତ୍ୱ ଦେଉଛନ୍ତି ଅଂଜଳି । ଯେଉଁଥିପାଇଁ ଜଣେ ସଫଳ ମନ୍ତ୍ରୀ ଭାବେ ସେ ମଧ୍ୟ ସୁନାମ ଅର୍ଜନ କଲେଣି । କେବେବି ଭାବି ନଥିଲେ ମନ୍ତ୍ରୀ ହେବେ ବୋଲି ଅଂଜଳି । ପୁଣି ରାଷ୍ଟ୍ରମନ୍ତ୍ରୀରୁ କ୍ୟାବିନେଟ୍ । ଏସବୁ ଠାକୁର ପୂଜାର ଫଳ ବୋଲି ଅଂଜଳିଙ୍କ ସମର୍ଥକମାନେ କହନ୍ତି । ଏମିତି ତ ଅଂଜଳି ପିଆଜ, ରସୁଣ ଖାଆନ୍ତି ନାହିଁ । ଠାକୁର ପୂଜା ହେଉଛି ତାଙ୍କର ସର୍ବସ୍ୱ । ନିଷ୍ଠାର ସହିତ ସେ ଠାକୁର ପୂଜା କରନ୍ତି । ଦେଖାଯାଉ ଠାକୁର ପୂଜା କରି ଅଂଜଳି ରାଜନୀତିରେ କେତେ ଆଗକୁ ଯାଉଛନ୍ତି ।

# ପ୍ରତାପଙ୍କ ବଗିଚା

**ଗ**ଣଶିକ୍ଷା ମନ୍ତ୍ରୀ ହେଉଛନ୍ତି ପ୍ରତାପ ଜେନା । ଏମିତି ମନ୍ତ୍ରୀ ଭାବେ ସେ ସାରାରାଜ୍ୟ ବୁଲିବାରେ ଲାଗିଛନ୍ତି । ବିଭିନ୍ନ ସ୍କୁଲକୁ ଯାଉଛନ୍ତି । ତେବେ ପ୍ରତାପ ଜେନାଙ୍କ ଭୁବନେଶ୍ୱର ସରକାରୀ କ୍ୱାର୍ଟରକୁ କେହି ଚାଲିଗଲେ ସେଠାରେ ପ୍ରତାପଙ୍କର ଆଉ ଏକ ରୂପ ରହିଛି ବୋଲି ଜାଣିହେବ । ତାହା ହେଲା ପ୍ରତାପ ଜଣେ ସଫଳ ଚାଷୀ । କ୍ୱାର୍ଟରରେ ଥିବା ଖାଲି ଜାଗାରେ ପ୍ରତାପ ପରିବା ଚାଷ କରିଛନ୍ତି । ବାଇଗଣ, ଫୁଲକୋବି, ବନ୍ଧାକୋବି, ଉଲକୋବି, କଲରା, କାକୁଡ଼ି, କଖାରୁ, ବିନ୍, ଭେଣ୍ଡି, ଆଳୁ, ପିଆଜ, ରସୁଣ, ଅମୃତଭଣ୍ଡା, ଗାଜର, ବିଟ୍, ମଟର, ଝୁଡୁଙ୍ଗ, ଟମାଟ ପ୍ରଭୃତି ସେଠାରେ ଚାଷ ହୋଇଛି । ମାନେ ହ୍ୱାଟ୍ ନଟ୍ । ସେହି ଚାଷକୁ ଦେଖିଦେଲେ ଯେକୌଣସି ବ୍ୟକ୍ତିଙ୍କର ଆଖି ଲାଖି ରହିଯିବ ହିଁ ଯିବ । ସତେ ଯେମିତି ପ୍ରତାପ ମନ୍ତ୍ରୀ ନୁହନ୍ତି ଜଣେ ସଫଳ ଚାଷୀ । ସବୁଜ ପରିବାରେ ଭରପୂର ହୋଇଛି ତାଙ୍କ ବଗିଚା । ଏହି ବଗିଚାକୁ ରୋଷେଇ ବଗିଚା ବୋଲି କେତେକ କହୁଛନ୍ତି । କିନ୍ତୁ ପ୍ରତାପଙ୍କର ସେହି ବଗିଚାଟି ରୋଷେଇ ବଗିଚା ନୁହେଁ । ଏତେ ପରିବା ହେଉଛି ଯେ ତାହାକୁ ପ୍ରତାପ ତ ନିଜ ଘର ପାଇଁ ରୋଷେଇରେ ବ୍ୟବହାର କରୁଛନ୍ତି ପୁଣି ଚିହ୍ନା ପରିଚୟ ଲୋକଙ୍କୁ ମଧ୍ୟ ବାଂଟୁଛନ୍ତି । ତେବେ ଏହି ବଗିଚା ପଛରେ ଯାହାର ଅବଦାନ ଅଧିକ ସେ ହେଲେ ପ୍ରତାପଙ୍କ ପତ୍ନୀ ତେଜି ଜେନା । କଥାରେ ଅଛି ଗୋଟିଏ ହାତରେ ତାଳି ବାଜେନାହିଁ । ଦୁଇ ହାତର ତାଳିଟି ବେଶ୍ ଶବ୍ଦ କରେ । ତେଣୁ ପ୍ରତାପ ଆଉ ତାଙ୍କ ପତ୍ନୀ ତେଜି ଦୁହିଁଙ୍କ ହେପାଜତ୍‌ରେ ବଗିଚାଟି ବେଶ୍ ଆଖିଦୃଶିଆ ହୋଇଛି । ଦେଖାଯାଉ ପ୍ରତାପଙ୍କର ବଗିଚା ନିଶା କେତେଦିନ ରହୁଛି ।

# ସାଂଧ ଭ୍ରମଣ

**ଶା**ସ୍ତ୍ରରେ ଅଛି ପ୍ରାତଃ ଭ୍ରମଣ ସ୍ୱାସ୍ଥ୍ୟପକ୍ଷେ ହିତକାରକ । କିନ୍ତୁ ବ୍ୟସ୍ତବହୁଳ ଜୀବନରେ ଯେଉଁମାନେ ବିଳମ୍ବିତ ରାତ୍ରିରେ ନିଦ୍ରା ଯାଆନ୍ତି ସେମାନଙ୍କର ନିଦ ବିଳମ୍ବରେ ଭାଙ୍ଗିଥାଏ । ତେଣୁ ପ୍ରାତଃ ଭ୍ରମଣ ସେମାନଙ୍କ ପାଇଁ ସମ୍ଭବ ହୋଇ ନଥାଏ । ଏଠାରେ ଦୁଇଜଣ ନେତାଙ୍କ ସମ୍ପର୍କରେ ଉଲ୍ଲେଖ କରାଯାଉଛି । ଜଣେ ହେଲେ ଖୋର୍ଦ୍ଧା ବିଧାୟକ ରାଜେନ୍ଦ୍ର ସାହୁ ଏବଂ ଅନ୍ୟ ଜଣେ ହେଲେ ବେଗୁନିଆ ବିଧାୟକ ପ୍ରଶାନ୍ତ ନନ୍ଦ । ରାଜେନ୍ଦ୍ର ସ୍ୱାଧୀନ ଭାବେ ନିର୍ବାଚିତ ହୋଇଥିଲେ ମଧ୍ୟ ସେ ହେଉଛନ୍ତି ଖାଂଟି ବିଜେଡି । ସେହିପରି ପ୍ରଶାନ୍ତ ଏନ୍‌ସିପିରୁ ନିର୍ବାଚିତ ହୋଇଥିଲେ ମଧ୍ୟ ବିଜେଡି ପ୍ରତି ତାଙ୍କର ଅଧିକ ଦୁର୍ବଳତା ରହିଛି । ଏମିତି ଏହି ଦୁଇ ବିଧାୟକଙ୍କୁ ଦେଖିବାକୁ ମିଳିଲା ଖୋର୍ଦ୍ଧା ନିର୍ବାଚନମଣ୍ଡଳୀରେ ଥିବା ମା' ଉଗ୍ରତାରାଙ୍କ ମନ୍ଦିରକୁ ଯାଇଥିବା ରାସ୍ତାରେ । ସେତେବେଳକୁ ସଂଧ୍ୟା ଆସନ୍ନ । ସେହି ରାସ୍ତାରେ ମଧ୍ୟ ଲୋକଙ୍କର ଚଳପ୍ରଚଳ ନଥାଏ । ଏହି ଦୁଇ ବିଧାୟକ ସେହି ରାସ୍ତାରେ ଚାଲିଚାଲି ଯାଉଥିବାର ଦେଖିବାକୁ ମିଳିଲା । ସତେ ଯେମିତି ଦୁଇ ବିଧାୟକ କେଉଁ ଉତ୍ସବକୁ ଯାଇଥିଲେ ଏବଂ ଆସିବା ବାଟରେ ସେମାନଙ୍କର ଗାଡ଼ି ଖରାପ ହୋଇଯାଇଥିଲା । ଆଉ ସେମାନେ ଚାଲିଚାଲି ୫ ନମ୍ବର ଜାତୀୟ ରାଜପଥକୁ ଆସି ସେଠାରୁ କେଉଁ ଯାନବାହନର ସାହାଯ୍ୟ ନେଇ ଖୋର୍ଦ୍ଧାକୁ ଯିବେ ବୋଲି ଏକ ଧାରଣା ସୃଷ୍ଟି ହେବା ସ୍ୱାଭାବିକ । କିନ୍ତୁ ପ୍ରକୃତ କ୍ଷେତ୍ରରେ ସେମାନଙ୍କର ଉଦ୍ଦେଶ୍ୟ ତାହା ନଥିଲା । ନିରୋଳା ରାସ୍ତାରେ କିଛି କିଲୋମିଟର ଚାଲିଲେ ନିର୍ମଳ ବାୟୁ ମିଳିବ । ଯାହା ସ୍ୱାସ୍ଥ୍ୟପକ୍ଷେ ହିତକାରକ । ଏମିତି ତ ରାଜେନ୍ଦ୍ର ହୁଅନ୍ତୁ କି ପ୍ରଶାନ୍ତ ହୁଅନ୍ତୁ ଉଭୟେ ସ୍ୱାସ୍ଥ୍ୟ ପ୍ରତି ବେଶ୍ ସଚେତନ । ଅବଶ୍ୟ ପ୍ରଶାନ୍ତ ହେଉଛନ୍ତି ସିନେତାରକା । ତେଣୁ ସ୍ୱାସ୍ଥ୍ୟ ପ୍ରତି ସେ ପିଲାଦିନୁ ବେଶ୍ ସଚେତନ ରହିଆସିଛନ୍ତି । ରାଜେନ୍ଦ୍ରଙ୍କ ଚେହେରାଟି ମଧ୍ୟ ବେଶ୍ ଡଉଲଡାଉଲ । ଏହି ଡଉଲଡାଉଲ ଚେହେରାକୁ ଅତୁଟ ରଖିବାକୁ ହେଲେ ନିର୍ମଳ ବାୟୁ ସେବନ କରିବାର ଆବଶ୍ୟକତା ରହିଛି । ଏହି ଗୁପ୍ତ ରହସ୍ୟକୁ ଉଭୟେ ରାଜେନ୍ଦ୍ର ଓ ପ୍ରଶାନ୍ତ ବେଶ୍ ଭଲ ଭାବେ ଜାଣିନେଇଛନ୍ତି । ଯେଉଁଥିପାଇଁ ନିରୋଳା ରାସ୍ତା ଦେଖି ସେଦିନ ପ୍ରାୟ ୫ କିଲୋମିଟର ରାସ୍ତା ଚାଲିଥିଲେ ଉଭୟେ ରାଜେନ୍ଦ୍ର ଓ ପ୍ରଶାନ୍ତ । ଅବଶ୍ୟ କେହିଜଣେ ସେମାନଙ୍କୁ ଚାଲିବାର ଦେଖି ସନ୍ଦେହ କରିଥିଲେ ଏବଂ ସେହି ଘଟଣା ସମ୍ପର୍କରେ ଅନ୍ୟମାନଙ୍କୁ କହିଲେ । ଏହାପରେ ବିଧାୟକଙ୍କର କ'ଣ ଅସୁବିଧା ହୋଇଛି ବୋଲି ଭାବିନେଲେ ନିକଟ ଗ୍ରାମର ବାସିନ୍ଦାମାନେ । ସୁଅ ଛୁଟିଲା ଏହି ଦୁଇ ବିଧାୟକଙ୍କ ଚାଲିବା ସ୍ଥଳୀକୁ । କିନ୍ତୁ ସେତେବେଳକୁ ସେମାନେ ତାଙ୍କର ସାଂଧ ଭ୍ରମଣ ଶେଷ କରି ଗାଡ଼ିରେ ବସି ଚାଲିଯାଇଥିଲେ । ମାନିବାକୁ ପଡ଼ିବ ରାଜେନ୍ଦ୍ର ଓ ପ୍ରଶାନ୍ତଙ୍କୁ । ରାଜନୀତି ହେଉଛି ଏକ ବ୍ୟସ୍ତବହୁଳ ଜୀବନ । ଏହାରି ମଧ୍ୟରେ ମଧ୍ୟ ସେମାନେ ସ୍ୱାସ୍ଥ୍ୟକୁ ଅତୁଟ ରଖିବା

ପାଇଁ ସାଂଧ ଭ୍ରମଣ ନିମନ୍ତେ ସମୟ ବି ବାହାର କରିନେଉଛନ୍ତି । ସେ ପ୍ରାତଃ ଭ୍ରମଣ ହେଉ କି ସାଂଧ ଭ୍ରମଣ ହେଉ ଉଭୟ ସ୍ୱାସ୍ଥ୍ୟ ପାଇଁ ହିତକାରକ । ଆଉ ଏହାକୁ ଭଲ ଭାବେ ବୁଝିଛନ୍ତି ପ୍ରଶାନ୍ତ ଓ ରାଜେନ୍ଦ୍ର ।

# ଚକୋଲେଟ୍ ଓ ନବୀନ

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କର ଚକୋଲେଟ୍ ପ୍ରତି ଦୁର୍ବଳତା ରହିଛି ବୋଲି ବଡ଼ବଡ଼ ସଭାରୁ ଜଣାପଡ଼ିଯାଏ । ସେଠାରେ ନବୀନ ମୁଖ୍ୟ ଅତିଥି ଥିବାବେଳେ ସେ ବସିଥିବା ସ୍ଥାନରେ ଟେବୁଲ ଉପରେ ସଭାର ଆୟୋଜକ କିଛି ଚକୋଲେଟ୍ ରଖିଦେଇଥା'ନ୍ତି । ଦେଖାଯାଏ ନବୀନ ସେହି ଚକୋଲେଟ୍‌କୁ ଶେଷ କରିବା ପାଇଁ ଲାଗିଯାଆନ୍ତି । ଗୋଟିଏ ପରେ ଗୋଟିଏ ଚକୋଲେଟ୍ ସେ ଖାଇଚାଲନ୍ତି । ଅବଶ୍ୟ ନବୀନଙ୍କର ନିର୍ବାଚନମଣ୍ଡଳୀ ହିଂଜିଳି ବାସିନ୍ଦା ତାଙ୍କର ଏହି ଚକୋଲେଟ୍ ପ୍ରୀତି ସମ୍ପର୍କରେ ବିଶେଷ କିଛି ଜାଣନ୍ତି ନାହିଁ । ନବୀନ ହିଂଜିଳି ଗସ୍ତରେ ଯାଇଥିଲେ । ବିଜେଡି କାର୍ଯ୍ୟାଳୟ ସମ୍ମୁଖରେ ବିଜେଡି କର୍ମୀମାନେ ନବୀନଙ୍କୁ ସ୍ୱାଗତ କରିବା ପାଇଁ ଅପେକ୍ଷା କରିଥିଲେ । ନବୀନ ସେଠାରେ ପହଂଚିବା ବେଳକୁ ଏକ ବଡ଼ ଫୁଲମାଳ ତାଙ୍କୁ ପିନ୍ଧାଇ ଦିଆଯାଇଥିଲା । ଆଉ ହାତରେ ଧରାଇ ଦିଆଗଲା କାଡ୍‌ବୋରିଜ୍ ଚକୋଲେଟ୍‌ର ଏକ ବଡ଼ ପ୍ୟାକେଟ୍ । ଏହାକୁ ପ୍ଲାଷ୍ଟିକରେ ପ୍ୟାକିଂ କରାଯାଇଥିଲା । ପ୍ୟାକେଟ୍ ଉପରେ ଶଙ୍ଖ ଚିହ୍ନ ଥିଲା । ନୂଆବର୍ଷର ଉପହାର ବୋଲି ମଧ ତାହାକୁ କୁହାଗଲା । ନବୀନଙ୍କର ସେହି ପ୍ୟାକେଟ୍ ଉପରେ ହଠାତ୍ ଆଖି ପଡ଼ିଲା । ସେ ତାଙ୍କର ସିକ୍ୟୁରିଟି ହାତକୁ ଏହି ପ୍ୟାକେଟ୍‌ଟି ବଢ଼ାଇ ଦେଲେ । ନବୀନ ହିଂଜିଳିରୁ ଫେରିଲେ ବ୍ରହ୍ମପୁରକୁ । ସେଠାରେ ଥିବା ସ୍ପେଶାଲ ସର୍କିଟ ହାଉସ୍‌ରେ ସେ ମଧ୍ୟାହ୍ନ ଭୋଜନ କଲେ । ଖାଇବା ପରେ ସେ ଖୋଜିଲେ ଚକୋଲେଟ୍ ପ୍ୟାକେଟ୍‌ଟିକୁ । ସଙ୍ଗେସଙ୍ଗେ ଚକୋଲେଟ୍ ପ୍ୟାକେଟ୍‌ଟି ତାଙ୍କ ହାତକୁ ବଢ଼ାଇ ଦିଆଗଲା । ନବୀନ ପ୍ୟାକେଟ୍‌କୁ ଚିରିଲେ ଆଉ ସେଥିରୁ ଗୋଟିଏ ପରେ ଗୋଟିଏ କାଡ୍‌ବୋରିଜ୍ ଚକୋଲେଟ୍ ବାହାର କରି ଖାଇଲେ । ଚକୋଲେଟ୍ ପ୍ରତି ନବୀନଙ୍କର ଯେଉଁ ଦୁର୍ବଳତା ଅଛି ତାହା ବହୁ ବିଳମ୍ବରେ ଜାଣିପାରିଲେ ହିଂଜିଳିବାସୀ । ଦେଖାଯାଉ ପରବର୍ତ୍ତୀ ସମୟରେ ନବୀନଙ୍କୁ ହିଂଜିଳିବାସୀ ଚକୋଲେଟ୍ ଉପହାର ଦେଉଛନ୍ତି କି ନାହିଁ ।

# ସିପ୍ରାଙ୍କ ମାଛ ପ୍ରୀତି

**ସି**ପ୍ରା ମଲିକ ହେଉଛନ୍ତି କେନ୍ଦ୍ରାପଡ଼ା ବିଜେଡି ବିଧାୟିକା । ବହୁଦିନରୁ ତାଙ୍କର ସ୍ୱପ୍ନ ଥିଲା ବିଧାୟିକା ହେବେ ବୋଲି । ଏହାର କାରଣ ମଧ ରହିଛି । ସିପ୍ରାଙ୍କ ବାପା ହେଉଛନ୍ତି ପ୍ରହ୍ଲାଦ

ମଲିକ । ଗୋଟିଏ ସମୟରେ ସେ କେନ୍ଦ୍ରାପଡ଼ା ଅଂଚଳରେ ବେଶ୍ ଲୋକପ୍ରିୟ ନେତା ଥିଲେ । ସେ ମଧ୍ୟ ବିଭିନ୍ନ ସମୟରେ ମନ୍ତ୍ରୀ ବି ଥିଲେ । ରାଜନୈତିକ ପରିବାରରୁ ଆସିଥିବା ସିପ୍ରା ରାଜନୀତିକୁ ଅତି ନିକଟରୁ ଦେଖିଥିଲେ ମଧ୍ୟ ବିଧାୟକ ହେବାର ସୁଯୋଗ ପାଇ ନଥିଲେ । ୨୦୦୯ ନିର୍ବାଚନରେ କେନ୍ଦ୍ରାପଡ଼ାରୁ ବିଜେଡି ତାଙ୍କୁ ପ୍ରାର୍ଥୀ କଲା ଆଉ ସେ ବିଜୟୀ ହେଲେ । ପୂର୍ବରୁ ସିପ୍ରା ଅଧ୍ୟାପିକା ଥିଲେ । ଏମିତି ପାଠ ପଢ଼ାଇବା ସହିତ ସେ ଓତଃପ୍ରୋତଃ ଭାବେ ଜଡ଼ିତ ଥିଲେ । ଖାଇବାରେ ତାଙ୍କର କ'ଣ ଦୁର୍ବଳତା ଥିଲା ତାହା ବାହାରକୁ ଫିଟୁ ନଥିଲା । କିନ୍ତୁ ବିଧାୟିକା ହୋଇଯିବା ପରେ ଏହା ଏବେ ବାହାରକୁ ଫିଟିଗଲାଣି । ସାଧାରେ ପନିର ମସଲା ଆଉ ଚିଲି ପନିରକୁ ଦେଖିଦେଲେ ଜାଣ ସିପ୍ରାଙ୍କ ପାଟିରୁ ଲାଳ ବାହାରିବ । ସେମିତି ଭଜା ମାଛ ଖାଇବାରେ ସେ ଓସ୍ତାଦ । ଗୋଟିଏ ପରେ ଗୋଟିଏ ଭଜା ମାଛ ସେ ଖାଇଚାଲନ୍ତି । ଆଉ କେତେ ଖାଆନ୍ତି ତାହାର ହିସାବ ରଖିପାରନ୍ତି ନାହିଁ । ଅବଶ୍ୟ ନେତା ହେଲେ ସବୁବେଳେ ଯେ ତାଙ୍କର ଖାଇବା ସଉକକୁ ବଜାୟ ରଖିପାରିବେ ତାହା ଭାବିବା ଭୁଲ୍ । କିନ୍ତୁ ସମୟ ମିଳିଲେ ସିପ୍ରା ପନିର ମସଲା, ଚିଲି ପନିର ଓ ଭଜା ମାଛ ଖାଇବାକୁ ଇଚ୍ଛା କରିଥା'ନ୍ତି । ଏମିତି କଥାରେ ଅଛି ପନିର ଆଉ ମାଛ ଖାଇଲେ କୁଆଡ଼େ ବୃଦ୍ଧି ପ୍ରଖର ହୁଏ । ସ୍ମରଣଶକ୍ତି ଯାହା ଥାଏ ତାହା ବଢ଼ିଯାଏ । ଦେଖାଯାଉ ପନିର ମସଲା, ଚିଲି ପନିର ଆଉ ମାଛ ଭଜା ଖାଇ ସିପ୍ରାଙ୍କର ବୁଦ୍ଧି ପ୍ରଖର ହେଉଛି କି ନାହିଁ । ଆଉ ଅଧ୍ୟାପିକା ଥିବାବେଳେ ଯେଉଁ ସ୍ମରଣଶକ୍ତି ଥିଲା ତାହା ବିଧାୟିକା ହେବାପରେ ବଢୁଛି କି ନାହିଁ ।

## ମଣ୍ଡା, ହଳଦୀପତ୍ର ପିଠା ଓ ପ୍ରତାପ

ପ୍ରତାପ ଜେନା ହେଉଛନ୍ତି ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ । ଏମିତି ଗୋଟିଏ ସମୟରେ ସେ ମଧୁସୂଦନ ଆଇନ କଲେଜର ସଭାପତି ଥିଲେ । ସେହି ସମୟରୁ ବିଜୁ ପଟ୍ଟନାୟକଙ୍କ ସହିତ ତାଙ୍କର ସମ୍ପର୍କ ଗଢ଼ି ଉଠିଥିଲା । ବିଜୁ ପଟ୍ଟନାୟକ ତାଙ୍କୁ ଛାତ୍ର ଜନତା ଦଳର ସଭାପତି ଭାବେ ନିଯୁକ୍ତି ଦେଇଥିଲେ । ସେତେବେଳେ ବିଜୁଙ୍କ ଉଦ୍ଦେଶ୍ୟ ଥିଲା ମହାନ୍ । କଲେଜ ବୁଲି ସେ ନେତା ସଂଗ୍ରହ କରୁଥିଲେ । ବିଜୁ ଭଲ ରୂପେ ଜାଣିଥିଲେ ଯେଉଁମାନେ ଛାତ୍ର ରାଜନୀତିରେ ଥାଇ ଭବିଷ୍ୟତରେ ଲୋକପ୍ରତିନିଧି ହେବାର ସ୍ୱପ୍ନ ଦେଖୁଛନ୍ତି ସେମାନଙ୍କୁ ସୁଯୋଗ ଦିଆଗଲେ ରାଜନୀତି କଳୁଷିତ ହେବନାହିଁ । ଯେଉଁଥିପାଇଁ ବିଜୁ କଲେଜ ଉତ୍ସବରେ ଯୋଗ ଦେଉଥିଲେ ଆଉ ଛାତ୍ର ରାଜନୀତି ଉପରେ ଗୁରୁତ୍ୱ ଦେଉଥିଲେ । ବିଜୁ ପଟ୍ଟନାୟକ ଯେତେବେଳେ ପ୍ରତାପଙ୍କୁ ଛାତ୍ର ଜନତା ଦଳର ସଭାପତି କଲେ ସେତେବେଳେ ବିଜୁଙ୍କର ପ୍ରତାପଙ୍କୁ ନିର୍ଦ୍ଦେଶ ଥିଲା ଯେ ସେ ସାରାରାଜ୍ୟ ବୁଲି ଛାତ୍ର ସଂଗଠନ କରିବେ ବୋଲି । ଅବଶ୍ୟ ପ୍ରତାପ ଜଣେ ଦକ୍ଷ ସଂଗଠକ । ଆଜି ବିଜୁ ନାହାନ୍ତି ।

ତାଙ୍କ ଅବର୍ତମାନରେ ପ୍ରତାପ ଗଣଶିକ୍ଷା ମନ୍ତ୍ରୀ । ଏମିତି ପ୍ରତାପ ଏକ ଗସ୍ତ କାର୍ଯ୍ୟକ୍ରମରେ ଯାଇଥିଲେ । ସେଦିନ ଥିଲା ଓଡ଼ିଆ ପର୍ବପର୍ବାଣିର ଦିନ । କେହି ଜଣେ ତାଙ୍କ ଘରେ ହଳଦୀପତ୍ରରେ ପ୍ରସ୍ତୁତ ହୋଇଥିବା ପିଠାକୁ ତାଙ୍କୁ ଖାଇବାକୁ ଦେଲେ । ସେହି ପିଠା ଦେଖି ପ୍ରତାପ ବେଶ୍ ଖୁସି ହୋଇଗଲେ । ଗୋଟିଏ ପରେ ଗୋଟିଏ ପିଠା ଖାଇଗଲେ । ଏହାପରେ ମଣ୍ଡାପିଠା ଆସିଲା । ତାକୁ ମଧ ପ୍ରତାପ ବେଶ୍ ଆନନ୍ଦର ସହ ଖାଇଲେ । ମନ୍ତ୍ରୀଙ୍କର ପିଠା ପ୍ରତି ଏତେ ଦୁର୍ବଳତା ଅଛି ବୋଲି କେହି ଜାଣି ନଥିଲେ । ଅବଶ୍ୟ ପିଠା ଖାଇସାରି ପ୍ରତାପ ପାଣି ପିଇବା ସମୟରେ ପିଠା ପ୍ରତି କିଭଳି ତାଙ୍କର ଦୁର୍ବଳତା ଅଛି ତାହା ବଖାଣିଲେ । ଜଣାପଡ଼ିଲା ପିଠାର ବାସ୍ନା ଆସିଲେ ପିଠା ଖାଇବା ପାଇଁ ପ୍ରତାପଙ୍କ ମନ କୁଆଡ଼େ ଛନଛନ ହୁଏ ଆଉ ପିଠା ନଖାଇଲେ ସେହି ସ୍ଥାନ ସେ ଛାଡ଼ି ଯାଆନ୍ତି ନାହିଁ । ଦେଖାଯାଉ ରାଜନୀତିର ଗଣ୍ଡି ମଧରେ ରହି ପ୍ରତାପ ଓଡ଼ିଆ ପରମ୍ପରା ପିଠାପଣା ସହିତ କେତେଦିନ ବାନ୍ଧି ହୋଇରହୁଛନ୍ତି ।

## ଛୋଟପିଲାଙ୍କ ଗହଣରେ ବିଜୟ

ଏ ହେଲେ ବିଜୟ ମହାନ୍ତି । ଡାକ ନାମ ବାଦଲ । ପିଲାଦିନେ ଖେଳାଖେଳି କରିବାକୁ ସେ ବେଶ୍ ଭଲ ପାଉଥିଲେ । ସାଙ୍ଗସୁଖ ବହୁତ ଥିଲା । ବଡ଼ ହୋଇଯିବା ପରେ ସାଙ୍ଗସୁଖ ବି ରହିଲେ ଆଉ କ୍ରମେ ସେ ରାଜନୀତି ଆଡ଼କୁ ଟାଣି ହୋଇଗଲେ । ୨୦୦୯ ନିର୍ବାଚନରେ ସେ ମଧ-ଭୁବନେଶ୍ୱରରୁ ବିଜେଡିରୁ ପ୍ରାର୍ଥୀ ହୋଇ ବିଜୟୀ ହେଲେ । ଏମିତି ତ ତାଙ୍କର ପୋଷାକକୁ ଦେଖିଦେଲେ ସେ ଜଣେ ସାଧାସିଧା ବ୍ୟକ୍ତି ହୋଇଥିବେ ବୋଲି ଯେକୌଣସି ବ୍ୟକ୍ତିଙ୍କର ଧାରଣା ହେବ । ସତେ ଯେମିତି ପିଲାଦିନୁ ସେ ନେତା ହେବେ ବୋଲି ଜାଣିଥିଲେ । ଯେଉଁଥିପାଇଁ ଅନ୍ୟ ରଙ୍ଗର ପୋଷାକ ନପିନ୍ଧି ସେ ଧଳାରଙ୍ଗର ପୋଷାକ ପିନ୍ଧୁଥିଲେ । ତେବେ ତାଙ୍କର ଦୁଇଟି ନିଶା । ଗୋଟିଏ ହେଲା ଧଳାରଙ୍ଗର ପୋଷାକ ପିନ୍ଧିବା ଏବଂ ଅନ୍ୟଟି ହେଲା ଛୋଟଛୋଟ ପିଲାଙ୍କ ସହିତ ମିଶିବା । ବିଜୟ ତାଙ୍କର ଏହି ନିଶାକୁ ଛାଡ଼ି ପାରୁନାହାନ୍ତି । ମାନେ ଛୋଟପିଲାଙ୍କ ଗହଣରେ ରହିବା ପାଇଁ ସତେ ଯେମିତି ସେ ପ୍ରତିଜ୍ଞାବଦ୍ଧ । ଏମିତି ବି ଦେଖାଯାଏ ରାଜନୀତିରୁ ସମୟ ବାହାର କରିନେଇ ବିଜୟ ଭୁବନେଶ୍ୱରର କେତେକ ପାର୍କକୁ ଚାଲିଯାଆନ୍ତି । ସେତେବେଳେ ସେ ଭୁଲିଯାଆନ୍ତି ଯେ ସେ ହେଉଛନ୍ତି ମଧ-ଭୁବନେଶ୍ୱରର ବିଧାୟକ ବୋଲି । ପାର୍କରେ ଖେଳୁଥିବା ଛୋଟଛୋଟ ପିଲାଙ୍କ ସହିତ ସେ ମଧ ଖେଳନ୍ତି । ଅନେକଙ୍କ ସହିତ ଗପନ୍ତି । ପକେଟ୍‌ରେ ନେଇଥିବା ଚକୋଲେଟ୍‌କୁ ସେ ସେମାନଙ୍କୁ ବାଂଟନ୍ତି । ଅନେକ ପିଲାଙ୍କୁ ସେ କାନ୍ଧ ଉପରେ ବସାନ୍ତି ତ କାହାକୁ କାଖାନ୍ତି । ସତେ ଯେମିତି ପିଲାରଙ୍କୁଣି ବିଜୟ । ଏମିତି

ବ୍ୟସ୍ତ ଦୁନିଆରେ ମଣିଷ ମଧ୍ୟ ମଣିଷକୁ ଭଲ ପାଇବା ଭୁଲିଗଲାଣି । ବାପ, ମା' ମଧ୍ୟ ଛୁଆଙ୍କୁ ଯେତିକି ସ୍ନେହ ଦେବାକଥା ତାହା ବି ଦେଇପାରୁନାହାନ୍ତି । ବ୍ୟସ୍ତ କାରଖାନା ଭିତରେ ସତେ ଯେମିତି ମଣିଷ ପେଶି ହୋଇଯାଇଛି । ବିଜୟ ମଧ୍ୟ ଏକ ମଣିଷ । ଏହାସତ୍ତ୍ୱେ ବ୍ୟସ୍ତତା ତାଙ୍କ ପାଇଁ କାରଖାନା ହୋଇନାହିଁ କି ସେହି କାରଖାନା ଭିତରେ ସେ ପେଶି ହୋଇଯାଉନାହାନ୍ତି । ଛୋଟ ଛୁଆମାନଙ୍କୁ ସ୍ନେହ, ଆଦର ଦେଇ ସେ ସେମାନଙ୍କ ସହିତ କିଛି ସମୟ କଟାଇ ଦିଅନ୍ତି । ସତେ ଯେମିତି ଛୋଟ ଛୁଆମାନେ ତାଙ୍କ ପାଇଁ ଭଗବାନଙ୍କର ପ୍ରତୀକ । ଅବଶ୍ୟ ବିଜୟଙ୍କର କେତେକ ପ୍ରଶଂସକ ତାଙ୍କର ଏହି ଛୋଟ ଛୁଆ ପ୍ରୀତି ପ୍ରତି ହାଲ୍‌କା ମନ୍ତବ୍ୟ ବି ଦିଅନ୍ତି । ସେମାନେ କହନ୍ତି- ବିଜୟ କୁଆଡ଼େ ରାଜନୀତିରେ ଓସ୍ତାଦ ହୋଇଯାଇଛନ୍ତି । ଛୁଆମାନଙ୍କୁ ପାଲେଇ ରଖିଲେ ବାପ, ମା'ମାନେ ନିଶ୍ଚିତ ଭାବେ ପାଖକୁ ଆସିବେ । ଆଉ ଭୋଟ ମିଳିବ ହିଁ ମିଳିବ । କିନ୍ତୁ ପ୍ରକୃତରେ ବିଜୟ ଯେତେବେଳେ ଛୋଟ ଛୁଆଙ୍କ ସହିତ ମିଶନ୍ତି ସେତେବେଳେ ରାଜନୀତି ଠାରୁ ସେ ଦୂରରେ ରହନ୍ତି । ତେଣୁ ଛୋଟ ଛୁଆଙ୍କୁ ଭଲ ପାଇବା ବିଜୟଙ୍କର ଭୋଟ ରାଜନୀତି ବୋଲି କୁହାଗଲେ ଠିକ୍ ହେବନାହିଁ । ଦେଖାଯାଉ ରାଜନୀତିର ବ୍ୟସ୍ତତା ମଧ୍ୟରେ ଥାଇ ବିଜୟ କେତେଦିନ ଛୋଟ ଛୁଆମାନଙ୍କ ଗହଣରେ ରହିପାରୁଛନ୍ତି ।

# ପିଲାଦିନର ହିରୋଇନ୍

**ତା**ରା ପ୍ରସାଦ ବାହିନୀପତିଙ୍କ ନାମକୁ ଓଡ଼ିଶାର କୋଣ ଅନୁକୋଣର ଲୋକମାନେ ଜାଣନ୍ତି । ଏମିତି ୨୦୦୦ ଓ ୨୦୦୪ ମସିହାରେ କଂଗ୍ରେସ ଟିକେଟରେ କୋରାପୁଟ ବିଧାନସଭା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହୋଇ ତାରା ବିଜୟୀ ହୋଇଥିଲେ । ୨୦୦୯ ମସିହା ନିର୍ବାଚନରେ ସୀମା ପୁନଃନିର୍ଦ୍ଧାରଣରେ କୋରାପୁଟ ସଂରକ୍ଷିତ ହେବାରୁ ସେ ଜୟପୁର ମୁହାଁ ହେଲେ । କିନ୍ତୁ କଂଗ୍ରେସରୁ ତାଙ୍କୁ ଟିକେଟ ମିଳିଲା ନାହିଁ । କୁଆଡ଼େ ଚର୍ଚ୍ଚା ହୋଇଥିଲା ଯେ ତାରା ଯେପରି କଂଗ୍ରେସରୁ ଟିକେଟ ନପାଇବେ ସେଥିପାଇଁ ଷଡ଼ଯନ୍ତ୍ର ହୋଇଥିଲା । କଂଗ୍ରେସ ଟିକେଟରେ ତାରା ଲଢ଼ିଥିଲେ ଜୟପୁରରୁ ନିଶ୍ଚିତ ବିଜୟୀ ହୋଇଥା'ନ୍ତେ । କଂଗ୍ରେସରୁ ଟିକେଟ ନମିଳିବାରୁ ତାରା ବିଜେପିରୁ ପ୍ରାର୍ଥୀ ହେଲେ ଆଉ ଜିତୁଜିତୁ ହାରିଗଲେ । ତେବେ ଘଟଣାକ୍ରମେ ତାରା ପୁଣି କଂଗ୍ରେସକୁ ଫେରିଛନ୍ତି । ପୁଣି ତାଙ୍କ ପତ୍ନୀ ମୀନାକ୍ଷି ଯିଏକି ପୂର୍ବରୁ କୋରାପୁଟ ଏନ୍ଏସିର ଅଧ୍ୟକ୍ଷା ଥିଲେ ସେ କୋରାପୁଟ ଜିଲା କଂଗ୍ରେସ ସଭାନେତ୍ରୀ ହୋଇଛନ୍ତି । ବିଧାନସଭା ହେଉ କି ନିଜ ନିର୍ବାଚନମଣ୍ଡଳୀ ହେଉ କି ଅବିଭକ୍ତ କୋରାପୁଟ ଜିଲା ହେଉ ତାରା ଯେତେବେଳେ ଯେଉଁଠି ଥା'ନ୍ତି ସବୁଠି ତାଙ୍କରି କାଟ୍‌ତି ଥାଏ । ଚର୍ଚ୍ଚା ବି ହୁଏ ତାରା ବିଧାୟକ ଥିବାବେଳେ ସତେ ଯେମିତି

ବିଧାନସଭାରେ ଟାଇଗର ହୋଇଥା'ନ୍ତି । ଆଉ ବିଧାୟକ ନଥିଲେ ମଧ୍ୟ ସେ ମହାବଳବାଘ । ମାନେ ତାରାଙ୍କର ଜୋରଦାର୍ ସଂଗଠନ । ତାଙ୍କୁ ଟକ୍କର ଦେଲା ଭଳି ସତେ ଯେମିତି କେହି ନାହାନ୍ତି । ରାଜନୀତିରେ ଅବିଭକ୍ତ କୋରାପୁଟ ଜିଲାରେ ତାରାଙ୍କୁ କୁହାଯାଉଛି ଦୁର୍ଦ୍ଧର୍ଷ ନେତା ବୋଲି । ଏବେ ଯିବା ଏହି ଦୁର୍ଦ୍ଧର୍ଷ ନେତାଙ୍କର ପିଲାଦିନକୁ । ବେଳେବେଳେ ଦୁର୍ଦ୍ଧର୍ଷ ନେତାଙ୍କର ପିଲାଦିନକୁ ଦେଖିଲେ ବେଶ୍ କୌତୁହଳ ଲାଗେ । ସେମିତି କୌତୁହଳ ମଧ୍ୟ ତାରାଙ୍କ ପାଖରେ ରହିଛି । ତାରାଙ୍କ ଚେହେରା ବେଶ୍ ଡଉଲଡାଉଲ । ତୋଫା ଗୋରା । ପ୍ରୌଢ଼ ବୟସରେ ମଧ୍ୟ ତାଙ୍କର ଚେହେରା ବେଶ୍ ବାରି ହୋଇଯାଏ । ପିଲାଦିନେ ତାଙ୍କର ଚେହେରା କ'ଣ ଥିବ ସେଥିରୁ ଅନୁମାନ କରାଯାଇପାରେ । ତାରା ପିଲାଦିନେ ଡ୍ରାମାରେ ଅଭିନୟ କରିବାକୁ ଭଲ ପାଉଥିଲେ । କିନ୍ତୁ ତାଙ୍କର ତୋଫା ଗୋରା ଚେହେରାକୁ ଦେଖି ଡ୍ରାମା ନିର୍ଦ୍ଦେଶକ ତାଙ୍କୁ ହିରୋଇନ୍ ହେବା ପାଇଁ ସବୁବେଳେ କହନ୍ତି । ତାରା ହିରୋ କି ହିରୋଇନ୍‌ର ଅର୍ଥ ସେତେବେଳେ କିଛି ବୁଝୁ ନଥିଲେ । ତାଙ୍କର ନିଶା ଥିଲା ଯେମିତି ହେଲେ ଅଭିନୟ କରିବେ । ଆଉ ସେ ହିରୋଇନ୍ ହେଲେ । କେହି ଜାଣିପାରିଲେ ନାହିଁ ତାରା ପୁଅଟିଏ ବୋଲି । ସତେ ଯେମିତି ଅତି ସୁନ୍ଦରୀ ଝିଅଟିଏ । ଏବେ ଯଦି ତାରାଙ୍କୁ କେହି ପ୍ରଶ୍ନ କରନ୍ତି ଆପଣ ତ ରାଜନୀତିରେ ରୟାଲ ବେଙ୍ଗଲ ଟାଇଗର ଆଉ ହିରୋ କି ଭିଲିଆନ୍ ନହୋଇ ହିରୋଇନ୍ କେମିତି ହେଉଥିଲେ ବୋଲି ସେତେବେଳେ ତାରାଙ୍କର ଉତର ହେଉଛି- ଯେତେବେଳେ ଯେଉଁ ଭୂମିକା ତାଙ୍କୁ ଦିଆଯାଏ ତାହାକୁ ସେ ସଫଳ ଭାବେ ନିଭାନ୍ତି । ତାଙ୍କର ଗୋରା ଚେହେରାକୁ ଦେଖି ସେତେବେଳେ ହିରୋଇନ୍ ହେବା ପାଇଁ କୁହାଯାଇଥିଲା । ହିରୋ ଅପେକ୍ଷା ହିରୋଇନ୍ ସୁନ୍ଦର ହେବା କଥା । ହିରୋର ଚେହେରା ଯାହା ହେଲେ ମଧ୍ୟ ଚଳିବ କିନ୍ତୁ ହିରୋଇନ୍ ଯଦି ସୁନ୍ଦରୀ ନହେବ ତେବେ ଡ୍ରାମା ଜଳିବ ନାହିଁ । ଯେହେତୁ ସେ ସୁନ୍ଦର ଥିଲେ ତେଣୁ ହିରୋଇନ୍ ହୋଇଥିଲେ । ପିଲାଦିନର ସେହି ହିରୋଇନ୍ ପ୍ରସଙ୍ଗ ମନେ ପଡ଼ିଗଲେ ତାରା ବେଶ୍ ଖୁସି ହୋଇଯାଆନ୍ତି । ଆଉ ବେଳେବେଳେ ମଧ୍ୟ ହୋ ହୋ ହୋଇ ହସି ଉଠନ୍ତି ।

## ବଡ଼ମାଛର ମଜା

ଏମିତି କଥାରେ ଅଛି କୁଆଡ଼େ ମାଛ ଖାଉଥିବା ଲୋକମାନେ ବୁଦ୍ଧିଆ ଅଟନ୍ତି । ପୁଣି ମାଛ ଲାଂଜ ଖାଉଥିବା ଲୋକମାନେ କୁଆଡ଼େ ବେଶ୍ ଭଲ ଭାବେ ପହଁରନ୍ତି । ଏହାର କାରଣ ମଧ୍ୟ ରହିଛି । ଲାଂଜ ଯୋଗୁ ମାଛ ପାଣିରେ ପହଂରି ପାରେ । ତେଣୁ ମାଛ ଲାଂଜ ଖାଉଥିବା ବ୍ୟକ୍ତି ଭଲ ପହଁରିବ ବୋଲି ଏକ ପ୍ରକାର ଧାରଣା ରହିଛି । ସେହିପରି ମାଛ ମୁଣ୍ଡ ଖାଉଥିବା ବ୍ୟକ୍ତିଙ୍କର କୁଆଡ଼େ ବୁଦ୍ଧି ପ୍ରଖର ହୋଇଥାଏ । ପୁଣି ଭାକୁର ମାଛ ମୁଣ୍ଡ

ଖାଉଥିବା ବ୍ୟକ୍ତି ଅତି ବୁଦ୍ଧିଆ ହୋଇଥାଏ । ଏହାର କାରଣ ମଧ ରହିଛି । ମାଛ ତାହାର ମୁଣ୍ଡର ବୁଦ୍ଧିକୁ ପ୍ରୟୋଗ କରି ପାଣି ଭିତରେ ଚଳପ୍ରଚଳ କରେ । ଏପରିକି ମଣିଷଙ୍କ ଦାଉରୁ ମଧ ସେ ରକ୍ଷା ପାଏ । ତେବେ ଯେଉଁମାନେ ମାଛ ମୁଣ୍ଡ କିମ୍ବା ଲାଂଜ ଖାଆନ୍ତି ନାହିଁ ସେମାନେ କ'ଣ ବୁଦ୍ଧିଆ ହୁଅନ୍ତି ନାହିଁ କି ବୋଲି ପ୍ରଶ୍ନ ହେଲେ ଏହାର ମଧ ଉତର ସହଜରେ ମିଳିବ ନାହିଁ । ଏବେ ଖୋଜିବାକୁ ହେବ ମାଛ ଲାଂଜ ଆଉ ମୁଣ୍ଡ ଖାଉ ନଥିବା ବ୍ୟକ୍ତିଙ୍କୁ । ଏଥିପାଇଁ ଅଧିକ ବାଟ ଯିବାକୁ ପଡ଼ିବ ନାହିଁ । ରାଜଧାନୀ ଭୁବନେଶ୍ୱରର ମାତ୍ର ୨୨ କିଲୋମିଟର ଦୂରରେ ଅବସ୍ଥିତ ଖୋର୍ଦ୍ଧାକୁ ଯାଇ ଏହାର ବିଧାୟକ ରାଜେନ୍ଦ୍ର ସାହୁଙ୍କ ସହିତ ମିଶିଲେ ଏହି ପ୍ରଶ୍ନର ଉତର ଆପେଆପେ ମିଳିପାରିବ । ରାଜେନ୍ଦ୍ର ଯେ ମାଛର ପେଟ ଖାଇବାକୁ ଭଲ ପାଆନ୍ତି ତାହା ବହୁତ କମ୍ ଲୋକ ଜାଣନ୍ତି । ପୁଣି ଛୋଟ ମାଛ ନୁହେଁ । ଅନ୍ୟୁନ ଦେଢ଼କିଲୋରୁ ଅଧିକ ଓଜନର ମାଛ ହୋଇଥିବ । ମାଛ ଯେତେ ବଡ଼ ହୋଇଥିବ ରାଜେନ୍ଦ୍ରଙ୍କ ପସନ୍ଦ ମଧ ସେହି ଅନୁସାରେ ଅଧିକ ହେବ । ଏମିତି ସେଦିନ ରାଜେନ୍ଦ୍ର ତାଙ୍କ ଖୋର୍ଦ୍ଧା ବାସଭବନରେ ନଥିବା ବେଳେ ଦୁଇକେଜିରୁ ଅଧିକ ଓଜନର ଏକ ମାଛ କିଣା ହୋଇଆସିଲା । ବଡ଼ ମାଛଟିଏ ହୋଇଥିବାରୁ ତାହାକୁ ଦେଖିବା ପାଇଁ ମଧ ସେଠାରେ ଥିବା କିଛି ଲୋକ ଜମିଗଲେ । ଏହାପରେ ମାଛଟିକୁ ରାଜେନ୍ଦ୍ରଙ୍କର ଘରକୁ ନିଆଗଲା । ତା'ପରେ ଆରମ୍ଭ ହୋଇଗଲା ରାଜେନ୍ଦ୍ରଙ୍କର ମାଛ ଖାଇବାକୁ ନେଇ ଚର୍ଚ୍ଚା । ରାଜେନ୍ଦ୍ର କୁଆଡ଼େ ମାଛର ମୁଣ୍ଡ କି ଲାଂଜ ଖାଇବାକୁ ଭଲ ପାଆନ୍ତି ନାହିଁ । ତାଙ୍କର ସବୁଠାରୁ ପ୍ରିୟ ହେଉଛି ମାଛର ପେଟ । ପୁଣି ମାଛ ଓଜନରେ ଦୁଇକିଲୋରୁ ଅଧିକ ହୋଇଥିବ । ମାଛ ପେଟ ଖାଇ ରାଜେନ୍ଦ୍ର ମାଛ ମୁଣ୍ଡ ଆଉ ଲାଂଜ ଖାଉଥିବା ବ୍ୟକ୍ତିଙ୍କ ଠାରୁ ବୁଦ୍ଧିରେ ଅଧିକ କି କମ୍ ସେ ସମ୍ପର୍କରେ ମଧ ଚର୍ଚ୍ଚା ଯେ ହୁଏନାହିଁ ତାହା ନୁହେଁ । ରାଜେନ୍ଦ୍ରଙ୍କୁ କେହି ନିର୍ବୁଦ୍ଧିଆ ବୋଲି କହିପାରିବେ ନାହିଁ । ନିଜ ବୁଦ୍ଧିକୁ ପ୍ରୟୋଗ କରି ସେ ଖୋର୍ଦ୍ଧା ଏନ୍ଏସିର ଅଧକ୍ଷ ହୋଇଥିଲେ । ପୁଣି ବୁଦ୍ଧିକୁ ପ୍ରୟୋଗ କରି ଖୋର୍ଦ୍ଧା ନିର୍ବାଚନମଣ୍ଡଳୀର ବିଧାୟକ ହୋଇଛନ୍ତି । ତେଣୁ ରାଜେନ୍ଦ୍ର ପାଇଁ ମାଛପେଟ ଜିନ୍ଦାବାଦ୍ ହେବ ହିଁ ହେବ ।

# ଛେନାପୋଡ଼ ଓ ପବିତ୍ର ପ୍ରଧାନ

**ଛେ**ନାପୋଡ଼ର ଚାହିଦା କେଉଁ ଆଦିମ ଯୁଗରୁ ରହିଆସିଛି । ଏମିତି ଛେନାପୋଡ଼ ଖୁଆଇ ଅନେକ ନହେବା କାମ ମଧ କରି ନିଅନ୍ତି । ଏଠାରେ ଛେନାପୋଡ଼ ପ୍ରସଙ୍ଗ ଉଠାଇବାର କାରଣ ହେଲା ଗୋଟିଏ ସମୟରେ ଅତି ପାୱାରଫୁଲ୍ ବୋଲି କୁହାଯାଉଥିବା ନେତା ଥିଲେ ପବିତ୍ର ମୋହନ ପ୍ରଧାନ । ୧୯୬୭ରେ ପବିତ୍ର ମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ ଥିଲେ ।

ସେଦିନ ଏମିତି ସଭାରେ କହୁକହୁ ଗୁମର କଥାଟିଏ ଫିଟାଇ ଦେଲେ ସାହିତ୍ୟିକ ବିଭୂତି ପଟ୍ଟନାୟକ । କିପରି ଏକ ସମସ୍ୟାକୁ ନେଇ ପବିତ୍ର ମୋହନ ପ୍ରଧାନଙ୍କ ପାଖକୁ ରାଧା ମୋହନ ଗଡ଼ନାୟକ ଯାଇଥିଲେ ତାହାକୁ ସେ ବଖାଣିଥିଲେ । କଟକରୁ ରାଧା ମୋହନ ଗଡ଼ନାୟକଙ୍କ ସହିତ ସେ ଭୁବନେଶ୍ୱର ଆସିଥିଲେ । ବାଟରେ ପଡ଼ିଲା ପାହାଳ । ସେତେବେଳେ ପାହାଳ ରସଗୋଲା ଓ ଛେନାପୋଡ଼ ଭୁବନେଶ୍ୱରରେ ମିଳୁଥିବା ରସଗୋଲା ଓ ଛେନାପୋଡ଼ ଠାରୁ ଶସ୍ତା ଥିଲା । ଏହାର ସ୍ୱାଦ ମଧ୍ୟ ଅନ୍ୟ ଛେନାପୋଡ଼ ଓ ରସଗୋଲା ଠାରୁ ଭିନ୍ନ ଥିଲା । ଆଉ ପାହାଳ ଛେନାପୋଡ଼ ଓ ରସଗୋଲା ପ୍ରତି ଲୋକଙ୍କର ଆଦର ବି ଥିଲା । ସେଠାରେ ରାଧାମୋହନ ଗଡ଼ନାୟକ ଛେନାପୋଡ଼ କିଣିଲେ ଆଉ କହିଲେ- ପବିତ୍ର ମୋହନ ପ୍ରଧାନ ଛେନାପୋଡ଼ ଭଲ ପାଆନ୍ତି । ତେଣୁ ତାଙ୍କ ପାଖକୁ ଛେନାପୋଡ଼ ନେବା ଆଉ କାମ କଥା କହିବା । ଭୁବନେଶ୍ୱର ଆସି ପବିତ୍ର ମୋହନ ପ୍ରଧାନଙ୍କୁ ସେହି ଛେନାପୋଡ଼ ଦେଲେ ରାଧାମୋହନ । ଆଉ ପବିତ୍ର ମୋହନଙ୍କୁ ରାଧାମୋହନ ଯାହା କରିବା ପାଇଁ କହିଲେ ତାହା ହିଁ ସେ କଲେ । ଅବଶ୍ୟ ପବିତ୍ର ମୋହନ ଆଉ ରାଧାମୋହନଙ୍କର ସମ୍ପର୍କ ଅତି ନିବିଡ଼ ଥିଲା । କିନ୍ତୁ ଯେଉଁ କାମ ହେଲା ତାହା କୁଆଡ଼େ ଛେନାପୋଡ଼ର କରାମତି ଥିଲା ବୋଲି କୁହାଗଲା । ଅବଶ୍ୟ ଏବେ ଆଉ ଛେନାପୋଡ଼ କି ରସଗୋଲା ଦେଇ ନେତାଙ୍କ ଠାରୁ କେହି ନହେବା କାମ କରିପାରିବେ ନାହିଁ । ସେତେବେଳର ଯୁଗ ଅଲଗା ଥିଲା । କିଏ କେଉଁ ଉପହାର ଆଣୁଥିଲା ତାହାକୁ ଟଙ୍କାରେ ମପାଯାଉ ନଥିଲା । ସେଥିରେ ସ୍ନେହ ଆଉ ଶ୍ରଦ୍ଧା କେତେ ରହିଛି ତାହାକୁ ଦେଖାଯାଉଥିଲା । ଆଉ ସେହି ସ୍ନେହ, ଶ୍ରଦ୍ଧାରେ ମନ୍ତ୍ରୀମାନେ କାମ ବି କରୁଥିଲେ । ବିଭୂତି ପଟ୍ଟନାୟକ ସେହି ଛେନାପୋଡ଼ ଗୁମର କଥାଟିକୁ ସେଦିନ ଫିଟାଇ ଦେଇଥିଲେ । ଏହାପରେ ପବିତ୍ର ମୋହନ ପ୍ରଧାନଙ୍କ ଛେନାପୋଡ଼ ଦୁର୍ବଳତାକୁ ନେଇ ରାଜନୀତି ମହଲରେ ବେଶ୍ ଚର୍ଚ୍ଚା ହେଲା । ଅନେକ ପବିତ୍ର ମୋହନଙ୍କର ଛେନାପୋଡ଼ ସହିତ ଆଉ କେଉଁ ମିଠା ପ୍ରତି ଦୁର୍ବଳତା ଥିଲା ତାହାକୁ ମଧ୍ୟ ବଖାଣିଲେ । ତେବେ ଯେଉଁ ସମୟରେ ପବିତ୍ର ମୋହନ ପ୍ରଧାନ ଉପମୁଖ୍ୟମନ୍ତ୍ରୀ ଥାଇ ଛେନାପୋଡ଼ ପ୍ରତି ଦୁର୍ବଳତା ପ୍ରକାଶ କରୁଥିଲେ ସେହି ସମୟରେ ମଧ୍ୟ ବହୁ ମନ୍ତ୍ରୀ ଓ ନେତାମାନଙ୍କର ବି ଛେନାପୋଡ଼ ପ୍ରତି ଦୁର୍ବଳତା ରହିଥିଲା । ଯାହା ହେଲେ ମଧ୍ୟ ଉତ୍କଳର ଦେଶ ହେଉଛି ଓଡ଼ିଶା । ଏଠାରେ ପ୍ରଭୁ ଜଗନ୍ନାଥ ଅଛନ୍ତି । ଏମିତି ତ ଜଗନ୍ନାଥଙ୍କୁ ପେଟୁ ବୋଲି କୁହାଯାଏ । ଆଉ ଛେନାପୋଡ଼କୁ ମଧ୍ୟ ସେ ବହୁତ ଭଲ ପାଆନ୍ତି । ରାଜନୀତି ପ୍ରସଙ୍ଗ ଆସିଲେ ବେଳେବେଳେ ଅତୀତ ମନେପଡ଼େ । ଏମିତି ବି କୁହାଯାଉଥିଲା ଉତ୍କଳର ନେତା ନାହିଁ ପ୍ରୟୋଜନ, ଉତ୍କଳର ନେତା ନିଜେ ନାରାୟଣ । ଏଠାରେ ନାରାୟଣ କୁହାଗଲେ ଜଗନ୍ନାଥଙ୍କୁ ହିଁ ବୁଝାଏ । ଆଉ ଜଗନ୍ନାଥ ଯେତେବେଳେ ଛେନାପୋଡ଼ ପ୍ରେମୀ ସେତେବେଳେ ନେତା ଛେନାପୋଡ଼କୁ ପ୍ରେମ ନକରି ଯିବେ କୁଆଡ଼େ ।

# ଛେପ, ପାଟଶାଣୀ ଓ ମହିଳା

ଏମିତି ସମସ୍ତଙ୍କର ଧାରଣା ଅଛି ଯେ ସେ ଯେତେ ନିଜର ହୁଅନ୍ତୁ ନା କାହିଁକି ମଣିଷ ଉପରକୁ ଯଦି ଅନ୍ୟ ଏକ ମଣିଷ ଛେପ ପକାଇବ ତେବେ ତାହା ଘୃଣା ବୋଲି ଧରାଯିବ । ରାଗ ଆଉ ଘୃଣା ହେଲେ ଜଣେ ଜଣଙ୍କ ଉପରକୁ ଛେପ ପକାଇବ । ପ୍ରେମରେ କେହି କାହା ଉପରକୁ ଛେପ ପକାନ୍ତି ନାହିଁ । କିନ୍ତୁ ଏଠାରେ ଯେଉଁ ପ୍ରସଙ୍ଗ ଉଲ୍ଲେଖ କରାଯାଉଛି ତାହା ଏହି ଧାରଣାରୁ ବ୍ୟତିକ୍ରମ ଅଟେ । ଏବେ ଯିବା ସେହି ଘଟଣାକୁ । ଘଟଣାଟି ଘଟିଥିଲା ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀଙ୍କ ଭୁବନେଶ୍ୱର ସ୍ଥିତ ତାଙ୍କ ବାସଗୃହ ଦରବାରରେ । ସେଦିନ ପ୍ରସନ୍ନ ଛୋଟିଆ ଗାମୁଛାଟିଏ ପିନ୍ଧି ଦରବାରରେ ବସିଥା'ନ୍ତି । ମାନେ ପୂରାପୂରି ଫୁଙ୍ଗୁଳା । ଅର୍ଥାତ୍ କେବଳ ଲଜ୍ୟା ନିବାରଣ ପାଇଁ ଅଂଟା ତଳଠାରୁ ଜଙ୍ଘ ଉପର ପର୍ଯ୍ୟନ୍ତ ଗାମୁଛା ଥାଏ । ଦରବାର ପତଳା ହୋଇଯାଇଥାଏ । ଦୁଇଜଣ ଯୁବକ ସେଠାରେ ଆସି ପହଂଚିଲେ । ସେମାନେ ଏମିତି କଥାବାର୍ତା କରୁଥିଲେ ଯେ ପ୍ରସନ୍ନଙ୍କ ଧାରଣା ହେଲା ସେମାନେ ଟାଉଟର ହୋଇଥିବେ ବୋଲି । ଏମିତି ପ୍ରସନ୍ନଙ୍କ ଦରବାରକୁ ଭିନ୍ନଭିନ୍ନ ଧରଣର ବ୍ୟକ୍ତି ଆସିଥା'ନ୍ତି । ସେମାନଙ୍କ ମଧ୍ୟରେ ବି ଅନେକ ଟାଉଟର ଥା'ନ୍ତି । ପ୍ରସନ୍ନ ସମସ୍ତଙ୍କୁ ନେଇ କାମ କରନ୍ତି । ସେହି ଦୁଇଜଣ ଯୁବକ ପ୍ରସନ୍ନଙ୍କ ସହିତ ଏଣୁତେଣୁ ଗପିଲେ । ପ୍ରସନ୍ନ ମଧ୍ୟ ସେମାନଙ୍କ ସହିତ ଏଣୁତେଣୁ ଗପ କରିଚାଲିଲେ । ଏହି ସମୟରେ ପ୍ରସନ୍ନଙ୍କ ଘର ସମ୍ମୁଖରେ ଥିବା ରାସ୍ତାରେ ଯାଉଥିବା ଚାରିଜଣ ଯୁବତୀ ହଠାତ୍ ରାସ୍ତାରେ ଅଟକି ଗଲେ । ସେମାନଙ୍କ ମଧ୍ୟରୁ ଜଣେ ପ୍ରସନ୍ନଙ୍କ ଆଡ଼କୁ ଅଙ୍ଗୁଳି ଦେଖାଇଲେ । ଏହାପରେ ସେହି ଚାରିଜଣ ଯୁବତୀ ପ୍ରସନ୍ନଙ୍କ ପାଖକୁ ଆସିଲେ । ପ୍ରସନ୍ନ ସେମାନଙ୍କୁ ଦେଖି କହିଲେ- କ'ଣ କିଛି କାମ ଅଛି କି । କୁହ ଶୀଘ୍ର କରିଦେବା । ଦରବାର ଶେଷ ହୋଇଯାଆନ୍ତାଣି । କେବଳ ଏହି ଦୁଇଜଣ ଯୁବକ ଅଛନ୍ତି ବୋଲି ସେ ବସିଛନ୍ତି । ପ୍ରସନ୍ନଙ୍କ ଏହି କଥାରେ ଚାରିଜଣ ଯୁବତୀ ଖିଲିଖିଲି ହୋଇ ହସିଲେ । ପ୍ରସନ୍ନ କିଛି ବୁଝିପାରିଲେ ନାହିଁ । ପ୍ରସନ୍ନ କହିଲେ- ହସୁଛ କ'ଣ । କାମ କ'ଣ ଅଛି କୁହ । ତାଙ୍କ ଦରବାରକୁ ଆସି କେହି ଖାଲି ହାତରେ ଫେରନ୍ତି ନାହିଁ । ତଥାପି ବି ସେହି ଯୁବତୀଙ୍କର ହସ ବନ୍ଦ ହେଲାନାହିଁ । ସେମାନେ କହିଲେ- ସେମାନଙ୍କର କିଛି କାମ ନାହିଁ । ରାସ୍ତାରେ ଯାଉଥିଲେ ଆଉ ଦେଖିଲେ ପ୍ରସନ୍ନ ପାଟଶାଣୀ ବସିଛନ୍ତି । ତେଣୁ ତାଙ୍କୁ ଦେଖିବା ପାଇଁ ସେମାନେ ସେଠାକୁ ଚାଲିଆସିଲେ । ପ୍ରସନ୍ନ କହିଲେ- ଭଲ ହେଲା ଦରବାରକୁ ଚାଲିଆସିଲ । ..ଛି ନହେଲେ ମଧ୍ୟ ମୋତେ ଦେଖିବା ପରେ ମୋର ପ୍ରଚାର ମଧ୍ୟ ତମେ କରିବ । ଚାରିଜଣ ଯାକ ଯୁବତୀ ପ୍ରସନ୍ନଙ୍କ କଥାରେ ହଁ ମାରିଲେ ଆଉ ହସିହସି ପୁଣି ସେଠାରୁ ଚାଲିଗଲେ । ଯୁବତୀମାନେ ଯିବାପରେ ପ୍ରସନ୍ନ କହିଲେ- ଏତେଦିନ ହେଲା ସେ ରାଜନୀତି କଲେଣି

କିନ୍ତୁ ଏଭଳି ଯୁବତୀଙ୍କୁ ସେ କେବେ ଦେଖିନାହାନ୍ତି । ଖାଲି ଆସିଲେ ଆଉ ହସିଲେ । ଏହି ସମୟରେ ସେଠାରେ ଥିବା ଯୁବକଟିଏ ତାଙ୍କ ମୁହଁକୁ ଛେପ ପକାଇଲା । ପ୍ରସନ୍ନ ଏଥିରେ ଭୀଷଣ ରାଗିଗଲେ । ପ୍ରସନ୍ନ କିଛି କହିବା ପୂର୍ବରୁ ଛେପ ପକାଇଥିବା ସେହି ଯୁବକ ଜଣଙ୍କ ପ୍ରସନ୍ନଙ୍କ ଶରୀର ସାରା ଛେପ ପକାଇବାକୁ ଲାଗିଲା । ପ୍ରସନ୍ନ ଆହୁରି ରାଗିଗଲେ । ଯୁବକ ଜଣଙ୍କ କହିଲେ- ମୁଁ ଆପଣଙ୍କ ଉପରକୁ ଛେପ ପକାଉଛି ବୋଲି ଆପଣ ରାଗି ପାରନ୍ତି । କିନ୍ତୁ ଆଜି ଆପଣଙ୍କୁ ମୁଁ ରକ୍ଷା କରିଦେଲି । ଯେଉଁ ଚାରିଜଣ ଯୁବତୀ ଏଠାକୁ ଆସିଥିଲେ ସେମାନେ ସମସ୍ତେ ଡାହାଣୀ । ଆପଣ ଖୋଲା ଦେହରେ ବସିଛନ୍ତି । ସେମାନେ ଆପଣଙ୍କର ମୁଣ୍ଡ ଠାରୁ ଗୋଡ଼ ପର୍ଯ୍ୟନ୍ତ ସବୁଆଡ଼କୁ ଚାହୁଁଥିଲେ । ସତେ ଯେମିତି ସେମାନେ ଆପଣଙ୍କୁ ଖାଇଯିବେ । ଏହାକୁ ମୁଁ ଭଲ ରୂପେ ଦେଖିଥିଲି । ଏହି ସମୟରେ ପ୍ରସନ୍ନ କହିଲେ- ମୁଁ ଆଉ ଟୋକା ନୁହେଁ ଯେ ଟୋକିମାନେ ମୋତେ ଚାହିଁଲେ ମୁଁ ଦୃଷ୍ଟିଆ ହୋଇଯିବି । ସେମାନେ ମୋତେ ଯେତେ ଚାହିଁଲେ ମଧ୍ୟ ମୁଁ ଦୃଷ୍ଟିଆ ହେବାର ନାହିଁ । ଦରବାରକୁ ପ୍ରତିଦିନ ବହୁ ମହିଳା ଆସୁଛନ୍ତି । ସମସ୍ତେ ତାଙ୍କୁ ଦେଖୁଛନ୍ତି । କିନ୍ତୁ କେବେବି ସେ ଦୃଷ୍ଟିଆ ହେଉନାହାନ୍ତି । ଛେପ ପକାଇଥିବା ଯୁବକ ଜଣଙ୍କ କହିଲେ- କଥା ତାହା ନୁହେଁ । କଥା ହେଉଛି ଚାରିଜଣ ଯାକ ଯୁବତୀଙ୍କର ଆପଣଙ୍କ ପାଖରେ କିଛି କାମ ନଥିଲା । ସେମାନେ ଖାଲି ଆପଣଙ୍କ ଶରୀରକୁ ପାଖରୁ ଦେଖିବାକୁ ଆସିଥିଲେ । ତାଙ୍କ ଚାହାଣି ଦେଖି ସେ ଜାଣିପାରିଥିଲେ ଯେ ସେମାନେ ଡାହାଣୀ ବୋଲି । ସେମାନଙ୍କର ଦୃଷ୍ଟି ପ୍ରସନ୍ନଙ୍କର ଛାତି ଆଉ ପେଣ୍ଡା ଉପରେ ଥିଲା । ମହିଳା ଏବଂ ବିଶେଷ ଭାବେ ଯୁବତୀଙ୍କର ପୁରୁଷଙ୍କ ଛାତି ଆଉ ଜଙ୍ଘ ଉପରେ ଦୃଷ୍ଟି ପଡ଼ିଲେ ଜାଣ ସେ ପୁରୁଷ ଦୃଷ୍ଟିଆ ହୋଇଯିବ ହିଁ ଯିବ । ଯେଉଁଥିପାଇଁ ସେ ତାଙ୍କ ଶରୀର ଉପରକୁ ଛେପ ପକାଇଲେ । ଏହା ଫଳରେ ସେ ଦୃଷ୍ଟିଆ ହେବେନାହିଁ । ପ୍ରଥମେ ପ୍ରସନ୍ନ ତାଙ୍କ ଉପରେ ଛେପ ପକାଇଥିବା ବ୍ୟକ୍ତି ଉପରେ ବେଶ୍ ରାଗି ଯାଇଥିଲେ । କିନ୍ତୁ ସେହି ବ୍ୟକ୍ତି ଜଣଙ୍କ କାହିଁକି ଛେପ ପକାଇଲେ ତାହାର କାରଣ କହିଦେବାରୁ ପ୍ରସନ୍ନ ଆଉ କିଛି କହିଲେ ନାହିଁ । ଏହାପରେ ପ୍ରସନ୍ନ ଦରବାର ସାରିଦେଲେ । ଆଉ ଘରକୁ ଯାଇ ମୁଣ୍ଡରୁ ଗୋଡ଼ ପର୍ଯ୍ୟନ୍ତ ପାଣି ଢାଳି ହୋଇଗଲେ । ସେଦିନ ଯେଉଁ ଚାରିଜଣ ଯୁବତୀ ପ୍ରସନ୍ନଙ୍କ ପାଖକୁ ଆସି ତାଙ୍କୁ ବିଲିବିଲି ହୋଇ ଦେଖୁଥିଲେ ଆଉ ଖିଲିଖିଲି ହୋଇ ହସୁଥିଲେ ସେ ଦୃଶ୍ୟ ଏବେବି ପ୍ରସନ୍ନଙ୍କ ଆଖି ଆଗରେ ନାଚି ଉଠୁଛି । ଆଉ ଏହି ଦୃଶ୍ୟ ଆଖି ଆଗକୁ ଆସିଯିବା ବେଳକୁ ତାଙ୍କ ଉପରକୁ ଛେପ ପକାଯାଉଥିବାର ଦୃଶ୍ୟ ମଧ୍ୟ ତାଙ୍କ ଆଖିକୁ ଚାଲିଆସୁଛି । ଏହି ଘଟଣାକୁ ପ୍ରସନ୍ନ ବେଳେବେଳେ ଦରବାରରେ ପ୍ରକାଶ କରିଦେଇ ମନ ଭିତରେ ଥିବା ପ୍ରେମ ଓ ଘୃଣା ଭାବକୁ ଲାଘବ କରିଦେଉଛନ୍ତି ।

# ଦେବୀଙ୍କ ହନୁମାନ ପୂଜା

ଏ ହେଲେ ଦେବୀ ପ୍ରସାଦ ମିଶ୍ର । ନବୀନ ପଟ୍ଟନାୟକଙ୍କ ମନ୍ତ୍ରିମଣ୍ଡଳରେ ଯେଉଁ କେତେଜଣ କାମିକା ମନ୍ତ୍ରୀ ଅଛନ୍ତି ସେମାନଙ୍କ ମଧ୍ୟରୁ ଦେବୀ ହେଉଛନ୍ତି ଜଣେ । ବିଧାନସଭା ବଜେଟ୍ ଅଧିବେଶନ ଆରମ୍ଭ ହେବାପରେ ବିରୋଧୀ ଦଳ ପକ୍ଷରୁ ଚାଲିଥିଲା ଗୃହରେ ହଟ୍ଟଗୋଳ । ପ୍ରଥମେ ନିମ୍ନମାନର ଡାଲି ଯୋଗାଣ ପରେ ମାଲକାନାଗିରି ଜିଲାପାଳ ଅପହରଣ ପ୍ରସଙ୍ଗ । ବିରୋଧୀ ଦଳର ହୋହଲ୍ଲା ମଧ୍ୟରେ ବିଧାନସଭାରେ ସରକାର ସତେ ଯେମିତି ଠପ୍ ହୋଇଯାଇଥିଲେ । ଆଉ ଯେଉଁଥିପାଇଁ ବିଧାନସଭା ବାରମ୍ବାର ମୁଲତବୀ ରହୁଥିଲା । ସେଦିନ ବିଧାନସଭାରେ ବିରୋଧୀ ଦଳ ହଟ୍ଟଗୋଳ କରିବାରୁ ବାଚସ୍ପତି ପ୍ରଦୀପ ଅମାତ୍ ଗୃହକୁ ମୁଲତବୀ ରଖି ଦେଇଥିଲେ । ଓଡ଼ିଆରେ ଏକ ପ୍ରବାଦ ଅଛି । ତାହା ହେଲା- କାକତଳୀୟ ନ୍ୟାୟ । ମାନେ ତାଳ ଖସିବା ବେଳକୁ କାଉ ଉଡ଼ିଯାଉଥିବାର । ଏହାର ଅର୍ଥ ହେଲା ତାଳ ତା' ବାଟରେ ଖସିଛି କିନ୍ତୁ କାଉ ସେହି ସମୟରେ ତାଳଗଛ ଉପରେ ଉଡ଼ି ଯାଉଥିବାରୁ ତାଳକୁ କାଉ ଖସାଇ ଦେଇଛି ବୋଲି ଧାରଣା ହୁଏ । ଏହି ପ୍ରବାଦ କାହିଁକି ବଖଣା ଯାଉଛି ତାହାର କାରଣ ମଧ୍ୟ ରହିଛି । ମନ୍ତ୍ରୀ ଦେବୀ ପ୍ରସାଦ ମିଶ୍ର ତାଙ୍କ ସରକାରୀ ବାସଭବନରେ ହନୁମାନ ପୂଜାର ଆୟୋଜନ କରିଥିଲେ । ପୂଜା ଶେଷ ହେବାପରେ ଦେବୀଙ୍କର ସୁସମ୍ପର୍କ ଥିବା ବ୍ୟକ୍ତିମାନଙ୍କୁ ସେଠାକୁ ଡକାଯାଇଥିଲା ଆଉ ରାତ୍ରଭୋଜନରେ ସେମାନଙ୍କୁ ଆପ୍ୟାୟିତ କରାଯାଇଥିଲା । ଭୋଜନ ନିରାମିଷ ଥିଲା । ଦେବୀଙ୍କର ଯେବେଠାରୁ ଦୁର୍ଘଟଣା ହେଲା ଆଉ ସେ ମୁମ୍ବାଇରେ ଚିକିତ୍ସିତ ହେବା ପାଇଁ ଯାଇଥିଲେ ସେବେଠାରୁ ହନୁମାନଙ୍କୁ ତାଙ୍କର ଯାଚଙ୍ଗା ଥିଲା । କିନ୍ତୁ ଏହି ଯାଚଙ୍ଗା ପୂରଣ ହୋଇପାରୁ ନଥିଲା । ଦେବୀ ପ୍ରାୟ ସୁସ୍ଥ ହୋଇଗଲେଣି । ବିଳମ୍ବ ନକରି ହନୁମାନ ପୂଜା କରିବା ପାଇଁ ତାଙ୍କ ପତ୍ନୀ ଅନୁସୟା ମିଶ୍ର ପ୍ରସ୍ତାବ ଦେଲେ । ଅନୁସୟାଙ୍କ ଏହି ଫାଇଲକୁ ତୁରନ୍ତ ଅନୁମୋଦନ ଦେଲେ ଦେବୀ । ଏହାପରେ ହନୁମାନ ପୂଜାର ଆୟୋଜନ ହେଲା । ବଜେଟ୍ ବିଧାନସଭା ଅଧିବେଶନ ପୂର୍ବରୁ ଅତି ଆକସ୍ମିକ ଭାବେ ମନ୍ତ୍ରୀ ପଦରୁ ପ୍ରମିଳା ମଲିକ ବିଦା ହୋଇଥିବାରୁ ଏମିତି ପ୍ରାୟ ସବୁ ମନ୍ତ୍ରୀଙ୍କ ମନରେ ଆତଙ୍କ ସୃଷ୍ଟି ହୋଇଥିଲା । ଅବଶ୍ୟ ଯାଚଙ୍ଗା ଥିବାରୁ ଦେବୀ ଏହି ହନୁମାନ ପୂଜା କରିଥିଲେ । କିନ୍ତୁ କାକତଳୀୟ ନ୍ୟାୟ ପ୍ରସଙ୍ଗଟି ଏଠାରେ ମଧ୍ୟ ଉଠିଥିଲା । ମାନେ ବିଧାନସଭା ଅଧିବେଶନ ଚାଲିଥିବା ବେଳେ ଦେବୀ ଏହି ପୂଜା କରିଥିବାରୁ ଏହା କୁଆଡ଼େ ତାଙ୍କ ମନ୍ତ୍ରୀ ପଦ ସୁରକ୍ଷିତ ପାଇଁ ହୋଇଥିଲା ବୋଲି ରାଜନୀତି ମହଲରେ ଚର୍ଚ୍ଚା ହୋଇଥିଲା । କିନ୍ତୁ ଦେବୀ ଏହି ଚର୍ଚ୍ଚା ଠାରୁ ଦୂରରେ । ଏହି ପୂଜା କୁଆଡ଼େ ପରିବାର ଓ

ସମ୍ପର୍କୀୟଙ୍କ ମଧ୍ୟରେ ସୀମିତ ଥିଲା । ଆଉ ଦୁର୍ଘଟଣାରେ ଆହତ ହୋଇ ଚିକିତ୍ସିତ ହେବା ବେଳୁ ହନୁମାନଙ୍କ ନିକଟରେ ଯାଚଙ୍ଗା ଥିବାରୁ ଏହା କରାଯାଇଥିଲା । କିନ୍ତୁ ଏହା ସତ ଯେ, ରାଜନୀତିରେ ତୁଣ୍ଡ ବାଇଦ ସହସ୍ର କୋଶ । ମାନେ ତୁଣ୍ଡରୁ କଥା ବାହାରିଗଲେ ତୁରନ୍ତ ତାହା ସହସ୍ର କୋଶକୁ ବ୍ୟାପି ଯାଇଥାଏ । ଆଉ ଦେବୀଙ୍କର ଏହି ହନୁମାନ ପୂଜା ପ୍ରସଙ୍ଗଟି ମଧ୍ୟ ଏହିପରି ହୋଇଛି । ଯେଉଁଥିପାଇଁ ଏହାକୁ ନେଇ ଚର୍ଚ୍ଚା ପରେ ଚର୍ଚ୍ଚା ଚାଲିଛି ।

# ଜଗନ୍ନାଥ, ଲକ୍ଷ୍ମୀ ଓ ଗଣେଶ

ଏମିତି ଠାକୁର ପ୍ରେମୀ ବୋଲି କୁହାଯାଏ ମନ୍ତ୍ରୀ ଅଂଜଳି ବେହେରାଙ୍କୁ । ସେ ଠାକୁର ପୂଜା କରୁଥିବା ସମୟରେ ତାଙ୍କୁ ଯେମିତି କେହି ଡିଷ୍ଟର୍ବ ନକରନ୍ତି ସେ ଦିଗରେ ମଧ୍ୟ ତାଙ୍କର ତାଗିଦ୍ ରହିଛି । ଅଂଜଳିଙ୍କର ଠାକୁର ପୂଜା ମିନିଟିଏ କି ଦୁଇ ମିନିଟ୍ କି ଅଧଘଂଟାଏ ନୁହେଁ । ଅନ୍ତତଃପକ୍ଷେ ଘଂଟାଏ । ପୁଣି ଘଂଟାଏରୁ ଅଧିକ ହେବ ପଛେ କମିବ ନାହିଁ । ଯେକୌଣସି କାମ କରିବାକୁ ଯିବା ପୂର୍ବରୁ ଅଂଜଳି ପ୍ରଥମେ ଠାକୁରଙ୍କୁ ସ୍ମରଣ କରନ୍ତି । ସତେ ଯେମିତି ଠାକୁର ହଁ କଲେ ସେ ସେହି କାମ କରନ୍ତି ଆଉ ନାହିଁ କଲେ ସେ ସେହି କାମରୁ ଦୂରେଇ ରହନ୍ତି । ଅଂଜଳିଙ୍କର ଠାକୁର ପୂଜା ସମ୍ପର୍କରେ ଏମିତି ରାଜନୀତି ମହଲରେ ମଧ୍ୟ ବିଭିନ୍ନ ସମୟରେ ଚର୍ଚ୍ଚା ବି ହେଉଛି । ତେବେ ଅଂଜଳିଙ୍କୁ ବିଧାନସଭାରେ ମିଳିଥିବା ମନ୍ତ୍ରୀ ପ୍ରକୋଷ୍ଠକୁ ଚାଲିଗଲେ ଅଂଜଳିଙ୍କ ଠାକୁର ଭକ୍ତି ବେଶ୍ ବାରି ହୋଇଯିବ । ସେହି ପ୍ରକୋଷ୍ଠରେ ଲାଗିଛି ଜଗନ୍ନାଥଙ୍କ ଫଟୋ । ପୁଣି ଲକ୍ଷ୍ମୀ ଓ ଗଣେଶଙ୍କ ଫଟୋ ଏକାଠି ରହିଛି । ଅନେକ ଭାବନ୍ତି ଧନ ଯେଉଁଠି ଥାଏ ସେଠାରେ ପାଠ ନଥାଏ ବୋଲି । କିନ୍ତୁ ଏ କ୍ଷେତ୍ରରେ ଅଂଜଳି ବେଶ୍ ପ୍ରାଂଜଳ ଭାବେ ବୁଝାଇ ଦିଅନ୍ତି । ସେ କହନ୍ତି- ଲକ୍ଷ୍ମୀ ଆଉ ସରସ୍ଵତୀଙ୍କ ମଧ୍ୟରେ ପଡ଼େନାହିଁ ବୋଲି ଏକ ଧାରଣା ରହିଛି । ଲକ୍ଷ୍ମୀ ଧନର ପ୍ରତୀକ ଆଉ ସରସ୍ଵତୀ ବିଦ୍ୟାର ପ୍ରତୀକ । କିନ୍ତୁ ତାଙ୍କ ପ୍ରକୋଷ୍ଠରେ ଲକ୍ଷ୍ମୀ ଆଉ ଗଣେଶ ଥିବା ଫଟୋଟିଏ ସେ ରଖିଛନ୍ତି । ଲକ୍ଷ୍ମୀ ଧନର ପ୍ରତୀକ ହୋଇଥିବା ବେଳେ ଗଣେଶ ମଧ୍ୟ ବିଦ୍ୟାର ପ୍ରତୀକ ଅଟନ୍ତି । ଯେଉଁଥିପାଇଁ ବିଦ୍ୟାଳୟରେ ଛାତ୍ରଛାତ୍ରୀମାନେ ଗଣେଶ ପୂଜା କରିଥା'ନ୍ତି । ଲକ୍ଷ୍ମୀ ଓ ଗଣେଶଙ୍କ ମଧ୍ୟରେ ସମ୍ପର୍କ ଖରାପ ନୁହେଁ । ତେଣୁ ଲକ୍ଷ୍ମୀ ଓ ଗଣେଶଙ୍କର ଏକାଠି ଥିବା ଫଟୋ ରଖି ପୂଜା କଲେ ଧନ ଓ ବିଦ୍ୟା ମିଳିବ । ମାନିବାକୁ ପଡ଼ିବ ଅଂଜଳିଙ୍କୁ । ସେପଟେ ଜଗନ୍ନାଥଙ୍କ ଫଟୋ । ଓଡ଼ିଆଙ୍କର ଆରାଧ୍ୟ ଦେବତା ହେଉଛନ୍ତି ପ୍ରଭୁ ଜଗନ୍ନାଥ । ଆଉ ଜଗନ୍ନାଥଙ୍କୁ ପୂଜା କଲେ  ସବୁ ଦୁଃଖ ଦୂର ହୋଇଯିବ । ଅବଶ୍ୟ ଠାକୁର ଭକ୍ତି ହିଁ ଅଂଜଳିଙ୍କୁ ଜଣେ ବେଶ୍ ଭଲ ନେତା ଭାବେ ପ୍ରତିଷ୍ଠିତ କରାଇଛି । ଯେଉଁଥିପାଇଁ ବିଧାନସଭା କାର୍ଯ୍ୟାଳୟରେ ସେ ପ୍ରଭୁ ଜଗନ୍ନାଥ, ଲକ୍ଷ୍ମୀ ଓ ଗଣେଶଙ୍କ ଫଟୋ ରଖି ପୂଜା

କରୁଛନ୍ତି ଆଉ ସମସ୍ତଙ୍କୁ ମଧ୍ୟ ଲୁଗା ପିନ୍ଧାଇଛନ୍ତି । ଅଂଜଳିଙ୍କର ଧାରଣା ଯେ ସେ ଆଜି ପର୍ଯ୍ୟନ୍ତ ଯାହା ହୋଇଛନ୍ତି ତାହା କେବଳ ଏହି ଠାକୁରଙ୍କ ଯୋଗୁ । ଦେଖାଯାଉ ଅଂଜଳି ଠାକୁର ପୂଜା କରି କେତେଦିନ ରାଜନୀତିର ଶୀର୍ଷରେ ରହୁଛନ୍ତି ।

# କୋଳଥ ଡାଲି ଓ ସିପ୍ରା

**କ**ଥାରେ ଅଛି କୋଳଥ ଡାଲି ଖୁଆଇବ ଯିଏ ହଗେଇ ନେବ ସିଏ । ମାନେ କୋଳଥ ଡାଲି ଖାଇଲେ କୁଆଡ଼େ ଝାଡ଼ା ହୁଏ । କିନ୍ତୁ କୋଳଥ ଡାଲିର ଉପକାରିତା ମଧ୍ୟ ଅନେକ ରହିଛି । କୁଆଡ଼େ ଏହି ଡାଲି ଖାଇଲେ ପେଟ ସଫା ହୋଇଯାଏ । ପୁଣି ପେଟରେ ପଥର ହୁଏନାହିଁ । ଆଉ ଯଦି ପଥର ପେଟରେ ହୋଇଥାଏ ତେବେ ସେହି ପଥରକୁ କୋଳଥ ଭାଙ୍ଗି ଦେଇଥାଏ । କୋଳଥର ମଧ୍ୟ ଏମିତି ଆହୁରି ଅନେକ କିଛି ଉପକାରୀ ଗୁଣ ରହିଛି । କିନ୍ତୁ ଅନେକ ବ୍ୟକ୍ତି କୋଳଥ ଖାଇଲେ ଝାଡ଼ା ହେବ ବୋଲି ଭାବି ଖାଉନାହାନ୍ତି । କେନ୍ଦ୍ରାପଡ଼ା ବିଧାୟିକା ସିପ୍ରା ମଲିକ କିନ୍ତୁ କୋଳଥର ଏହି ଉପକାରିତା ବେଶ୍ ଭଲ ଭାବେ ଜାଣି ନେଇଛନ୍ତି । ଯେଉଁଥିପାଇଁ ସେ କୋଳଥ ଡାଲି ଖାଇବାକୁ ପସନ୍ଦ କରୁଛନ୍ତି । ଏମିତି କୋଳଥ ଡାଲି ଖାଉଖାଉ ସିପ୍ରା ଏବେ କୋଳଥ ପ୍ରେମରେ ପଡ଼ିଗଲେଣି । ମାନେ କୋଳଥ ନିଶା । ସିପ୍ରାଙ୍କୁ କୋଳଥ ଡାଲି ନିଶା ଏତେ ଘାରେ ଯେ ଯେଉଁଦିନ କୋଳଥ ଡାଲି ହୋଇଛି ବୋଲି ସେ ଜାଣିବେ ସେଦିନ ଜାଣ ତାଙ୍କ ଭାତ ଗୁଣ୍ଡା ପରେ ଗୁଣ୍ଡା ପାଟି ଭିତରକୁ ଚାଲିଯିବ । ଏମିତି ତ କୋଳଥ ଡାଲିର ଏକ ସ୍ୱାଦ ରହିଛି । କୁଆଡ଼େ ଆମ୍ବୁଲ ପକାଇ କୋଳଥ ଡାଲି ରନ୍ଧାଗଲେ ତାହା ବେଶ୍ ସ୍ୱାଦିଷ୍ଟ ହୋଇଥାଏ । ଅବଶ୍ୟ ଏଠାରେ ଆମେ ଜାଣିନାହୁଁ ସିପ୍ରା ଯେଉଁ କୋଳଥ ଡାଲି ଖାଆନ୍ତି ତାହା ଆମ୍ବୁଲ ପକାଇ ରନ୍ଧା ହୁଏ କି ନାହିଁ । ତେବେ ଜାଣତରେ ହେଉ କି ଅଜାଣତରେ ହେଉ ସିପ୍ରା କୋଳଥ ଡାଲି ଖାଇବା ପରେ ତାହା ତାଙ୍କ ପାଇଁ ଔଷଧୀୟ ଗୁଣ ଦେଉଛି କି ନାହିଁ ଏହା କେବଳ ସିପ୍ରା ହିଁ କହିପାରିବେ । କୋଳଥ ଡାଲି ଖାଇବା ସମ୍ପର୍କରେ ସିପ୍ରାଙ୍କୁ ନେଇ ଯେ କେବଳ ଚର୍ଚ୍ଚା ହୁଏ ତାହା ନୁହେଁ । ତାଙ୍କର ପଖାଳ ଭାତ ସାଙ୍ଗକୁ ସଜନା ଶାଗ ଖାଇବାକୁ ନେଇ ମଧ୍ୟ ଚର୍ଚ୍ଚା ହୁଏ । ମାନେ ପଖାଳ ଭାତ ସହିତ ସଜନା ଶାଗ ଭଜା ହୋଇଗଲେ ସିପ୍ରାଙ୍କର ଆଉ କିଛି ତରକାରୀ ବି ଦରକାର ହୁଏନାହିଁ । ସତେ ଯେମିତି କେଉଁ ଗାଉଁଲୀ ଅଂଚଳରୁ ସିପ୍ରା ଆସିଛନ୍ତି । ଅବଶ୍ୟ ଗାଉଁଲୀ ଖାଦ୍ୟର ପ୍ରେମରେ ସିପ୍ରା ପଡ଼ିଥିବାରୁ ତାହା ତାଙ୍କର ରାଜନୀତିକୁ ମଧ୍ୟ ବେଶ୍ ଦୃଢ଼ କରିପାରୁଛି । ଦେଖାଯାଉ ସିପ୍ରା କେତେଦିନ କୋଳଥ ଡାଲି ଆଉ ସଜନା ଶାଗ ପ୍ରେମରେ ରହିପାରୁଛନ୍ତି ।

# ପାଂଚଥରର ବିଧାୟକ ମହାରଥୀ ଓ ନବୀନ

ବିଧାନସଭାରେ କେତେବେଳେ କିଏ କହୁକହୁ ନିଜର ମନକଥା କହିଦିଅନ୍ତି । ଏମିତି ସେଦିନ ପ୍ରଦୀପ ମହାରଥୀ ଉଠିଲେ କହିବା ପାଇଁ । ସେ କହିବା ସମୟରେ ଦେଖାଗଲା ବାଙ୍କୀ ବିଧାୟକ ପ୍ରଭାତ ତ୍ରିପାଠୀ ତାଙ୍କ ପଛପାଖରେ ଠିଆ ହୋଇଥିବା ବିଧାୟକଙ୍କ ସହିତ ଆଲୋଚନା କରୁଛନ୍ତି । ପ୍ରଦୀପ ଖୁବ୍ ଜୋର୍‌ରେ ପାଟିକଲେ । ଆଉ କହିଲେ- ବାଙ୍କୀ ବିଧାୟକ କଥାବାର୍ତ୍ତା ବନ୍ଦ କରନ୍ତୁ । କିନ୍ତୁ ପ୍ରଦୀପ ମହାରଥୀଙ୍କ କଥା ପ୍ରଭାତ ତ୍ରିପାଠୀ ଶୁଣିପାରିଲେ ନାହିଁ । ସେ ପୂର୍ବପରି ତାଙ୍କ କଥାବାର୍ତ୍ତା ଜାରି ରଖିଲେ । ପ୍ରଭାତ ତ୍ରିପାଠୀଙ୍କୁ ଲକ୍ଷ୍ୟ କରି ମହାରଥୀ କହିଲେ- କଥାବାର୍ତ୍ତା ବନ୍ଦ କର । ତମେ ମନ୍ତ୍ରୀ ହେବ । ଏହାପରେ ଦେଖାଗଲା ପ୍ରଭାତ ତ୍ରିପାଠୀ ତାଙ୍କ କଥାବାର୍ତ୍ତା ବନ୍ଦ କରିଦେବାର । ଏହି ସମୟରେ ମହାରଥୀ କହିଲେ- ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଜଣେ ଦରଦି ମଣିଷଟିଏ । ସେ ସମସ୍ତଙ୍କ ସହିତ ମିଶିବାକୁ ଚେଷ୍ଟା କରନ୍ତି । ଯେଉଁ ଦଳର ନେତା ହୁଅନ୍ତୁନା କାହିଁକି ଯଦି ସେମାନେ ଅସୁବିଧାରେ ପଡ଼ିଯାଆନ୍ତି ତେବେ ତାଙ୍କୁ ସାହାଯ୍ୟ କରନ୍ତି ନବୀନ ପଟ୍ଟନାୟକ । ଧନୁର୍ଜୟ ସିଧୁ ହୁଅନ୍ତୁ କି ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ର ହୁଅନ୍ତୁ ସମସ୍ତଙ୍କୁ ତୁରନ୍ତ ଚିକିତ୍ସା କରାଯିବା କ୍ଷେତ୍ରରେ ବିମାନ କି ହେଲିକପ୍ଟର ସବୁ ଯୋଗାଇ ଦିଅନ୍ତି ନବୀନ ପଟ୍ଟନାୟକ । ତେଣୁ ଏମିତି ଜଣେ ନେତା ମିଳିବା କଷ୍ଟକର । ସେ ନିଜେ ପାଂଚଥର ବିଧାୟକ ହେଲେଣି । ନବୀନ ପଟ୍ଟନାୟକଙ୍କର ଏହି ମହନୀୟତା ପାଇଁ ସେ ତାଙ୍କ ସହିତ ରହିଛନ୍ତି । ନବୀନଙ୍କର ଦରଦି ହୃଦୟ ସମ୍ପର୍କରେ ମହାରଥୀ ଯେଉଁ ଉଦାହରଣ ଦେଲେ ତାହା କିନ୍ତୁ ବେଶ୍ ଗ୍ରହଣୀୟ ହୋଇଥିଲା ।

# ଯୁଝିଲା ବେଳକୁ ଗୋଟା

ବିଧାନସଭା ଅଧିବେଶନ ଚାଲିଥାଏ । ହଠାତ୍ ଦେଖାଗଲା ନୟାଗଡ଼ ବିଧାୟକ ସତ୍ୟନାରାୟଣ ପ୍ରଧାନ ତାଙ୍କ ଆସନ ନିକଟରେ ଠିଆ ହେଲେ । ବାଚସ୍ପତି ପ୍ରଦୀପ ଅମାତ୍ ମଧ ତାଙ୍କୁ କହିବା ପାଇଁ ସୁଯୋଗ ଦେଲେ । ଏହାପରେ ଦେଖାଗଲା ସତ୍ୟ ନାରାୟଣଙ୍କ ସହିତ ତାଙ୍କ ପାଖରେ ବସିଥିବା କାଶୀନାଥ ମଲ୍ଲିକ, ଖଣ୍ଡପଡ଼ା ବିଧାୟକ ସିଦ୍ଧାର୍ଥ ଶେଖର ସିଂହ ସେମାନଙ୍କ ନିଜନିଜ ଆସନ ନିକଟରେ ଠିଆ ହେଲେ । ପୁଣି ଦେଖାଗଲା ସରକାରୀ ଦଳ ଉପମୁଖ୍ୟ ସଚେତକ ତଥା ନୟାଗଡ଼ ବିଧାୟକ ଅରୁଣ ସାହୁ ମଧ ତାଙ୍କ ଆସନ ନିକଟରେ ଠିଆ ହେବାର । ସତ୍ୟନାରାୟଣ ପ୍ରଧାନ କହିଲେ- ନୟାଗଡ଼ରେ ଲିଡ୍ ବ୍ୟାଙ୍କର ବୈଠକ ଡକାଯାଇଛି । ଏଥିରେ ଜିଲାର ୪ ଜଣ ବିଧାୟକ

ଯୋଗ ଦେବାର ଆବଶ୍ୟକତା ରହିଛି । ବାଚସ୍ପତି ପୂର୍ବରୁ ମଧ୍ୟ ନିର୍ଦ୍ଦେଶ ଦେଇଛନ୍ତି ଯେ, ବିଧାନସଭା ଅଧିବେଶନ ଚାଲିଥିବା ବେଳେ ଜିଲାରେ ସରକାରୀ ସ୍ତରରେ ବୈଠକ ଡକାଯାଇପାରିବ ନାହିଁ ବୋଲି । ଏହାକୁ ଉଲ୍ଲଂଘନ କରାଯାଇଛି । କେବଳ ଗୋଟିଏ ବୈଠକ ନୁହେଁ ଆହୁରି ଅନେକ ବୈଠକ ମଧ୍ୟ ଡକାଯାଇଛି ବୋଲି ସତ୍ୟ ନାରାୟଣ ପ୍ରଧାନ ବାଚସ୍ପତିଙ୍କର ଦୃଷ୍ଟି ଆକର୍ଷଣ କଲେ । ପ୍ରଦୀପ ମହାରଥୀ ଏ ସମ୍ପର୍କରେ ବାଚସ୍ପତିଙ୍କର ରୁଲିଂ ଚାହିଁଲେ । ଆଉ ବାଚସ୍ପତି ବିଧାନସଭା ନିର୍ଦ୍ଦେଶର ଉଲ୍ଲଂଘନ କରୁଥିବାରୁ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ପାଇଁ ମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଇଥିଲେ । ନୟାଗଡ଼ ଜିଲାରେ ରହିଛି ୪ଟି ନିର୍ବାଚନମଣ୍ଡଳୀ । ଆଉ ଏହି ୪ଟି ନିର୍ବାଚନମଣ୍ଡଳୀର ସମସ୍ତ ବିଧାୟକ ହେଉଛନ୍ତି ବିଜେଡି ଦଳର । ସେମାନଙ୍କ ମଧ୍ୟରେ ଏମିତି ଯେ ମନୋମାଳିନ୍ୟ ଘଟୁନାହିଁ ତାହା ନୁହେଁ । କିନ୍ତୁ ଯୁଝିଲା ବେଳକୁ ଗୋଟା ପରି ସେମାନେ ବିଧାନସଭାରେ ଦେଖାଇ ଦେଇଛନ୍ତି । ଅନ୍ୟ ଜିଲାର ବିଧାୟକଙ୍କ ପାଇଁ ଏହା ଏକ ଦୃଷ୍ଟାନ୍ତ ହେବ ନିଶ୍ଚିତ । ଜିଲାର ବିଧାୟକମାନେ ଯଦି ଏକାଠି ହୋଇ କାମ କରିବେ ତା' ହେଲେ ଜିଲାର ବିକାଶ ହେବ ହିଁ ହେବ । ଦେଖାଯାଉ ନୟାଗଡ଼ ଜିଲାର ୪ ଜଣ ବିଧାୟକମାନେ କେବଳ ବିଧାନସଭାରେ ଅନ୍ୟ ବିଧାୟକଙ୍କ ଦୃଷ୍ଟି ଆକର୍ଷଣ କରିବା ପାଇଁ ଏଭଳି ଏକାଠି ହୋଇଥିଲେ ନା ଜିଲାର ବିକାଶ ପାଇଁ ଏକାଠି ହୋଇଛନ୍ତି ।

# ବାଘ ଓ ଲଲାଟେନ୍ଦୁ

**ଲ**ଲାଟେନ୍ଦୁ ବିଦ୍ୟାଧର ମହାପାତ୍ର ଯେତେବେଳେ ଛାତ୍ର କଂଗ୍ରେସର ଡୋରି ହାତରେ ଧରିଥିଲେ ସେତେବେଳେ ତାଙ୍କୁ କଂଗ୍ରେସ ନେତାମାନେ ମହାବଳବାଘ ବୋଲି କହୁଥିଲେ । ଏହାର କାରଣ ଆଉ କିଛି ନଥିଲା । କୁଆଡ଼େ ରାଜନୀତିରେ ସେତେବେଳେ ଯେଉଁ ଶୀକାର ସେ କରିବାକୁ ଚାହୁଁଥିଲେ ତାହା ହିଁ କରୁଥିଲେ । ସାରା ଓଡ଼ିଶାରେ ଛାତ୍ର କଂଗ୍ରେସକୁ ବେଶ୍ ଶକ୍ତିଶାଳୀ ସେ କରିଥିଲେ । ପୁଣି ଯେତେବେଳେ ତାଙ୍କ ପାଖକୁ ଯୁବ କଂଗ୍ରେସର ଡୋରି ଆସିଲା ସେତେବେଳେ ମଧ୍ୟ ମହାବଳବାଘ ପରି ଶକ୍ତି ତାଙ୍କ ପାଖରେ ଥିଲା । ସେ ବି ସେତେବେଳେ ଯୁବ କଂଗ୍ରେସକୁ ଏମିତି ଶକ୍ତିଶାଳୀ କରିଥିଲେ ଯେ ସତେ ଯେମିତି କଂଗ୍ରେସ କୁହାଗଲେ ଯୁବ କଂଗ୍ରେସକୁ ହିଁ ବୁଝାଯାଉଥିଲା । ଓଡ଼ିଆରେ ଏକ ପ୍ରବାଦ ଅଛି- ଯା' ବାପା ବଢ଼େ ଘୋଡ଼ା ତା' ପୁଅ ଥୋଡ଼ାଥୋଡ଼ା । ଏହି ପ୍ରସଙ୍ଗରେ ଆମେ ଲଲାଟେନ୍ଦୁ ବିଦ୍ୟାଧର ମହାପାତ୍ରଙ୍କ ପୂର୍ବପୁରୁଷଙ୍କ ଆଡ଼କୁ ଯିବାନାହିଁ । ଆମେ କେବଳ ଲଲାଟେନ୍ଦୁଙ୍କ ଆଡ଼କୁ ଯିବା । ମାନେ ଲଲାଟେନ୍ଦୁ ଛାତ୍ର କଂଗ୍ରେସ ଆଉ ଯୁବ କଂଗ୍ରେସର ନେତୃତ୍ୱ ନେଉଥିବା ବେଳେ ତାଙ୍କର ସଉକ ଥିଲା ଜଙ୍ଗଲ ଭିତରକୁ ଯାଇ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ

କରିବା । ପୁଣି ନିକଟରୁ ମହାବଳବାଘକୁ ଦେଖିବା ଆଉ ଜଙ୍ଗଲରେ ଡେୟାରଡେଭିଲ ହୋଇ ନିଜେ ବୁଲିବା । ଏଥିରୁ ଲଲାଟେନ୍ଦୁଙ୍କର କିପରି ମନ ମହାବଳବାଘ ପରି ଶକ୍ତିଶାଳୀ ତାହା ମଧ୍ୟ ସେତେବେଳେ ବାରି ହୋଇଯାଉଥିଲା । ଏପରିକି ବେଳେବେଳେ ଲଲାଟେନ୍ଦୁ ମଧ୍ୟ ଜଙ୍ଗଲ ମଧ୍ୟରେ ମହାବଳବାଘଙ୍କ ମୁହାଁମୁହିଁ ହୋଇଛନ୍ତି । ଏମିତି ଅନେକ ଭାବନ୍ତି ଯେହେତୁ ଲଲାଟେନ୍ଦୁ ମହାବଳବାଘଙ୍କ ସହିତ ମୁହାଁମୁହିଁ ହେଉଛନ୍ତି ତେଣୁ ବାଘ ପ୍ରତି ତାଙ୍କର ସଉକ ରହିଥିବ ବୋଲି । ଜଙ୍ଗଲ ମଧ୍ୟରେ ରହୁଥିବା ଆଦିବାସୀଙ୍କ ସହିତ ମଧ୍ୟ ସମ୍ପର୍କ ନିବିଡ଼ କରନ୍ତି ଲଲାଟେନ୍ଦୁ । ଲଲାଟେନ୍ଦୁ ମଧ୍ୟ ଗୋଟିଏ କି ଦୁଇଟି ନୁହେଁ ବିଭିନ୍ନ ଜାତିର ବହୁ କୁକୁର ପୋଷିଛନ୍ତି । ଆଦିବାସୀମାନେ ଏହା ଜାଣିବା ପରେ ଲଲାଟେନ୍ଦୁ ବାଘ ପୋଷି ପାରିବେ ବୋଲି ଭାବିଲେ । ହଠାତ୍ କେହି ଜଣେ ଲଲାଟେନ୍ଦୁଙ୍କ ପାଖକୁ ଆସି କହିଲେ- ବାବୁ, ତୋ ପାଇଁ ଏକ ମହାବଳବାଘଛୁଆ ଆଣିଛି । ଖାଲି ଭାତ, ଡାଲି, କ୍ଷୀର ଦେଇଦେଲେ ସେ ପୋଷା ମାନିଯିବ । ଲଲାଟେନ୍ଦୁ ବାଘଛୁଆକୁ ରଖିବା ପାଇଁ ମନା କଲେ । କିନ୍ତୁ ଆଦିବାସୀ ଜଣଙ୍କ ବାଘଛୁଆକୁ ଜବରଦସ୍ତ ଲଲାଟେନ୍ଦୁଙ୍କୁ ଦେଇ ଚାଲିଗଲେ । ଲଲାଟେନ୍ଦୁ ବାଘଛୁଆକୁ କ୍ଷୀର, ଭାତ ଦେଇ ପୋଷିଲେ । ଭାବିଲେ ବୋଧହୁଏ କୁକୁର ପରି ବାଘଛୁଆ ପୋଷା ମାନିଯିବ । ଦିନେ ଲଲାଟେନ୍ଦୁ ଶୋଇଛନ୍ତି । ନିଦ ଭାଙ୍ଗିଲା ବେଳକୁ ଦେଖିଲେ ବାଘଛୁଆଟି ତାଙ୍କୁ ଚାହିଁ ରହିଛି । ହଠାତ୍ ଦେଖାଗଲା ବାଘଛୁଆଟି କାନ୍ଥ ଆଡ଼କୁ ଚାଲିଗଲା । ଆଉ କାନ୍ଥକୁ ରାମ୍ପୁଡ଼ି ରାମ୍ପୁଡ଼ି ଚଢ଼ିବାକୁ ଲାଗିଲା । ପୁଣି କିଛି ସମୟ ପରେ ଲଲାଟେନ୍ଦୁ ଶୋଇଥିବା ଖଟ ଉପରକୁ ସେ ଆସିଗଲା । ଶେଯ ଉପରେ ପଡ଼ିଥିବା ବେଡ଼ସିଟ୍‌କୁ ନଖରେ ଉଠାଇ ବାଘଛୁଆଟି କାମୁଡ଼ିଲା । ବାଘଛୁଆଟିକୁ ଲଲାଟେନ୍ଦୁ ସେଠାରୁ ଯିବା ପାଇଁ ଯେତେ ପାଟି କଲେ ମଧ୍ୟ ସେ ଆଉ କଥା ମାନିଲା ନାହିଁ । ଦିନେ କି ଦୁଇଦିନ ନୁହେଁ ଏମିତି କିଛିଦିନ ବାଘଛୁଆର ଉତ୍ପାତ ଚାଲିଲା । ଆଉ ତାହାର ବୟସ ଯେତିକି ବଢ଼ିଲା ଉତ୍ପାତ ମଧ୍ୟ ସେତିକି ବଢ଼ିବାକୁ ଲାଗିଲା । ମାତ୍ର ହାତଗଣତି କେତୋଟି ଦିନ ବାଘଛୁଆ ରଖିଥିଲେ ଲଲାଟେନ୍ଦୁ । ଆଉ ସେତିକିରେ ସେ ହୋଇଯାଇଥିଲେ ନାକେଦମ୍ । ସେଥିରୁ ଲଲାଟେନ୍ଦୁ ଜାଣିପାରିଥିଲେ ଯେ କୁକୁର ପରି ବାଘ ପ୍ରଭୁଭକ୍ତ ନୁହେଁ । ଆବଶ୍ୟକ ପଡ଼ିଲେ ପ୍ରଭୁଙ୍କୁ ବି ସେ ଖାଇ ହଜମ କରିଦେବ । ଯେଉଁଥିପାଇଁ କାଳବିଳମ୍ବ ନକରି ବାଘଛୁଆଟିକୁ ସେ ଜଙ୍ଗଲ ବିଭାଗକୁ ଦେଇଦେଇଥିଲେ । ତେବେ କେଜାଣି କାହିଁକି ଆଦିବାସୀମାନଙ୍କର ଏକ ଧାରଣା ରହୁଛି ଯେ ଲଲାଟେନ୍ଦୁ ହେଉଛନ୍ତି ଜଣେ ବାଘ ପରି ନେତା । ଆଉ ତାଙ୍କର ବାଘ ପ୍ରୀତି ଥିବ ବୋଲି । ଏଭଳି ଧାରଣା ଅବିଭକ୍ତ କୋରାପୁଟ ଜିଲା ଆଦିବାସୀମାନଙ୍କର ଏବେବି ରହିଛି । ଏମିତି ଦିନେ ଲଲାଟେନ୍ଦୁ ଶୋଇଥିଲେ । ହଠାତ୍ ଫୋନ୍ ବାଜି ଉଠିଲା । ଫୋନ୍‌ଟି ଜଣେ ଆଦିବାସୀ କରିଥିଲେ । ଲଲାଟେନ୍ଦୁ ଫୋନ୍ ଉଠାଇଲେ । ସେପଟୁ ସ୍ୱର ଆସିଲା-

ବାବୁ, ତୋ' ଘର ଆଗରେ ଅଛୁ । ଦୁଇଟି ଚିତାବାଘଛୁଆ ଆଣିଛୁ । ଆମେ ଜାଣିଛୁ ତୁ ବାଘକୁ ଭଲ ପାଉ ବୋଲି । ଏହି ଚିତାବାଘ ଛୁଆ ଦୁଇଟିକୁ ରଖ । ସେମାନେ ପୋଷା ମାନିଯିବେ । ଖାଲି ଭାତ, ଡାଲି ଖାଇବାକୁ ଦେବୁ । ବାଘଛୁଆ କଥା ଶୁଣିବା ମାତ୍ରେ ଲଲାଟେନ୍ଦୁ ଚମକି ଉଠିଲେ । କହିଲେ- ଯେମିତି ବାଘଛୁଆକୁ ଆଣିଛ ସେମିତି ନେଇ ଚାଲିଯାଅ । ତାଙ୍କର ବାଘକୁ ପୋଷିବାର ନାହିଁ । ଆଦିବାସୀ ଜଣଙ୍କ କହିଲେ- ବାବୁ, ଖୋଦ୍ ତୋ ପାଇଁ ବାଘଛୁଆ ଆଣିଛୁ । ପୁଣି ଏତେ ବାଟରୁ ଆସିଛୁ । ତୁ ବାଘଛୁଆ ନନେଲେ ଆଉ କିଏ ନେବ । ତତେ ଯେମିତି ହେଲେ ବାଘଛୁଆକୁ ରଖିବାକୁ ହେବ । ଏମିତି ଆଦିବାସୀଙ୍କ ପ୍ରତି ଲଲାଟେନ୍ଦୁଙ୍କର କେଜାଣି କାହିଁକି ପିଲାଦିନୁ ବେଶ୍ ଦୁର୍ବଳତା ରହିଛି । ଆଉ ଯେତେବେଳେ ସେହି ଆଦିବାସୀ ଜଣଙ୍କ ବାଘଛୁଆକୁ ଦେଇ ଚାଲିଯିବା ପାଇଁ ଅନୁରୋଧ କଲେ ସେତେବେଳେ ଲଲାଟେନ୍ଦୁ ଜାଣିପାରିଲେ ଯେ କାହିଁକି ସେ ଏପରି ଅନୁରୋଧ କରୁଛନ୍ତି ବୋଲି । ଲଲାଟେନ୍ଦୁ ତାଙ୍କର ଜଣେ ଲୋକଙ୍କ ହାତରେ ଏକ ହଜାର ଟଙ୍କା ଦେଇ ଘର ବାହାରକୁ ପଠାଇଲେ । ଆଉ ବାଘଛୁଆ ଦୁଇଟିକୁ ରଖି ସେହି ଆଦିବାସୀଙ୍କୁ ସେ ଏକ ହଜାର ଟଙ୍କା ଦେଲେ ଏବଂ ତୁରନ୍ତ ସେମାନଙ୍କୁ କୋରାପୁଟ ଚାଲିଯିବା ପାଇଁ କହିଲେ । ଅବଶ୍ୟ ବାଘଛୁଆ ଦୁଇଟି ପୂର୍ବପରି ମହାବଳ ନଥିଲେ । ତାହା ଚିତାବାଘ ଥିଲେ । କିନ୍ତୁ ଲଲାଟେନ୍ଦୁ ଜାଣି ଯାଇଥିଲେ ଯେ ବାଘ ଜାତିଟି ଆଦୌ ମଣିଷ ପ୍ରତି ବିଶ୍ୱସ୍ତ ନୁହନ୍ତି ବୋଲି । ତେଣୁ ସେହି ଚିତାବାଘ ଛୁଆ ଦୁଇଟିକୁ ପାଖରେ ନରଖି ସେ ତୁରନ୍ତ ତାହାକୁ ଜଙ୍ଗଲ ବିଭାଗକୁ ଦେବାର ବ୍ୟବସ୍ଥା କଲେ । ଇଏ ଗଲା ଲଲାଟେନ୍ଦୁଙ୍କର ବାଘଛୁଆ ପୋଷିବା ପ୍ରସଙ୍ଗ । ତେବେ ବାଘ ସମ୍ପର୍କୀୟ ଆଉ କିଛି ପ୍ରସଙ୍ଗ ମଧ୍ୟ ଲଲାଟେନ୍ଦୁଙ୍କ ସହିତ ଯୋଡ଼ି ହୋଇରହିଛି । ଏମିତି ବିଭିନ୍ନ ସମୟରେ ଆଦିବାସୀମାନେ ବାଘ ଶିକାର କରି ତାହାର ଚମଡ଼ାକୁ ଲଲାଟେନ୍ଦୁଙ୍କୁ ଉପହାର ଦେବାକୁ ଆସନ୍ତି । ଲଲାଟେନ୍ଦୁଙ୍କ କଥା ଆଉ କାମ ବାଘ ପରି ହୋଇଥିବାରୁ ସେମାନଙ୍କର ଧାରଣା ଥାଏ ଯେ ଲଲାଟେନ୍ଦୁ ବାଘ ଚମଡ଼ାକୁ ଭଲ ପାଉଥିବେ ବୋଲି । ଜିଅନ୍ତା ବାଘ ନହେଲେ ମଧ୍ୟ ବାଘର ଚମଡ଼ା ଲଲାଟେନ୍ଦୁଙ୍କୁ ଦେଲେ ସେ ନିଶ୍ଚିତ ଖୁସି ହୋଇଯିବେ ବୋଲି ସେମାନଙ୍କର ଧାରଣା ରହିଛି । କିନ୍ତୁ ଲଲାଟେନ୍ଦୁଙ୍କ ମନରେ ବାଘ ପ୍ରଥମରୁ ଭୟ ସୃଷ୍ଟି କରିଥିବାରୁ ବାଘର ଚମଡ଼ା ହେଉ କି ନଖ ହେଉ କି ଦାନ୍ତ ହେଉ କେଉଁଟିକୁ ମଧ୍ୟ ସେ ପାଖରେ ରଖିବାକୁ ଚାହାନ୍ତି ନାହିଁ । ଆଦିବାସୀମାନେ ଯେତେବେଳେ ବାଘ ଚମଡ଼ା ଉପହାର ଦେବା ପାଇଁ ତାଙ୍କ ପାଖକୁ ଆସୁଛନ୍ତି ସେତେବେଳେ ସଂପୃକ୍ତ ଆଦିବାସୀଙ୍କୁ ଲଲାଟେନ୍ଦୁ କିଛି ଟଙ୍କା ଦେଉଛନ୍ତି ଆଉ ବାଘ ଚମଡ଼ାକୁ ମଧ୍ୟ ତାଙ୍କରି ହାତରେ ଫେରାଇ ଦେଉଛନ୍ତି । ବାଘକୁ ନେଇ ଲଲାଟେନ୍ଦୁଙ୍କର ଯେଉଁ ତିକ୍ତ ଅଭିଜ୍ଞତା ଅଛି ତାହାକୁ ବେଳେବେଳେ ସେ

ଖୋଲିଦିଅନ୍ତି । ଲଲାଟେନ୍ଦୁ ତାଙ୍କର ବାଘ ଅଭିଜ୍ଞତା ଦରବାରରେ ବଖାଣିବା ବେଳେ ସେଠାରେ ଥିବା ଲୋକମାନେ ଲଲାଟେନ୍ଦୁଙ୍କ ମୁହଁକୁ 'ଥ' ହୋଇ ଚାହିଁରହିଥା'ନ୍ତି । ଲଲାଟେନ୍ଦୁ ସଭାସମିତିରେ ରାଜନୈତିକ ଭାଷଣ ନଦେଇ ଯଦି ତାଙ୍କର ବାଘ ଉପରେ ଥିବା ଅଭିଜ୍ଞତାକୁ ବଖାଣନ୍ତେ ତେବେ ସଭାରେ ପ୍ରବଳ ଗହଳି ହୁଅନ୍ତା ନିଶ୍ଚିତ । ଦେଖାଯାଉ ଲଲାଟେନ୍ଦୁ ସଭାସମିତିରେ ବାଘ କାହାଣୀ କହୁଛନ୍ତି ନା ନାହିଁ ।

# ପ୍ରଭାତଙ୍କ ସମାଜସେବା

**କେ**ବଳ ଚୌଦ୍ୱାର-କଟକ ନୁହେଁ କଟକ ସହର ଓ ଏହାର ଆଖପାଖ ଅଂଚଳରେ ପ୍ରଭାତଙ୍କ ସମାଜସେବା ସମ୍ପର୍କରେ ଉଣାଅଧିକେ ପ୍ରାୟ ଅଧିକାଂଶ ବ୍ୟକ୍ତି ଜାଣିଛନ୍ତି । ଅନେକ ମଧ ଭାବନ୍ତି ଯେ ବିପଦ ପଡ଼ିବା ବେଳେ ପ୍ରଭାତଙ୍କୁ ସ୍ମରଣ କରିଦେଲେ ସେହି ବିପଦରୁ ସେ ଉଧାର ପାଇଯିବେ ବୋଲି । ଗୋଟିଏ ଦିନର ଘଟଣା । ଏହି ଘଟଣାରୁ ସ୍ପଷ୍ଟ ହୋଇଯିବ ପ୍ରଭାତଙ୍କ ସମାଜସେବା ନିଶା କିପରି । ରାତି ପ୍ରାୟ ସେତେବେଳକୁ ଦୁଇଟା ପାଖାପାଖି ହେଲାଣି । କଟକ ଜିଲା ବାରଙ୍ଗ ବ୍ଲକ ଅନ୍ତର୍ଗତ ମଇଧରପଡ଼ା ଗ୍ରାମର ବାଟୁଆ ନାମକ ଜନୈକ ବ୍ୟକ୍ତିଙ୍କ ପାଖରୁ ଫୋନ୍ ଆସିଲା । ଅବଶ୍ୟ ନିଜେ ବାଟୁଆ ସେହି ଫୋନ୍ କରି ନଥିଲେ । ବାଟୁଆଙ୍କ ସମ୍ପର୍କୀୟ ପ୍ରଭାତଙ୍କ ପାଖକୁ ଫୋନ୍ କରି କହିଲେ ଯେ, ବାଟୁଆ ଶୋଇଥିବା ବେଳେ ନାଗସାପ ତାଙ୍କ ମୁଣ୍ଡକୁ ଚୋଟ ମାରିଛି ବୋଲି । ବାଟୁଆ ଆଉ ଆଖି ଫିଟାଉ ନାହିଁ କିନ୍ତୁ ନିଶ୍ୱାସ ନେଉଛି । ଟେଲିଫୋନ୍‌ରେ ପ୍ରଭାତ ପଚାରିଲେ- ସାପଟି କୁଆଡ଼େ ଗଲା ବୋଲି । ଉତର ମିଳିଲା- ସାପକୁ ହାଣି ଦୁଇଖଣ୍ଡ କରିଦିଆଯାଇଛି । ପ୍ରଭାତ କହିଲେ- ସାପର ସେହି ଦୁଇଖଣ୍ଡକୁ ଏକ ବସ୍ତାରେ ବାନ୍ଧି ତୁରନ୍ତ ବାଟୁଆକୁ ଧରି କଟକ ବଡ଼ମେଡ଼ିକାଲକୁ ଚାଲିଆସ । ସେଠାରେ ସେ ତାଙ୍କୁ ଅପେକ୍ଷା କରିଥିବେ । ବାଟୁଆକୁ ଧରି ତାଙ୍କ ପରିବାର ଲୋକ କଟକ ବଡ଼ମେଡ଼ିକାଲରେ ପହଂଚିଲେ । ପ୍ରଭାତ ତୁରନ୍ତ ବାଟୁଆଙ୍କୁ ଚିକିତ୍ସା ପାଇଁ ବଡ଼ ଡାକ୍ତରଖାନାର ବହିଁ ବିଭାଗରେ ଭର୍ତି କଲେ । କିନ୍ତୁ ଡାକ୍ତର କହିଲେ- ପ୍ରଥମେ ରକ୍ତପରୀକ୍ଷା ତା' ପରେ ଚିକିତ୍ସା । ଏତିକିରେ ପ୍ରଭାତଙ୍କ ଆଖି ଟେରା ହୋଇଗଲା । ରକ୍ତପରୀକ୍ଷା କରି ରିପୋର୍ଟ ଆସିବା ବେଳକୁ ବାଟୁଆର ଯେ ଜୀବନ ଚାଲିଯାଇ ନଥିବ ତାହା କହି ହେବନାହିଁ । ନାଗସାପ ମୁଣ୍ଡକୁ ଚୋଟ ମାରିଛି । ଆଉ ବାଟୁଆର ଆଖି ଫିଟୁନାହିଁ । ପ୍ରଭାତଙ୍କ ମୁଣ୍ଡରେ ଏକ ବୁଦ୍ଧି ପଶିଲା । ସେ ଡାକ୍ତରଙ୍କୁ କହିଲେ- ଏଇ ଦେଖନ୍ତୁ ବସ୍ତାକୁ । ସେଥିରେ ନାଗସାପଟିଏ ଦୁଇଗଡ଼ ହୋଇରହିଛି । ସେହି ନାଗସାପଟି ବାଟୁଆର ମୁଣ୍ଡକୁ ଚୋଟ ମାରିଥିଲା । ଡାକ୍ତର କହିଲେ- ରକ୍ତପରୀକ୍ଷା ନକଲେ ସାପ କାମୁଡ଼ାର ଚିକିତ୍ସା କରାଯାଇପାରିବ ନାହିଁ । ପ୍ରଭାତ ଯୁକ୍ତି କରି କହିଲେ- ସେ

ହେଉଛନ୍ତି ଲୋକପ୍ରତିନିଧି । ତାଙ୍କର ଲୋକଙ୍କ ସେବା କରିବା ହେଉଛି ମୂଳ ଲକ୍ଷ୍ୟ । ଭଲ ରୂପେ ଜଣାପଡ଼ିଛି ଯେ ବାଟୁଆର ମୁଣ୍ଡକୁ ନାଗସାପ ଚୋଟ ମାରିଛି । ତେଣୁ ଆଉ ରକ୍ତପରୀକ୍ଷା ନକରି ତୁରନ୍ତ ସାପ କାମୁଡ଼ାର ଚିକିତ୍ସା କରାଯାଉ । ବାଟୁଆର ଯାହା କିଛି ଅସୁବିଧା ହେବ ତାହାକୁ ସେ ନିଜେ ମୁଣ୍ଡାଇ ନେବେ । ଏହାପରେ ଡାକ୍ତର ସାପ କାମୁଡ଼ାର ଚିକିତ୍ସା କଲେ । ରାତିଅଧରେ ଚିକିତ୍ସା ପାଇଁ ଆବଶ୍ୟକ ହେଲା ଟଙ୍କା । ସେତେବେଳକୁ ପ୍ରଭାତଙ୍କ ପାଖରେ ଟଙ୍କା ନଥାଏ । ସେ ମୁଦି ବନ୍ଧା ପକାଇ ଔଷଧ ଆଣିଲେ । ବାଟୁଆର ଚିକିତ୍ସା ହେଲା । ସାତଦିନ ପରେ ବାଟୁଆର ଆଖି ଫିଟିଲା । ଆଉ ବାଟୁଆ ସୁସ୍ଥ ହୋଇ ଘରକୁ ଫେରିଲା । ଏସବୁ ହେଉଛି ସମାଜସେବାର ଗୋଟିଏ ଗୋଟିଏ ସଫଳ ଦିଗ । ଏମିତି କଟକ ବଡ଼ଡାକ୍ତରଖାନାରେ ରୋଗୀଙ୍କୁ ଚିକିତ୍ସା କରିବା କ୍ଷେତ୍ରରେ ବେଳେବେଳେ ପ୍ରଭାତଙ୍କୁ ରାତି ପରେ ରାତି ଉଜାଗର ହେବାକୁ ପଡ଼େ । ପୁଣି ମହାନଦୀ ଭିତରକୁ ଯେତେବେଳେ ବସ୍ ଖସିପଡ଼ିଲା ଆଉ ବସ୍‌ରେ ଥିବା ବହୁ ବ୍ୟକ୍ତିଙ୍କର ମୃତ୍ୟୁ ଘଟିଥିଲା ସେତେବେଳେ ମଧ୍ୟ ପ୍ରଭାତଙ୍କର ସମାଜସେବା ବେଶ୍ ବାରି ହୋଇଯାଇଥିଲା । ଲୋକପ୍ରତିନିଧି ହୋଇ ପ୍ରଭାତ ତାଙ୍କର ସମାଜସେବା ନିଶା ଠାରୁ ଦୂରେଇ ଯାଇନାହାନ୍ତି । ଯେଉଁଥିପାଇଁ ସେ ରାତିରେ ତାଙ୍କ ମୋବାଇଲ ଫୋନ୍‌ର ସୁଇଚ୍ ଅନ୍ କରି ରଖିଥା'ନ୍ତି । କେହି ଯଦି ଅସୁବିଧାରେ ପଡ଼ିଥା'ନ୍ତି ଆଉ ତାହା ପୁଣି ଅସୁସ୍ଥତା କାରଣରୁ ହୋଇଥାଏ ତେବେ ପ୍ରଭାତ ରାତିର ନିଦକୁ ଛାଡ଼ି ଦେଇ ସେହି ବ୍ୟକ୍ତିଙ୍କ ନିକଟରେ ହାଜର ହୋଇଯାଆନ୍ତି । କଟକ ବଡ଼ଡାକ୍ତରଖାନାକୁ ଚାଲିଗଲେ ଔଷଧ ଦୋକାନ ହେଉ କି କର୍ମଚାରୀ ହୁଅନ୍ତୁ ସେମାନଙ୍କ ମୁହଁରୁ ବେଳେବେଳେ ପ୍ରଭାତଙ୍କ ଏହି ସମାଜସେବା ସମ୍ପର୍କରେ ଶୁଣିବାକୁ ମିଳିଥାଏ । ଲଗେରହୋ ପ୍ରଭାତ । ମାନେ ସମାଜସେବା କ୍ଷେତ୍ରରେ ଆଗେଇ ଚାଲ ।

# ନେଉଳ ଓ ପ୍ରତାପ

ପ୍ରତାପ ଜେନା ହେଉଛନ୍ତି ଗଣଶିକ୍ଷାମନ୍ତ୍ରୀ । ତାଙ୍କ ନିର୍ବାଚନମଣ୍ଡଳୀ ହେଉଛି ମାହାଙ୍ଗା । ତାଙ୍କର ବାସସ୍ଥାନ ହେଉଛି କଟକ ରେଭେନ୍ସା କଲେଜ ଛକ ନିକଟସ୍ଥ ଯୋବ୍ରା ତଳସାହି । ସେ ରହୁଛନ୍ତି ଭୁବନେଶ୍ୱର କ୍ୟାପିଟାଲ ହସ୍‌ପିଟାଲ ନିକଟବର୍ତ୍ତୀ ମନ୍ତ୍ରୀ କ୍ୱାର୍ଟରରେ । ପ୍ରତାପ ପୂର୍ବରୁ କିଶନନଗର ବିଧାୟକ ଥିଲେ । ୨୦୦୯ ମସିହାରେ ସୀମା ପୁନଃନିର୍ଦ୍ଧାରଣରେ କିଶନନଗର ସତା ହରାଇଲା । ପ୍ରତାପ କେଉଁଠୁ ପ୍ରାର୍ଥୀ ହେବେ ସେ ନେଇ ସବୁବେଳେ ସନ୍ଦେହରେ ଥିଲେ । ତେବେ ମାହାଙ୍ଗା ବିଧାୟକ ବିକ୍ରମ କେଶରୀ ବର୍ମାଙ୍କ ବଦଳରେ ପ୍ରତାପଙ୍କୁ ସେଠାରୁ ଟିକେଟ ଦିଆଗଲା । ପ୍ରତାପ ବିଜୟୀ ହେଲେ ଏବଂ ମନ୍ତ୍ରୀ ବି ହେଲେ ।

ଏମିତି କୁହାଯାଏ ପ୍ରତାପଙ୍କ ରାଜନୀତି କଟକରେ ଚାଲେ ବୋଲି । ବିଜୁ ପଟ୍ଟନାୟକଙ୍କ ସମୟରେ ପ୍ରତାପ ଥିଲେ ମଧୁସୂଦନ ଆଇନ ମହାବିଦ୍ୟାଳୟ ଛାତ୍ର ସଂସଦର ସଭାପତି । ଏହି ସମୟରେ ବିଜୁ ତାଙ୍କୁ ଛାତ୍ର ଜନତାର ସଭାପତି ମୁକୁଟ ପିନ୍ଧାଇଥିଲେ । କଟକ ରାଜନୀତି ସହିତ ପ୍ରତାପଙ୍କର କ୍ରମେ ଆତ୍ମୀୟତା ବଢ଼ିଲା । ଏମିତି ତ କଟକ ଜିଲାରେ ମାହାଙ୍ଗା ନିର୍ବାଚନମଣ୍ଡଳୀ ରହିଛି । କିନ୍ତୁ କେନ୍ଦ୍ରାପଡ଼ା ଲୋକସଭା ଆସନରେ ମାହାଙ୍ଗା ମିଶିଯାଇଛି । ମାନେ ଅଳ୍ପ କେନ୍ଦ୍ରାପଡ଼ା ରାଜନୀତି ଆଉ ଅଧିକ କଟକ ରାଜନୀତି । କଟକ ଜିଲାରେ ଦୁଇଜଣ ମନ୍ତ୍ରୀ ହୋଇଛନ୍ତି । ଜଣେ ହେଲେ ବଡ଼ମ୍ବା ନରସିଂହପୁର ବିଧାୟକ ଦେବୀ ପ୍ରସାଦ ମିଶ୍ର ଏବଂ ଅନ୍ୟ ଜଣେ ହେଲେ ମାହାଙ୍ଗା ବିଧାୟକ ପ୍ରତାପ ଜେନା । ଏହି ଜିଲାରେ ମନ୍ତ୍ରୀ ହେବା ପାଇଁ ବହୁ ଆଶାୟୀ ଅଛନ୍ତି । ଯେଉଁଥିପାଇଁ ମନ୍ତ୍ରୀ ପଦଟି ପ୍ରତାପଙ୍କ ପାଇଁ କଂଟକିତ ଶଯ୍ୟା ବୋଲି କୁହାଗଲେ କିଛି ଅତ୍ୟୁକ୍ତି ହେବନାହିଁ । ମାନେ ପ୍ରତାପଙ୍କୁ ମନ୍ତ୍ରୀ ପଦରୁ ହଟାଇବା ପାଇଁ କଟକ ଜିଲାର ବହୁ ବରିଷ୍ଠ ବିଧାୟକ ଭିତରେ ଭିତରେ ଉଦ୍ୟମ ଜାରି ରଖିଛନ୍ତି ବୋଲି ସବୁବେଳେ ଚର୍ଚ୍ଚା ପରେ ଚର୍ଚ୍ଚା ହୁଏ । କୁଆଡ଼େ କେହିଜଣେ ଜ୍ୟୋତିଷ ପ୍ରତାପଙ୍କୁ ପରାମର୍ଶ ଦେଲେ ଯେ, ନେଉଳଟିଏ ରଖିବା ପାଇଁ । ସକାଳେ ହେଉ କିମ୍ବା ଘର ବାହାରକୁ ଯିବା ବେଳେ ହେଉ ନେଉଳର ମୁହଁ ଦେଖିଗଲେ ତାହା ପ୍ରତାପଙ୍କ ପାଇଁ ଶୁଭ ହେବ ବୋଲି ଜ୍ୟୋତିଷ ସୂଚନା ଦେଲେ । ନେଉଳ ମୁହଁ ଦେଖିଲେ ଶୁଭବେଳା ଆପେଆପେ ପାଖରେ ରହିବ । ଆଉ ମନ୍ତ୍ରୀ ପଦ ମଧ ହଲିବ ନାହିଁ । ଜ୍ୟୋତିଷଙ୍କର ପରାମର୍ଶ ମାନି ପ୍ରତାପ ମଧ ତାଙ୍କ ସରକାରୀ ମନ୍ତ୍ରୀ କ୍ୱାର୍ଟରରେ ନେଉଳଟିଏ ରଖିଲେ। ଯାଉଣୁଆସୁଣୁ ନେଉଳର ମୁହଁ ସେ ଦେଖିଚାଲିଲେ । କିଛିଦିନ ପରେ ଚର୍ଚ୍ଚା ହେଲା ପ୍ରତାପଙ୍କର ଯେଉଁ ଖରାପ ବେଳା ପଡ଼ିଥିଲା ତାହା କ୍ରମେ ଦୂରେଇ ଗଲାଣି ବୋଲି । ନେଉଳ ରହସ୍ୟ ପ୍ରତାପ ଅନ୍ୟ ମନ୍ତ୍ରୀଙ୍କ ଆଗରେ ଫିଟାଇବାର ଆବଶ୍ୟକତା ରହିଛି । ମନ୍ତ୍ରୀମାନେ ନେଉଳ ରଖି ଶୁଭବେଳାରେ ରହିଲେ ସେମାନଙ୍କ ପାଇଁ ଯେ କେବଳ ଶୁଭ ହେବ ତାହାନୁହେଁ । ସେମାନେ ମଧ ରାଜ୍ୟପାଇଁ ଶୁଭବେଳା ଆଣିଦେବେ । ଦେଖାଯାଉ ପ୍ରତାପ କେତେଦିନ ନେଉଳ ରଖି ଶୁଭବେଳାରେ ରହୁଛନ୍ତି ।

# ପୁଅ ଓ ପାଟଶାଣୀ

ଏମିତି କେଉଁ ଆବହମାନ ଯୁଗରୁ ଏହି କଥା ପ୍ରଚଳନ ହୋଇଆସୁଛି । ଯାହାର ପୁଅ ନହୁଏ ସେ ଯଦି କେଉଁ ବାବାଙ୍କ ପାଖକୁ ଯିବେ ଆଉ ବାବା ଯଦି ପୁଅ ହେବ ବୋଲି ଆଶିର୍ବାଦ ଦେବେ ତେବେ ତାଙ୍କର ପୁଅ ନିଶ୍ଚିତ ହେବ । ଏହି ଧାରଣା ବର୍ତମାନ ବି ଅଛି । ତେବେ କଳିଯୁଗରେ ସଚ୍ଚା ବାବାଟିଏ ପାଇବା ମଧ କାଠିକର ପାଠ । ଏମିତି ଅନେକ

ମଧ ଭାବନ୍ତି ପ୍ରସନ୍ନ ପାଟଶାଣୀ ହେଉଛନ୍ତି ଜଣେ ବାବା ବୋଲି । ତାଙ୍କର ମୁଣ୍ଡରେ ଲମ୍ବା ବାଳ, ମୁହଁରେ ଲମ୍ବା ଦାଢ଼ି, ହାତରେ ବାଡ଼ି ପୁଣି ଗେରୁଆ ବସ୍ତ୍ର । ଏହା ତାଙ୍କୁ ସତେ ଯେମିତି ବାବା କରିଦେଇଛି । ପ୍ରସନ୍ନ ମଧ ପୁରୁଣା ଯୁଗର ବାବାଙ୍କ ପରି ଯୋଗ ବି କରନ୍ତି । ପୁଣି ଧର୍ମ ଉପରେ ଅନର୍ଗଳ ବକ୍ତବ୍ୟ ବି ଦିଅନ୍ତି । ଆଉ ତାଙ୍କର ଖାଇବା ମଧ ବାବାଙ୍କ ପରି । ଅନେକଙ୍କର ଯାହାର ପୁଅ ହେଉନାହିଁ ସେମାନେ ମଧ ପ୍ରସନ୍ନ ପାଟଶାଣୀଙ୍କୁ ଦେଖାକରିବାକୁ ଆସନ୍ତି । ପୁଅଟିଏ ଯେପରି ହେବ ସେଥିପାଇଁ ଆଶିର୍ବାଦ ଦିଅନ୍ତୁ ବୋଲି ସେମାନେ ପ୍ରସନ୍ନ ପାଟଶାଣୀଙ୍କୁ ଅନୁରୋଧ କରନ୍ତି । ପ୍ରଥମେ ପୁଅ କେମିତି ହେବ ପ୍ରସନ୍ନ କିଛି ବୁଝିପାରୁ ନଥିଲେ । ପୁଅ ହେବା ପାଇଁ ଆଶିର୍ବାଦ ଦିଅନ୍ତୁ ବୋଲି ଯେତେବେଳେ ତାଙ୍କୁ ଅନୁରୋଧ କରାଯାଏ ସେତେବେଳେ ସେ କହୁଥିଲେ- ପୁଅ ହେବ କି ନହେବ ତାହା ସେ କହିବେ କିପରି । ଏହାସତ୍ୱେ ପ୍ରସନ୍ନଙ୍କ ପାଖକୁ ପୁଅ ହେବା ପାଇଁ ଆଶିର୍ବାଦ ନେବାକୁ ବହୁଲୋକ ଆସିଲେ । ପ୍ରସନ୍ନ ତାଙ୍କ କଥା କହିବାର ତରିକା ବଦଳାଇ ଦେଲେ । ପୁଅ କିପରି ହେବ ସେ ସମ୍ପର୍କରେ ମଧ ସେ ପୁସ୍ତକ ପଠନ କଲେ । ଯଦି କୌଣସି ମହିଳା ପ୍ରସନ୍ନଙ୍କ ପାଖକୁ ଆସି ପୁଅ ହେବା ପାଇଁ ଆଶିର୍ବାଦ ନେବାକୁ କହନ୍ତି ତେବେ ପ୍ରସନ୍ନ କହୁଛନ୍ତି- ସ୍ୱାମୀକୁ ଧରି ଆସ୍, ତା'ପରେ ସେ ଆଶିର୍ବାଦ ଦେବେ । ସ୍ୱାମୀ-ସ୍ତ୍ରୀ ତାଙ୍କ ପାଖକୁ ଆସିଲେ ପ୍ରସନ୍ନ ବୁଝାଇ ଦେଉଛନ୍ତି ଯେ ପୁଅ ନହେଲେ ସେଥିରେ ପତ୍ନୀର କିଛି ଦୋଷ ନାହିଁ । ପୁରୁଷ ଚାହିଁଲେ ହିଁ ପୁଅ ହେବ । ତେଣୁ ପୁରୁଷଙ୍କୁ ଚାହିଁବାକୁ ହେବ । ତା'ପରେ ପ୍ରସନ୍ନ ତାଙ୍କ ବାଡ଼ିକୁ ସେହି ପୁରୁଷ ମୁଣ୍ଡରେ ଲଗାଇ ଦିଅନ୍ତି ଆଉ କହନ୍ତି- ଯା ଏଥର ତୋ'ର ପୁଅ ହେବ ବୋଲି । ସେଦିନ କହୁକହୁ ପ୍ରସନ୍ନ ପାଟଶାଣୀ ଗୁମରକଥାକୁ ଫିଟାଇ ଦେଲେ । ସେ କହିଲେ- ଯାହାଙ୍କୁ ସେ ପୁଅ ହେବ ବୋଲି କହିଛନ୍ତି ପ୍ରାୟ ସମସ୍ତଙ୍କର ପୁଅ ହେଉଛି । କିନ୍ତୁ ଏହା ତାଙ୍କର ଆଶିର୍ବାଦ ଯୋଗୁ ନୁହେଁ । ତାଙ୍କୁ ଅନେକ ଭାବୁଛନ୍ତି ବାବା ବୋଲି । ତେଣୁ ସେମାନଙ୍କ ମନରେ ଏକ ବିଶ୍ୱାସ ରହୁଛି ଯେ ସେ ପୁଅ ହେବ ବୋଲି କହିଦେଲେ ନିଶ୍ଚିତ ପୁଅ ହେବ । ପୁରୁଷ ଲୋକଟି ତାଙ୍କଠାରୁ ଏହି ଆଶିର୍ବାଦ ପାଇବା ପରେ ସେ ଆହୁରି ଉତ୍ସାହିତ ହୋଇଯାଏ । ଶାସ୍ତ୍ରରେ ଲେଖା ଅଛି ପୁରୁଷ ମନରେ ଯଦି ପୁଅ ହେବ ବୋଲି ସବୁବେଳେ ଭାବନା ଆସିବ ତେବେ ପୁଅ ନିଶ୍ଚିତ ହେବ । ତେଣୁ ସେ ଆଶିର୍ବାଦ କରିଦେଲେ ପୁରୁଷଟି ଭାବିନେଉଛି ତାହାର ନିଶ୍ଚିତ ପୁଅ ହେବ ବୋଲି । ଆଉ ପୁଅ ବି ହେଉଛି । ଯେଉଁମାନଙ୍କର ପୁଅ ହେଉନାହିଁ ସେମାନେ ପ୍ରସନ୍ନଙ୍କ ଆଶିର୍ବାଦ ସମ୍ପର୍କରେ ଜାଣିବା ପରେ ପ୍ରସନ୍ନଙ୍କ ପାଖକୁ ଆଶିର୍ବାଦ ନେବାକୁ ଆସୁଛନ୍ତି । ପ୍ରସନ୍ନଙ୍କ ପ୍ରତିଦିନ ଦରବାରରେ କେହି ନା କେହି ପୁଅ ହେବା ପାଇଁ ଆଶିର୍ବାଦ ନେବାକୁ ଆସୁଥିବାର ଦେଖାଯାଉଛି । ମାନିବାକୁ ପଡ଼ିବ ପ୍ରସନ୍ନଙ୍କୁ । ନହେଲେ ବିନା ପ୍ରଚାର ଆଉ ବିନା ଟଙ୍କା

ଖର୍ଚ୍ଚ ପୁଣି ପୋଷ୍ଟର ନାହିଁ କି ବ୍ୟାନର ନାହିଁ ଆଉ କର୍ମୀ ବି ତାଙ୍କ ପାଇଁ ନବୁଲିଲେ ମଧ୍ୟ ସେ ଲକ୍ଷଲକ୍ଷ ଭୋଟ ବ୍ୟବଧାନରେ ବିଜୟୀ ହୁଅନ୍ତେ ନାହିଁ । ଦେଖାଯାଉ ପ୍ରସନ୍ନଙ୍କ ପୁଅ ଆଶିର୍ବାଦ ଚର୍ଚ୍ଚା ତାଙ୍କ ଦରବାରରେ ଲୋକଙ୍କର ଭିଡ଼ କେତେ ଅଧିକ କରୁଛି ।

## ବିଜୁଙ୍କ ଦୁଇଚକିଆ ଯାନ

**ବି**ଜୁ ପଟ୍ଟନାୟକ ୧୯୯୦ରୁ ୧୯୯୫ ମସିହା ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ଥିଲେ । ଏହି ସମୟରେ ସେ ପ୍ରାୟ ଚାରିଚକିଆ ଯାନରେ ଯାଉଥିଲେ । ତେଣୁ ବିଜୁ ଓ ଦୁଇଚକିଆ ପ୍ରସଙ୍ଗ ଆସିଲେ ତାହାକୁ ନେଇ ସମସ୍ତେ ଆଶ୍ଚର୍ଯ୍ୟ ହେବେ ହିଁ ହେବେ । ବିଜୁଙ୍କର ଯେତେବେଳେ ଦେହାନ୍ତ ହୋଇଗଲା ସେତେବେଳେ ଜଣାପଡ଼ିଲା ଯେ ବିଜୁ ଦୁଇଚକିଆ ଯାନ ଚଢୁଥିଲେ ବୋଲି । କିନ୍ତୁ କେବେ କେହି ତାଙ୍କୁ ଦୁଇଚକିଆ ଯାନ ଚଢୁଥିବାର ଦେଖି ନଥିଲେ । ବ୍ୟାଙ୍କରେ ଦେଖାଗଲା ଦୁଇଚକିଆ ଯାନ ପାଇଁ ବିଜୁ ପ୍ରାୟ ୬୨ଟି ଋଣ ନେଇଛନ୍ତି । ମାନେ ତାଙ୍କ ନାମରେ ୬୨ଟି ଦୁଇଚକିଆ ଯାନ ରହିଛି । ପ୍ରତି ମାସରେ ବିଜୁ ସେ ବାବଦୀୟ ଋଣ ସୁଝିଥା'ନ୍ତି । ବିଜୁଙ୍କ ମୃତ୍ୟୁପରେ ସେହି ଋଣ କିଏ ସୁଝିବ ସେ ନେଇ ବ୍ୟାଙ୍କ ପକ୍ଷରୁ ଖୋଳତାଡ଼ ହେବାପରେ ଏହା ଲୋକଲୋଚନକୁ ଆସିଥିଲା । ଯାହା ଜଣାପଡ଼ିଲା ତାହା ମଧ୍ୟ ଆଶ୍ଚର୍ଯ୍ୟ । ବିଜୁ କୁଆଡ଼େ ବିଭିନ୍ନ ବ୍ୟକ୍ତିଙ୍କୁ ଦୁଇଚକିଆ ଯାନ ଦାନ କରନ୍ତି । ଆଉ ବ୍ୟାଙ୍କକୁ ଫୋନ୍ କରି ଦୁଇଚକିଆ ଯାନ ପାଇଁ ଡ୍ରାଫ୍ଟ ଦେଇଦେବାକୁ ନିର୍ଦ୍ଦେଶ ଦିଅନ୍ତି । କଥା ଯେ ଏଇଠି ଶେଷ ହୋଇଥାଏ ତାହା ନୁହେଁ । ଲୁନା ଠାରୁ ଆରମ୍ଭ କରି ସ୍କୁଟର, ମୋଟର ସାଇକେଲ ବିଜୁଙ୍କ ନାମରେ କିଣାଯାଇଥାଏ । ସେହି ଯାନଗୁଡ଼ିକର ମାଲିକ ଥିଲେ ବିଜୁ । ଏହା ଜଣାପଡ଼ିବା ପରେ ଏକ ଆଶ୍ଚର୍ଯ୍ୟ ପରିବେଶ ସୃଷ୍ଟି ହୋଇଥିଲା । ବିଜୁ ଯେ ଅନେକ ପିଲାଙ୍କୁ ଦୁଇଚକିଆ ଯାନ ବ୍ୟାଙ୍କରୁ ଋଣ ନେଇ ଯୋଗାଇ ଦେଉଥିଲେ ତାହାସବୁ ଗୋପନରେ ଥିଲା । ବିଜୁଙ୍କ ମୃତ୍ୟୁପରେ ଏହି ଗୋପନ ଆପେଆପେ ବାହାରକୁ ଆସିଗଲା । ବିଜୁଙ୍କର ଏହା ମଧ୍ୟ ଏକ ମହନୀୟତା ଥିଲା ।

## କେମିତି ଉପହାର ଦିଅନ୍ତି ବିଜୁ

**ଉ**ପହାର ଦେବାକୁ ବିଜୁ ପଟ୍ଟନାୟକ ବେଶ୍ ଭଲ ପାଆନ୍ତି । ପୁଣି ତାଙ୍କର ସେବା କରୁଥିବା ଲୋକମାନଙ୍କୁ ଉପହାର ଦେଲେ ତାଙ୍କୁ ବେଶ୍ ଆତ୍ମସନ୍ତୋଷ ମିଳିଥାଏ । ବିଜୁଙ୍କର ଉପହାର ପାଇବାକୁ ତାଙ୍କ ପାଖରେ କାମ କରୁଥିବା କର୍ମଚାରୀମାନେ ସବୁବେଳେ ଉତ୍ସୁକତାର ସହ ଚାହିଁ ରହିଥା'ନ୍ତି । ଏହା ହେଉଛି ଦିଲ୍ଲୀର ଘଟଣା । ହଠାତ୍ ଦିନେ ଦେଖାଗଲା ବିଜୁ ପଟ୍ଟନାୟକ ତାଙ୍କ ପାଖରେ କାମ କରୁଥିବା କର୍ମଚାରୀଙ୍କୁ ଉପହାର ଦେବା ଆରମ୍ଭ କଲେ ।

ଜଣ ଜଣ କରି ସେ ଉପହାର ଦେଲେ । ବୋଧହୁଏ ସେଦିନ ଉପହାର କେତେ ଜଣଙ୍କୁ ଦିଆଯିବ ତାହାର ହିସାବ ବିଜୁଙ୍କ ପାଖରେ ନଥିଲା । ଏପଟେ ଉପହାର ଶେଷ ହୋଇଗଲା । କିନ୍ତୁ ଜଣେ କର୍ମଚାରୀ ଉପହାର ନେଇପାରିଲେ ନାହିଁ । ବିଜୁଙ୍କର ମନ ସେତିକିରେ ଖଟା ହୋଇଗଲା । ଯେମିତି ହେଲେ ତାଙ୍କୁ ଉପହାର ଦେବାକୁ ହେବ । ହଠାତ୍ ଦେଖିଲେ ଏକ ଦାମୀ ଆଟାଚି ତାଙ୍କ ପାଖରେ ଅଛି । ବିଜୁ ଥିଲେ ସେତେବେଳେ ସଂସଦୀୟ ଅର୍ଥ କମିଟିର ସଭ୍ୟ । କିଛିଦିନ ପୂର୍ବରୁ ସେ ଏକ ବୈଠକରେ ଯୋଗ ଦେଇଥିଲେ । ସଭ୍ୟ ଭାବେ ତାଙ୍କୁ ମିଳିଥିଲା ଏକ ଦାମୀ ଆଟାଚି । ବିଜୁ ସେହି ଆଟାଚିଟିକୁ ଉପହାର ଭାବେ ଦେଇଦେଲେ ବଳକା ଥିବା କର୍ମଚାରୀଙ୍କୁ । ଅବଶ୍ୟ ଆଟାଚିଟି ଦାମୀକିଆ ଥିବାରୁ ତାହାକୁ ନେବା ପାଇଁ କର୍ମଚାରୀ ଜଣଙ୍କ ପ୍ରଥମେ ଅନିଚ୍ଛା ପ୍ରକାଶ କରିଥିଲେ । ସେତେବେଳେ ବିଜୁ କହିଥିଲେ କିଏ କାହାକୁ କ'ଣ ଦେବ ତାହା ହେଉଛି ଭଗବାନଙ୍କ ବରାଦ । ତେଣୁ ଭଗବାନଙ୍କ ବରାଦ ଅନୁଯାୟୀ ସେହି କର୍ମଚାରୀଙ୍କ ଭାଗ୍ୟରେ ଦାମୀ ଆଟାଚି ଉପହାର ନେବାକୁ ଲେଖା ହୋଇଛି । ସେହି ଆଟାଚିଟିକୁ ଉପହାର ନେବା ପାଇଁ ବିଜୁ କର୍ମଚାରୀକୁ କହିବାରୁ କର୍ମଚାରୀ ଜଣକ ଆଟାଚିଟିକୁ ନେଇଥିଲେ । ବିଜୁଙ୍କର ଉପହାର ଦିଆଯିବା ଘଟଣା ବଡ଼ ଅଜବ । ଯେତେବେଳେ ମୁଡ୍ ହେଲା ସେତେବେଳେ ସେ ଉପହାର ଦେବା ଆରମ୍ଭ କରିଦିଅନ୍ତି । ସେ ଦଶହରା ପୂଜା ହେଉ କି ବଡ଼ଦିନ ହେଉ କି ନୂଆବର୍ଷ ହେଉ ସେଥିରେ ବିଜୁଙ୍କର କିଛି ଯାଏଆସେ ନାହିଁ । ଆଉ ଯେତେବେଳେ ଉପହାର ସେ ଦିଅନ୍ତି ସେତେବେଳେ ତାଙ୍କର ସେବା କରୁଥିବା ସବୁ କର୍ମଚାରୀ ଯେପରି ଉପସ୍ଥିତ ରହିବେ ସେ ଦିଗରେ ସେ ବେଶ୍ ଯତ୍ନବାନ ଥା'ନ୍ତି । ଉପହାର କାହା ଭାଗରେ କ'ଣ ପଡ଼ିବ ତାହା ମଧ୍ୟ କେହି ଜାଣି ନଥା'ନ୍ତି । ଯାହା ମନକୁ ଆସିଲା ତାହାକୁ ଉପହାର ଦିଅନ୍ତି ବିଜୁ । ମାନିବାକୁ ପଡ଼ିବ ବିଜୁଙ୍କର ଏହି ଉପହାର ମନୋବୃତ୍ତିକୁ । ଯେଉଁଥିପାଇଁ ମୃତ୍ୟୁପରେ ମଧ୍ୟ ତାଙ୍କର ଏହି ଉପହାରକୁ ନେଇ ଚର୍ଚ୍ଚା ଚାଲିଛି ।

## ମୁଢ଼ି ନିଶାରେ

ଏମିତି ଚୁଡ଼ା ଖାଉଥିବା ଲୋକଙ୍କୁ ବେଳେବେଳେ ମୁଢ଼ି ଖାଇବା ବେଶ୍ ପସନ୍ଦ ହୋଇଥାଏ । ତେବେ ଖୋର୍ଦ୍ଧା ଜିଲାର ବାସିନ୍ଦା ସାଧାରଣତଃ ମୁଢ଼ି ପ୍ରେମରେ ପଡ଼ି ନଥା'ନ୍ତି । ଖୋର୍ଦ୍ଧା ଜିଲାରେ ଚୁଡ଼ା ହେଉଛି ଜିନ୍ଦାବାଦ୍ । ଏଠାରେ ଏମିତି ଦୁଇଜଣ ନେତାଙ୍କ କଥା ଅବଗତ କରାଯାଉଛି ଯେଉଁମାନଙ୍କୁ ମୁଢ଼ି ନିଶା ଘାରିଥିଲା । ଆଉ ସେମାନେ ମୁଢ଼ି ଖାଇବା ପାଇଁ ୨୮୦ କିଲୋମିଟର ଯାଇଥିଲେ । ଏହି ଦୁଇଜଣ ନେତା ରହନ୍ତି ପାଖାପାଖି । ପୁଣି ସେମାନଙ୍କ ନିର୍ବାଚନମଣ୍ଡଳୀକୁ ଗୋଟିଏ ବୋଲି ଧରାଯାଏ । ଜଣେ ହେଲେ ଏକାମ୍ର-

ଭୁବନେଶ୍ୱର ବିଧାୟକ ଅଶୋକ ଚନ୍ଦ୍ର ପଣ୍ଡା ଏବଂ ଅନ୍ୟ ଜଣେ ହେଲେ ଉତର-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନା । ଏମିତି ମୟୂରଭଂଜ ଜିଲାରେ ମୁଢ଼ି ପ୍ରତି ସେଠାକାର ବାସିନ୍ଦାମାନଙ୍କର ବେଶ୍ ଦୁର୍ବଳତା ଥାଏ । ବାହାଘର ହେଉ କିମ୍ବା ଅନ୍ୟାନ୍ୟ ଉତ୍ସବ ହେଉ ମୟୂରଭଂଜ ଜିଲାରେ ସବୁଠି ଭୋଜିଭାତରେ ମୁଢ଼ିକୁ ଆଗ ଗୁରୁତ୍ୱ ଦିଆଯାଇଥାଏ । ସତେ ଯେମିତି ମୁଢ଼ି ନହେଲେ ନଚଳେ । ବେଳେବେଳେ ମଧ ମୁଢ଼ିକୁ ନେଇ ମୟୂରଭଂଜ ଜିଲାରେ ପାଟିତୁଣ୍ଡ ତ ହୁଏ । ପୁଣି ମହାଭାରତ ଯୁଦ୍ଧ ପରି ପରିସ୍ଥିତି ବି ହୁଏ । ମୟୂରଭଂଜର ମୁଢ଼ି ଖାଇବା ପାଇଁ ଅଶୋକ ଓ ଭାଗିରଥୀ ଗଲେ ବାଙ୍ଗିରିପୋଷି ନିର୍ବାଚନମଣ୍ଡଳୀକୁ । ଏହାର ବିଧାୟିକା ହେଉଛନ୍ତି ସରୋଜିନୀ ହେମ୍ବ୍ରମ । ସେଠାରେ ଏକ ଦଳୀୟ କାର୍ଯ୍ୟକ୍ରମ ଚାଲିଥିଲା । ଭାଗିରଥୀ ବଡ଼ଜେନାଙ୍କର ପୂର୍ବରୁ ସେଠାକୁ ଯିବାକୁ କାର୍ଯ୍ୟକ୍ରମ ସ୍ଥିର ହୋଇଥିଲା । କିନ୍ତୁ ଅଶୋକ ପଣ୍ଡାଙ୍କର ସେଠାକୁ ଯିବାର ନଥାଏ । ହଠାତ୍ ସକାଳେ ଅଶୋକ ପଣ୍ଡାଙ୍କୁ ଖୋଜିଲେ ଭାଗିରଥୀ ବଡ଼ଜେନା । ଆଉ କହିଲେ- ଚାଲ ଯିବା ମୁଢ଼ି ଖାଇବାକୁ । ଏମିତି ଅଶୋକଙ୍କୁ କୁହାଯାଏ ଖାଦ୍ୟ ରସିକେଷ୍ଟୁ । ମାନେ ଅଶୋକ ଜଣେ ଖାଇବା ପ୍ରିୟ ବ୍ୟକ୍ତି । ମୁଢ଼ି ସାଙ୍ଗକୁ ପତ୍ରଖିଆ ଖାସିମାଂସ କଥା ଶୁଣିବା ବେଳକୁ ସତେ ଯେମିତି ଅଶୋକଙ୍କ ପାଟିରୁ ଲାଳ ବାହାରି ଆସୁଥାଏ । ଏମିତି ସେଦିନ ଭୁବନେଶ୍ୱରରେ ଅଶୋକଙ୍କର ୫ଟି କାର୍ଯ୍ୟକ୍ରମ ଥାଏ । ମୁଢ଼ି ପ୍ରେମରେ ଅଶୋକ ପଡ଼ିଗଲେ । ଆଉ ଭାଗିରଥୀଙ୍କ ଅନୁରୋଧକୁ ଏଡ଼ାଇ ପାରିଲେ ନାହିଁ । ଅଶୋକ ଭାବିଥିଲେ ଯେ ବୋଧହୁଏ ପାଖାପାଖି କେଉଁଠି ଭାଗିରଥୀ ତାଙ୍କୁ ମୁଢ଼ି ଆଉ ଖାସିମାଂସ ଖୁଆଇବେ ବୋଲି । କିନ୍ତୁ ଭାଗିରଥୀ ଯେତେବେଳେ କହିଲେ- ମୟୂରଭଂଜ ଜିଲାକୁ ଯିବାକୁ ପଡ଼ିବ ବୋଲି ସେତେବେଳେ ଅଶୋକ କୁନ୍ଥୁକୁନ୍ଥୁ ହେଲେ । ଏହାସତ୍ୱେ ମୁଢ଼ି, ଖାସିମାଂସ ଲୋଭ ଦେଖାଇ ଅଶୋକଙ୍କୁ ସାଥିରେ ନେଇଗଲେ ଭାଗିରଥୀ ମୟୂରଭଂଜ ଜିଲାକୁ । ସେଠାରେ ସରୋଜିନୀଙ୍କର ସଭାରେ ସେମାନେ ଯୋଗ ଦେଲେ । ଅଶୋକ ମୁଢ଼ି ଆଉ ଖାସିମାଂସ ଖାଇ ବେଶ୍ ଖୁସି ହେଲେ । କିନ୍ତୁ ଭାଗିରଥୀ ଖାସିମାଂସ ଖାଇଲେ ନାହିଁ । କୁଆଡ଼େ ବଣେ ଛକରୁ ତାଙ୍କ ପାଇଁ ଆସିଲା କୁକୁଡ଼ା ମାଂସ ତରକାରୀ । ଆଉ ତାକୁ ମଧ ବେଶ୍ ଆନନ୍ଦରେ ଭକ୍ଷଣ କଲେ ଭାଗିରଥୀ । ଅଶୋକ ଓ ଭାଗିରଥୀଙ୍କର ମୁଢ଼ି, ମାଂସ ଖାଇବା ନିଶା କ୍ରମେ ପଦାକୁ ଫିଟିଯାଇଛି । ଆଉ ଏହାକୁ ନେଇ ଚାଲିଛି ଚର୍ଚ୍ଚା ପରେ ଚର୍ଚ୍ଚା ।

## ଓ୍ୱାଃ ବିଷ୍ଣୁ

୧୯୯୦ ମସିହାରୁ ଜଗତ୍‌ସିଂହପୁରରେ ବିଷ୍ଣୁ ଦାସ ବ୍ୟାଟିଂ କରିଚାଲିଛନ୍ତି । ଆଉଟ୍ ହେବାର ନାହିଁ । ମାନେ ୨୧ ବର୍ଷରୁ ଅଧିକ ସମୟ ଧରି ସେ ବିଧାୟକ ହେଲେଣି । ବିଷ୍ଣୁ

ଯେ ଜଣେ ହ୍ୱାଟ୍ ନଟ୍ ତାହା ବୋଧହୁଏ ଅନେକ ଜାଣନ୍ତି ନାହିଁ । ରାଜନୀତିରେ କିନ୍ତୁ ସବୁବେଳେ ହାତେ ମାପି ଚାଖଣ୍ଡେ ଚାଲିବାକୁ ପଡ଼େ । ଏହାକୁ ବିଷ୍ଣୁ ବେଶ୍ ଭଲ ଭାବେ ବୁଝିଛନ୍ତି । କିନ୍ତୁ ଲୋକଙ୍କୁ ଖାଲି ଭାଷଣ ଦେଇଚାଲିଲେ ସେମାନେ କ୍ରମେ ବୋର୍ ହୋଇଯିବେ ଏହା ଏବେ ବିଷ୍ଣୁ ଜାଣିଗଲେଣି । ଯେଉଁଥିପାଇଁ ବିଷ୍ଣୁ ବିଭିନ୍ନ ସଭାସମିତିକୁ ଗଲେ ଭାଷଣ ଅଧିକ ନଦେଇ ଆଉ କିଛି ଦୃଶ୍ୟ ସେ ଦେଖାଉଛନ୍ତି । କଲେଜର ସାଂସ୍କୃତିକ କାର୍ଯ୍ୟକ୍ରମକୁ ଗଲେ ବିଷ୍ଣୁ ଗୀତ ବୋଲୁଛନ୍ତି । କେହି ଜାଣନ୍ତି ନାହିଁ ଯେ ବିଷ୍ଣୁ ଭଲ ଗୀତ ବୋଲନ୍ତି ଆଉ ଛାତ୍ର ଜୀବନରେ ସେ ସିନେମା ଦେଖୁଥିଲେ ବୋଲି । ଓଡ଼ିଆ ସିନେମା ମଧ ତାଙ୍କର ପ୍ରିୟ ଥିଲା । ଅକ୍ଷୟ ମହାନ୍ତିଙ୍କ ଗୀତ ସତେ ଯେମିତି ତାଙ୍କର ମୁଖସ୍ଥ ଥିଲା । ତେଣୁ କଲେଜ ଉତ୍ସବରେ ଯଦି ଟିକିଏ ସୁଯୋଗ ମିଳିଯାଏ ତେବେ ଅକ୍ଷୟଙ୍କ ଗୀତକୁ ବିଷ୍ଣୁ ବୋଲନ୍ତି । ତେଣିକି ସ୍ୱର ବେସୁରା ହେଉ ପଛେ । ବିଷ୍ଣୁଙ୍କ ଗୀତ ଶୁଣି ସ୍ରୋତାମାନେ ମଧ ହସନ୍ତି । ଏଥିରୁ ବିଷ୍ଣୁ ଠଉରେଇ ନିଅନ୍ତି ଯେ ସ୍ରୋତାମାନେ ତାଙ୍କୁ ଅଧିକ ଭଲ ପାଆନ୍ତି ବୋଲି । କେତେବେଳେ ମଧ ସେ ଅଭିନୟ କରନ୍ତି । ଅବଶ୍ୟ ଭଗବାନ ବିଷ୍ଣୁଙ୍କର ସହସ୍ର ନାମ ରହିଛି । ମାନେ ତାଙ୍କର ନାମ ଗୋଟିଏ କି ଦୁଇଟି ନୁହେଁ ସହସ୍ର ଅଟେ । କିନ୍ତୁ ଜଗତ୍‌ସିଂହପୁର ବିଧାୟକ ବିଷ୍ଣୁ ଭଗବାନ ନୁହନ୍ତି । ତେଣୁ ତାଙ୍କର ନାମ ସହସ୍ର ନୁହେଁ । କିନ୍ତୁ ମଣିଷ ଭାବେ ସେ ସହସ୍ର ଗୁଣର ଅଧିକାରୀ ପାଇଁ ଅଗଭର ହୋଇଛନ୍ତି । ନେତା ହୋଇଥିବାରୁ ଏହି ଗୁଣକୁ ଦେଖାଇବା ପାଇଁ ସେ ଭଲ ପ୍ଲାଟଫର୍ମ ବି ପାଉଛନ୍ତି । ପୁରୁଣା ଦିନର ରାଜନୀତି ଆଉ ବର୍ତମାନର ରାଜନୀତି ମଧରେ ବହୁ ତଫାତ୍ ରହିଛି । ଯୁବକମାନଙ୍କୁ ହାତେଇଲେ ଭୋଟ ମିଳିବ । ଆଉ ଯୁବକମାନଙ୍କର ମନ ଆନନ୍ଦ କରିବା ପାଇଁ ଗୀତ, ନାଚର ଆବଶ୍ୟକତା ରହିଛି । ଯେଉଁଥିପାଇଁ ବିଷ୍ଣୁ ନିଜେ ଗୀତ ବୋଲୁଛନ୍ତି ଆଉ ଅଭିନୟ ବି କରୁଛନ୍ତି । ଏହା ବିଷ୍ଣୁଙ୍କର ଲୋକପ୍ରିୟତାକୁ ଆହୁରି ବଢ଼ାଇ ଦେଉଛି । ଦେଖାଯାଉ ବିଷ୍ଣୁ କେଉଁ ଅଭିନୟ କରି ଲୋକଙ୍କ ମନକୁ ଜିଣୁଛନ୍ତି ।

# ଠିଆ ମୁତୁରା

**ଭୁ**ବନେଶ୍ୱର ସାଂସଦ ପ୍ରସନ୍ନ ପାଟ୍ଟଶାଣୀ ୧୯୮୦ ମସିହାରେ ରାଜନୀତିକୁ ଆସିଲେ । ସେହିବର୍ଷ ଖୋର୍ଦ୍ଧାରୁ କଂଗ୍ରେସ ପ୍ରାର୍ଥୀ ହୋଇ ଜିତିଲେ । ସେବେଠାରୁ ଆଉ ରାଜନୀତିରେ ସେ ପଛକୁ ଫେରି ଚାହିଁନାହାନ୍ତି । ମାନେ ହାରିନାହାନ୍ତି । ୧୯୮୦, ୧୯୮୫, ୧୯୯୦, ୧୯୯୫ ମସିହାରେ ଖୋର୍ଦ୍ଧାରୁ ସେ ବିଧାୟକ ହୋଇଥିଲେ । ୧୯୯୮ ମସିହାରେ ସେ ଭୁବନେଶ୍ୱର ଲୋକସଭା ନିର୍ବାଚନମଣ୍ଡଳୀରୁ ନିର୍ବାଚିତ ହେଲେ । ୧୯୯୯, ୨୦୦୪, ୨୦୦୯ ମସିହାରେ ସେ ପୁଣି ଭୁବନେଶ୍ୱର ଲୋକସଭା ଆସନରୁ ସାଂସଦ ହୋଇଛନ୍ତି ।

୪ ଥର ବିଧାୟକ ଆଉ ୪ ଥର ସେ ସାଂସଦ ହେଲେଣି । ରାଜନୀତି ଜୀବନ ୩୧ ବର୍ଷରୁ ଅଧିକ ହୋଇଗଲାଣି । ବେଳେବେଳେ ପ୍ରସନ୍ନ ତାଙ୍କ ଅତୀତର ସ୍ମୃତିଚାରଣ କରିବାର ଦେଖାଯାଏ । ପୁଣି ଯଦି କେହି ତାଙ୍କ ଅତୀତ ସମ୍ପର୍କରେ ପଚାରିଦିଏ ତେବେ ତାହାକୁ ବଖାଣିବାକୁ ସେ ଭଲ ପାଆନ୍ତି । ସେଦିନ ଦରବାରରେ ଗହଳି ନଥାଏ । ଜଣେ କେହି ପଚାରି ଦେଲେ- କେବେଠାରୁ ସେ ଗେରୁଆ ବସ୍ତ୍ର ପରିଧାନ କଲେଣି ବୋଲି । କିଛି ସମୟ ପ୍ରସନ୍ନ ସେହି ବ୍ୟକ୍ତିଙ୍କ ମୁହଁକୁ ଚାହିଁଲେ । ତା'ପରେ କହିଲେ- ଭଲ ପ୍ରଶ୍ନଟିଏ । ଏହା କେହି ଜାଣିବାକୁ ଚାହୁଁନାହାନ୍ତି । କାହିଁକି ଏପରି ପ୍ରଶ୍ନ ପଚାରିଲ ବୋଲି ଓଲଟି ସେ ପ୍ରଶ୍ନ କଲେ । ତେବେ ସେହି ବ୍ୟକ୍ତି ଜଣଙ୍କ କିଛି କହିବା ପୂର୍ବରୁ ପ୍ରସନ୍ନ କହିଲେ- ୧୯୮୦ ମସିହାରେ ଯେତେବେଳେ ସେ ଖୋର୍ଦ୍ଧାରେ କଂଗ୍ରେସ ଟିକେଟରେ ପ୍ରତିଦ୍ୱନ୍ଦ୍ୱିତା କଲେ ସେତେବେଳର ପୋଷାକ ବର୍ତ୍ତମାନ ଠାରୁ ଭିନ୍ନ ଥିଲା । ସେ ସେତେବେଳେ ଢ଼ୁଗୁଲା ପାଇଜାମା ଓ ପଂଜାବୀ ପିନ୍ଧୁଥିଲେ । ଏହାର ରଙ୍ଗ ଥିଲା ଗୋଲାପୀ । କବି ଲୋକ ହୋଇଥିବାରୁ ସେ ରୋମାଂଟିକ ଥିଲେ । ରୋମାଂଟିକର ରଙ୍ଗ ଯଦି କେହି ସେତେବେଳେ କ'ଣ ବୋଲି ପଚାରୁଥିଲେ ସେତେବେଳେ ସେ କହୁଥିଲେ- ସେ ପିନ୍ଧିଥିବା ପୋଷାକର ରଙ୍ଗ ବୋଲି । ମାନେ ଗୋଲାପୀ । ସେତେବେଳେ ଗୋଲାପୀ ରଙ୍ଗ ପ୍ରତି ତାଙ୍କର ଭାରି ଦୁର୍ବଳତା ଥିଲା । ବିଧାୟକ ଭାବେ ନିର୍ବାଚିତ ହେବାପରେ ସେ ମଧ୍ୟ ସେହି ରଙ୍ଗର ପୋଷାକ ପିନ୍ଧିଲେ । ଦିନେ ନିର୍ବାଚନମଣ୍ଡଳୀ ଗସ୍ତରେ ସେ ଯାଇଥା'ନ୍ତି । ତାଙ୍କୁ ପରିସ୍ରା ଲାଗିଲା । ସେ ରାସ୍ତା ପାଖକୁ ଯାଇ ଠିଆ ହୋଇ ପରିସ୍ରା କଲେ । ତାଙ୍କର ଠିଆ ହୋଇ ପରିସ୍ରା କରିବା ଅଭ୍ୟାସ ନଥାଏ । କିନ୍ତୁ ଯେଉଁ ପୋଷାକଟି ସେ ପିନ୍ଧିଥିଲେ ତାହା ଠିଆ ହୋଇ ପରିସ୍ରା କରିବା ପାଇଁ ତାଙ୍କୁ ବାଧ କରିଥିଲା । ତାଙ୍କର ସେହି ଠିଆ ହୋଇ ପରିସ୍ରା କରିବାର ଦୃଶ୍ୟଟି ଜନୈକ ବାଳକ ଆଖିରେ ପଡ଼ିଥିଲା । ସେ ପରିସ୍ରା କରିସାରି ଯେତେବେଳେ ଲୋକଙ୍କ ପାଖକୁ ଗଲେ ସେତେବେଳେ ସେହି ବାଳକ ଜଣକ କିଛି କହୁଥିବାର ସେ ଦେଖିବାକୁ ପାଇଲେ । ସେ କୁଆଡ଼େ କହୁଥିଲା ଯେ ପ୍ରସନ୍ନ ପାଟଶାଣୀ ଜଣେ ଭଲ ଲୋକ କିନ୍ତୁ ଠିଆ ମୁତୁରାଟିଏ । ବାଳକଟିର ସେହି କଥାରେ ଲୋକମାନେ ତାଙ୍କ ଆଡ଼କୁ ଚାହିଁ ହସୁଥିବାର ଦେଖାଯାଇଥିଲା । ଯେତେବେଳେ ସେ ସେମାନଙ୍କୁ କାହିଁକି ହସୁଛ ବୋଲି ପଚାରିଲେ ସେତେବେଳେ ସେମାନେ ତାଙ୍କୁ ବାଳକ କହିଥିବା କଥାକୁ ଦୋହରାଇଲେ । ଏହି ଠିଆ ମୁତୁରା ଶବ୍ଦଟି ସେତେବେଳେ ତାଙ୍କୁ ଭାରି ଖରାପ ଲାଗିଥିଲା । ସେ ଭଲ ରୂପେ ଜାଣିଥିଲେ ଯେ, ଲୋକପ୍ରତିନିଧି ହେବାକୁ ହେଲେ ଲୋକଙ୍କ କଥାକୁ ସମ୍ମାନ ଦେବାକୁ ହେବ । ଏହାପରେ ସେ ଘରକୁ ଆସିଲେ । ଘରେ ସେହି ଠିଆ ମୁତୁରା ଶବ୍ଦଟି ତାଙ୍କ ମନକୁ ସବୁବେଳେ ଆନ୍ଦୋଳିତ କଲା । ଏମିତି ଗୋଲାପୀ ରଙ୍ଗର ପୋଷାକ ପିନ୍ଧୁଥିବାରୁ

ତାଙ୍କୁ ମଧ୍ୟ ଅନେକ ପ୍ରେମିକ ବୋଲି କହୁଥିଲେ । ଏପଟେ ପ୍ରେମିକ, ସେପଟେ ଠିଆ ମୁତୁରା ଏହି ଦୁଇଟି ଶବ୍ଦ ଯେପରି ତାଙ୍କ ପ୍ରତି ଲାଗୁ ନହେବ ସେ ଦିଗରେ ସେ ନିଷ୍ପତି ନେଲେ । ସେହିଦିନ ଠାରୁ ସେ ଗେରୁଆ ବସ୍ତ୍ର ପରିଧାନ କଲେ । ଯେବେଠାରୁ ସେ ଗେରୁଆ ବସ୍ତ୍ର ପରିଧାନ କଲେଣି ସେବେଠାରୁ କେହି ହେଲେ ତାଙ୍କୁ ଠିଆ ମୁତୁରା କହିନାହାନ୍ତି କିମ୍ବା ପ୍ରେମିକ ବୋଲି ଆଖ୍ୟା ବି ଦେଇନାହାନ୍ତି । ଏତିକି କହି ପ୍ରସନ୍ନ ସେହି ବ୍ୟକ୍ତି ଜଣଙ୍କୁ କହିଲେ- ଆଉ କିଛି ଜାଣିବା ପାଇଁ ଚାହୁଁଛ କି । ବ୍ୟକ୍ତି ଜଣଙ୍କ କହିଲେ- ବାଡ଼ି କାହିଁକି ଧରିଲେ । ପ୍ରସନ୍ନ ହସିହସି କହିଲେ- ଏହାର ମଧ୍ୟ ଇତିହାସ ଅଛି । ଯିଏ ତାଙ୍କୁ ଏହି ବାଡ଼ି ଦେଇଥିଲେ ସେ ଆଉ ଇହଜଗତରେ ନାହାନ୍ତି । ବାଡ଼ିରେ ଯେଉଁ କନା ଗୁଡ଼ା ହୋଇଛି ତାହା ଜଗନ୍ନାଥଙ୍କର ମନ୍ଦିର ଉପରେ ଥିବା ନୀଳଚକ୍ରବାନା । ଏହି ବାଡ଼ିକୁ ଚୋରାଇ ନେବା ପାଇଁ ଅନେକ ଉଦ୍ୟମ କରିଛନ୍ତି । ରାଜନୈତିକ ଶତ୍ରୁମାନଙ୍କ ମନରେ ଧାରଣା ଜନ୍ମିଥିଲା ଯେ ବାଡ଼ି ଯୋଗୁଁ ପ୍ରସନ୍ନ ପାଟ୍ଟଶାଣୀ ବିଜୟୀ ହେଉଛନ୍ତି ବୋଲି । ଦିନେ ନିର୍ବାଚନମଣ୍ଡଳୀ ଗସ୍ତ କରୁଥିବା ବେଳେ ହଠାତ୍ ଜଣେ ତାଙ୍କ ଠାରୁ ସେହି ବାଡ଼ିଟିକୁ ଛଡ଼ାଇ ନେଇ ଦୌଡ଼ିଲା । ସେତେବେଳେ ବାଡ଼ି ନେଇଗଲା, ବାଡ଼ି ନେଇଗଲା ବୋଲି ସେ ପାଟି କଲେ । ଦେଖାଗଲା ସେହି ଲୋକଟି କିଛିବାଟ ଯିବାପରେ ହଠାତ୍ ରାସ୍ତା କଡ଼ରେ ଥିବା ନାଳ ମଧ୍ୟରେ ଖସିପଡ଼ିଲା । ସେହି ଲୋକଠାରୁ ବାଡ଼ିଟିକୁ ସେ ଆଣିଲେ । ପରଦିନ ଶୁଣିଲେ ଯେ ଲୋକଟିର ମୃତ୍ୟୁ ହୋଇଯାଇଛି ବୋଲି । ଏହାପରେ ବାଡ଼ିର ମାହାତ୍ମ୍ୟ ସବୁଆଡ଼େ ପ୍ରଚାର ହୋଇଗଲା । ଆଉ ବାଡ଼ିକୁ କେହି ଚୋରି କରି ନେବାକୁ ସାହସ କଲେନାହିଁ । ପ୍ରଶ୍ନ ପଚାରିଥିବା ବ୍ୟକ୍ତି ଜଣଙ୍କ ପ୍ରସନ୍ନଙ୍କ ମୁହଁକୁ 'ଥ' ହୋଇ ଚାହିଁ ରହିଥାଏ । ଏହି ସମୟରେ ପ୍ରସନ୍ନ କହିଲେ- ଯାହା ପ୍ରଶ୍ନ ପଚାରିଥିଲ ତାହାର ଉତର ପାଇଗଲଣି । ଦରବାରକୁ ଏହିଠାରେ ଶେଷ କରିଦେବା । ବ୍ୟକ୍ତି ଜଣଙ୍କ କହିଲେ- ଆଜ୍ଞା ଦରବାର ଶେଷ ହେଉ ।

# ବିଧାନସଭାର ଦୁଇଟି ଦୃଶ୍ୟ

ଏମିତି ବିଧାନସଭାରେ ଅନେକ ଦୃଶ୍ୟ ଦେଖିବାକୁ ମିଳିଥାଏ ଯାହା ଚର୍ଚ୍ଚା ପାଇଁ ଖୋରାକ ଯୋଗାଇଥାଏ । ବିଧାନସଭାରେ ସେମିତି ଦୁଇଟି ଦୃଶ୍ୟ ସମ୍ପର୍କରେ ଏଠାରେ ଅବଗତ କରାଯାଉଛି । **ଦୃଶ୍ୟ ନମ୍ବର ୧ -** ଏହି ଦୃଶ୍ୟଟି କେବେବି କିଏ ଦେଖିବେ ବୋଲି ଭାବି ନଥିବେ । ଭଦ୍ରକ ଚାଲିଗଲେ ସେଠାରେ ଯଦି ରାଜନୈତିକ ଶତ୍ରୁଙ୍କ ସମ୍ପର୍କରେ ଚର୍ଚ୍ଚା ହୁଏ ତେବେ ସଙ୍ଗେସଙ୍ଗେ ପ୍ରସଙ୍ଗ ଆସିଯିବ ଭଦ୍ରକ ବିଧାୟକ ଯୁଗଳ ପଟ୍ଟନାୟକ ଏବଂ ଭଣ୍ଡାରୀପୋଖରୀ ବିଧାୟକ ପ୍ରଫୁଲ ସାମଲଙ୍କୁ ନେଇ । ଭଦ୍ରକ ବିଜେଡି ରାଜନୀତି ସହିତ ଓତଃପ୍ରୋତଃ ଭାବେ ଜଡ଼ିତ ଥିଲେ ପ୍ରଫୁଲ ସାମଲ । ୨୦୦୯ ନିର୍ବାଚନରେ ପ୍ରଫୁଲଙ୍କୁ ଭଦ୍ରକରୁ ହଟାଇ ବିଜେଡି ଟିକେଟ ନେଲେ ଯୁଗଳ ପଟ୍ଟନାୟକ । ଭଦ୍ରକରେ ଯୁଗଳ ବହୁ

ପୁରୁଣା ନେତା ଅଟନ୍ତି । ତେବେ ଯେଭଳି ଭାବେ ଭଦ୍ରକ ରାଜନୀତିରୁ ପ୍ରଫୁଲ୍ଲ ହଟିଯାଇ ଭଣ୍ଡାରୀପୋଖରୀ ମୁହାଁ ହେଲେ ତାହା ତାଙ୍କୁ ବାଧିବା ସ୍ୱାଭାବିକ । ଉଭୟେ ଉଭୟଙ୍କର ରାଜନୈତିକ ଶତ୍ରୁ ପାଲଟିଗଲେ । ଭଦ୍ରକରେ ଯୁଗଳ ଆଉ ପ୍ରଫୁଲ୍ଲଙ୍କର ସମର୍ଥକ ବିଭିନ୍ନ ସମୟରେ ମୁହାଁମୁହିଁ ମଧ୍ୟ ହେଲେ । ସେପଟେ ପ୍ରଫୁଲ୍ଲ କ୍ୟାବିନେଟ ମନ୍ତ୍ରୀ ହୋଇଯିବାରୁ ଭଦ୍ରକରେ ସିଧାସଳଖ ମୁଣ୍ଡ ନଖୋଲାଇ ଭିତରେ ଭିତରେ ମୁଣ୍ଡ ଖୋଲାଇଲେ । ଏହା ଯୁଗଳଙ୍କ ପାଇଁ ମଧ୍ୟ ଚ୍ୟାଲେଂଜ ହୋଇଯାଇଥିଲା । ଏପରିକି ଉଭୟଙ୍କ ମଧ୍ୟରେ କଥାବାର୍ତ୍ତା ନାହିଁ ବୋଲି ଚର୍ଚ୍ଚା ବି ହେଉଥିଲା । କିନ୍ତୁ ବିଧାନସଭାରେ ଏକ ବିରଳ ଦୃଶ୍ୟ ଦେଖିବାକୁ ମିଳିଲା । ପ୍ରଫୁଲ୍ଲ ସାମଲଙ୍କ ପାଖ ଆସନଟି ଖାଲି ପଡ଼ିଥିଲା । ହଠାତ୍ ଦେଖାଗଲା ସେହି ଆସନରେ ଯୁଗଳ ପଟ୍ଟନାୟକ ବସିଛନ୍ତି । କିଛି ସମୟ ଧରି ଯୁଗଳ ଓ ପ୍ରଫୁଲ୍ଲଙ୍କ ମଧ୍ୟରେ ଆଲୋଚନା ଚାଲିଲା । ଏହି ଦୃଶ୍ୟ ସମ୍ପର୍କରେ ବାହାରେ ଚର୍ଚ୍ଚା ହେଲେ ମଧ୍ୟ ଏହାକୁ କେହି ବିଶ୍ୱାସକୁ ନେଉନାହାନ୍ତି । କିନ୍ତୁ ଏହା ଖାଣ୍ଟି ସତ । **ଦୃଶ୍ୟ ନମ୍ବର ୨** – ଏହା ମଧ୍ୟ ଏକ ବିରଳ ଦୃଶ୍ୟ । ବିଜେପିର ମନୋଜ ପ୍ରଧାନ ଜେଲ୍ ହାଜତରେ ଥାଇ ବିଧାନସଭା ନିର୍ବାଚନରେ ନିର୍ବାଚିତ ହୋଇଥିଲେ । ସେ ଜେଲ୍‌ରୁ ଯେତେଥର ବାହାରୁଛନ୍ତି ସତେ ଯେମିତି ଜେଲ୍ ତାଙ୍କ ପଛରେ ଗୋଡ଼ାଉଛି । ମାନେ କିଛିଦିନ ବାହାରକୁ ଆସିବା ପରେ ପୁଣି ସେ ଜେଲ୍ ହାଜତକୁ ଯାଉଛନ୍ତି । କିଛିଦିନ ପୂର୍ବରୁ ଜେଲ୍ ହାଜତରୁ ବାହାରିଥିଲେ ମନୋଜ । ସେ ବିଧାନସଭାରେ ଉପସ୍ଥିତ ରହୁଛନ୍ତି । ନିକଟରେ ଜେଲ୍ ହାଜତରେ ଥିବା ସାନଖେମୁଣ୍ଡି ବିଧାୟକ ରମେଶ ଜେନା ଜାମିନରେ ଆସିଲେ । ରମେଶଙ୍କର ଆସନ ମନୋଜଙ୍କ ଆଗରେ । ରମେଶ ବିଧାନସଭା ମଧ୍ୟକୁ ପ୍ରବେଶ କରି ନିଜ ଆସନରେ ବସିଲେ । ଏହି ସମୟରେ ମନୋଜ ତାଙ୍କ ପଛରେ ବସି ତାଙ୍କୁ କିଛି କହିଲେ । ରମେଶ ପଛକୁ ଚାହିଁଲେ ଏବଂ ନିଜ ଆସନରୁ ଉଠିଯାଇ ମନୋଜଙ୍କ ପାଖରେ ଯାଇ ବସିଲେ । ଉଭୟଙ୍କ ମଧ୍ୟରେ କିଛି ସମୟ ଗପସପ ଚାଲିଲା । ଏମିତି ଦେଖିଲେ ମନୋଜଙ୍କ ଦଳ ହେଉଛି ବିଜେପି ଆଉ ରମେଶଙ୍କ ଦଳ କଂଗ୍ରେସ । ସେମାନେ ଯେ ପାଖାପାଖି ବସି ଦଳୀୟ ରାଜନୀତି ସମ୍ପର୍କରେ ଆଲୋଚନା କରିଥିଲେ ତାହା ନୁହେଁ । ସେହି ଆଲୋଚନା ଜେଲ୍‌କୁ ନେଇ ହୋଇଥିବ ଏହା ନିଶ୍ଚିତ । ଅବଶ୍ୟ ପରବର୍ତ୍ତୀ ସମୟରେ ଯେତେବେଳେ ମନୋଜଙ୍କୁ ଏ ସମ୍ପର୍କରେ ପଚରାଗଲା ସେତେବେଳେ ସେ ହସିହସି କହିଥିଲେ ଯେ ଜେଲ୍ ହାଜତ ଅଭିଜ୍ଞତା ସମ୍ପର୍କରେ କିଛି ସମୟ ପାଇଁ ଉଭୟଙ୍କ ମଧ୍ୟରେ କଥାବାର୍ତ୍ତା ହୋଇଥିଲା ବୋଲି । ଏହି ଦୁଇଟି ବିରଳ ଦୃଶ୍ୟ କିଛି ସମୟ ପାଇଁ ବିଧାନସଭାରେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ହୋଇଥିଲା । ରାଜନୀତିରେ ସବୁ ସମ୍ଭବ । କେତେବେଳେ କିଏ ପର ତ କେତେବେଳେ କିଏ ନିଜର । କେତେବେଳେ କିଏ ଆଗରେ ବସିବ ତ କେତେବେଳେ କିଏ ପାଖରେ । ଏହା ହିଁ ତ ରାଜନୀତି ।

# ଛାତ୍ର ପ୍ରଭାତ

ପରୀକ୍ଷା ଆସିଲେ ଛାତ୍ରଛାତ୍ରୀମାନେ ପଠାପଢ଼ି ଜୋର୍‌ଦାର୍ କରନ୍ତି । ପରୀକ୍ଷା ସମୟରେ ଛାତ୍ରଛାତ୍ରୀମାନଙ୍କର ସବୁବେଳେ ବହି ଉପରେ ଆଖି ଲାଗି ରହିଥାଏ । ବିଧାନସଭା ଅଧିବେଶନ ଆସିଲେ କିଛି ବିଧାୟକଙ୍କ ପାଇଁ ଏହା ମଧ ପରୀକ୍ଷା ସଦୃଶ୍ୟ ହୋଇଯାଏ । ଆମେ ଏବେ ଯିବା ସେଭଳି ଜଣେ ବିଧାୟକଙ୍କ ପାଖକୁ । ସେହି ବିଧାୟକ ଜଣଙ୍କ ହେଉଛନ୍ତି କଟକ-ଚୌଦ୍ୱାର ବିଧାୟକ ପ୍ରଭାତ ବିଶ୍ୱାଳ । ବିଧାନସଭା ଅଧିବେଶନ ଚାଲିଥିବା ସମୟରେ ପ୍ରଭାତ ବିଶ୍ୱାଳ ତାଙ୍କ ଭୁବନେଶ୍ୱର କ୍ୱାର୍ଟରରେ ଥା'ନ୍ତୁ କି କଟକ ବାସଭବନରେ ଥା'ନ୍ତୁ ସେଥିରେ ତାଙ୍କର କିଛି ଯାଏଆସେ ନାହିଁ । ସେ କିନ୍ତୁ ବିଳମ୍ବିତ ରାତ୍ରି ପର୍ଯ୍ୟନ୍ତ ବହି ପଢ଼ିଚାଲନ୍ତି । ସତେ ଯେମିତି ପରୀକ୍ଷା ସେ ଦେବାକୁ ଯାଉଛନ୍ତି । କିନ୍ତୁ ପ୍ରକୃତରେ ଘଟଣା ତାହା ନୁହେଁ । ପ୍ରଭାତ ଆସନ୍ତାଦିନ ବିଧାନସଭାରେ ଯେଉଁ ଆଲୋଚନା ହେବ ସେଥିପାଇଁ ପ୍ରସ୍ତୁତ ହୁଅନ୍ତି । ବିଧାନସଭାରେ କେଉଁ ପ୍ରସଙ୍ଗ ଉପରେ ସେ କ'ଣ କହିବେ ସେଥିପାଇଁ ସେ ବହି ପଢ଼ିଥା'ନ୍ତି । ଏମିତି ମୋଟା ଆକାରର ବଜେଟ୍ ପୁସ୍ତକକୁ ମଧ ସେ ପଢ଼ିବା ପାଇଁ ପଛାନ୍ତି ନାହିଁ । ମାନିବାକୁ ପଡ଼ିବ ପ୍ରଭାତଙ୍କୁ । ବିଧାନସଭା ଅଧିବେଶନକୁ ପରୀକ୍ଷା ବୋଲି ଭାବିନେଇ ପ୍ରଭାତ ପ୍ରସ୍ତୁତ ହୁଅନ୍ତି । ସତେ ଯେମିତି ସେ ଜଣେ ଛାତ୍ର । ଅବଶ୍ୟ ବିଭିନ୍ନ ବିଭାଗ ଉପରେ ପ୍ରଭାତ ବିଧାନସଭାରେ ପ୍ରାଂଜଳ ଭାବେ ବକ୍ତବ୍ୟ ରଖିପାରୁଛନ୍ତି । ଏହାର କାରଣ ଆଉ କିଛି ନୁହେଁ । ନିଜକୁ ଛାତ୍ର ଏବଂ ବିଧାନସଭା ଅଧିବେଶନକୁ ପରୀକ୍ଷା ବୋଲି ଭାବି ପ୍ରସ୍ତୁତ ହେଉଥିବାରୁ ପ୍ରଭାତ ବିଧାନସଭାରେ ବେଶ୍ ଦକ୍ଷତା ଦେଖାଇ ପାରନ୍ତି ।

# ରମେଶଙ୍କ ପରୀକ୍ଷା

ହଠାତ୍ ଦେଖାଗଲା ସୂଚନା, ପ୍ରଯୁକ୍ତି, ବିଜ୍ଞାନ ଓ କାରିଗରୀ କୌଶଳ ମନ୍ତ୍ରୀ ରମେଶ ମାଝୀ ବିଧାନସଭାରୁ ଲାପତା ହୋଇଯିବାର । ଅନେକ ଭାବିଲେ ଯେ ବୋଧହୁଏ ରମେଶ ତାଙ୍କ ନିର୍ବାଚନମଣ୍ଡଳୀ ନବରଙ୍ଗପୁର ଜିଲାର ଝରିଗାଁ ଗସ୍ତରେ ଯାଇଛନ୍ତି ବୋଲି । ତେଣୁ ବିଧାନସଭାକୁ ଆସିବାକୁ ଦୁଇ/ତିନିଦିନ ସମୟ ଲାଗିପାରେ । କିନ୍ତୁ ଦେଖାଗଲା ରମେଶ ବିଧାନସଭାକୁ ଆସିଲେ ନାହିଁ । ଏହାପରେ ରମେଶଙ୍କ ଲାପତାକୁ ନେଇ ଚର୍ଚ୍ଚା ଚାଲିଲା । ଜଣାପଡ଼ିଲା ରମେଶ ଯୁକ୍ତ ଦୁଇ ପରୀକ୍ଷା ଦେଉଛନ୍ତି ବୋଲି । ଏମିତି ରମେଶ ଆଦିବାସୀ ସଂପ୍ରଦାୟରୁ ଆସିଛନ୍ତି । ରାଜନୈତିକ ପରିବାରରେ ତାଙ୍କର ଜନ୍ମ । ବାପା ଯାଦବ ମାଝୀ ଜଣେ ନାମଜାଦିଆ ନେତା ଥିଲେ ଆଉ ବିଧାୟକ ଓ ମନ୍ତ୍ରୀ ବି ଥିଲେ । ଆଦିବାସୀ ସଂପ୍ରଦାୟର ହୋଇଥିବାରୁ ରମେଶଙ୍କ ପାଇଁ ଉଚ୍ଚଶିକ୍ଷା ଯେ ନିହାତି ଜରୁରୀ ତାହା ନୁହେଁ ।

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ତାଙ୍କର ଶିକ୍ଷାଗତ ଯୋଗ୍ୟତାକୁ ଦେଖି ଯେ ମନ୍ତ୍ରୀ କରିଛନ୍ତି ତାହା ବି ନୁହେଁ । ନଚେତ୍ ତାଙ୍କୁ ସୂଚନା, ପ୍ରଯୁକ୍ତି, ମତ୍ସ୍ୟ ଓ ପଶୁସଂପଦ ବିକାଶ ପରି ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ କରାଯାଇ ନଥା'ନ୍ତା । ଉଚ୍ଚଶିକ୍ଷିତ ନହୋଇ ମଧ୍ୟ ରମେଶ ଏହି ବିଭାଗକୁ ଏପରି ଚଳାଉଛନ୍ତି ଯେ ସତେ ଯେମିତି ସେ ଜଣେ ଦକ୍ଷ ମନ୍ତ୍ରୀ । କିନ୍ତୁ ଏହି ବିଭାଗର ମନ୍ତ୍ରୀ ହେବାପରେ କେଜାଣି କାହିଁକି ରମେଶ ତାଙ୍କର ଶିକ୍ଷାଗତ ଯୋଗ୍ୟତା ବଢ଼ାଇବା ପାଇଁ ଚାହିଁଲେ । ଯେଉଁଥିପାଇଁ ମନ୍ତ୍ରୀ ହୋଇ ମଧ୍ୟ ସେ ଯୁକ୍ତ ଦୁଇ ପରୀକ୍ଷା ଦେବା ପାଇଁ ଆଗଭର ହେଲେ । ମନ୍ତ୍ରୀ ପରୀକ୍ଷା ଦେବା ଓ ସାଧାରଣ ଛାତ୍ରଟିଏ ପରୀକ୍ଷା ଦେବା ମଧ୍ୟରେ ଆକାଶ-ପାତାଳ ପ୍ରଭେଦ ରହିଛି । ରାଜନୀତିର ଗଣ୍ଡି ମଧ୍ୟରେ ରହି ପରୀକ୍ଷା ପାଇଁ ପ୍ରସ୍ତୁତ ହେବା ଏତେ ସହଜ ନୁହେଁ । ଏମିତି ତ ଛାତ୍ରଛାତ୍ରୀମାନଙ୍କର ନିତିଦିନିଆ କର୍ତ୍ତବ୍ୟ ହେଉଛି ପାଠ ପଢ଼ିବା । ତେଣୁ ପରୀକ୍ଷା ପାଇଁ ସେମାନେ ପ୍ରସ୍ତୁତ ହେବା ସ୍ୱାଭାବିକ । ରମେଶ ଯେପରି ପରୀକ୍ଷା ଦେବା ପାଇଁ ଆଗ୍ରହୀ ହେଲେ ସେ କ୍ଷେତ୍ରରେ ଯଦି କାହା ଆଡ଼କୁ ବାହାବା ଯିବ ତେବେ ସେ ହେଲେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ । ରମେଶଙ୍କୁ ଯଦି ସେ ସୂଚନା, ପ୍ରଯୁକ୍ତି, ମତ୍ସ୍ୟ ଓ ପଶୁସଂପଦ ବିକାଶ ବିଭାଗର ମନ୍ତ୍ରୀ କରି ନଥା'ନ୍ତେ ତେବେ ରମେଶ ବୋଧହୁଏ ପରୀକ୍ଷା ଦେବା ପାଇଁ ଆଗ୍ରହୀ ହୋଇ ନଥା'ନ୍ତେ । ରମେଶଙ୍କର ପାଠପଢ଼ା ନିଶା ଅନ୍ୟ ମନ୍ତ୍ରୀଙ୍କୁ ପ୍ରଭାବିତ କରୁଛି କି ନାହିଁ ତାହା ଦେଖିବାକୁ ବାକି ରହିଛି ।

# ହାଡ଼ ସୁନ୍ଦରୀ ଓ ପ୍ରସନ୍ନ

**ସେ**ଦିନ ଏସ୍‌ଟିଭିର ଉଦ୍‌ଘାଟନ ଉତ୍ସବ ଜନତା ମଇଦାନ ଠାରେ ଚାଲିଥାଏ । ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସମେତ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର, ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀ ଏହି ଉତ୍ସବରେ ଅତିଥି ହୋଇଥା'ନ୍ତି । ହିନ୍ଦୀ ଚଳଚ୍ଚିତ୍ର ଅଭିନେତ୍ରୀ କ୍ୟାଟ୍ରିନା କେଫ୍ ମଧ୍ୟ ଏଥିରେ ଅତିଥି ହୋଇଥିଲେ । ଏମିତି କ୍ୟାଟ୍ରିନାଙ୍କ ସମ୍ପର୍କରେ ସାରା ଭୁବନେଶ୍ୱରରେ ସେତେବେଳେ ଜୋରଦାର୍ ପ୍ରଚାର ହୋଇସାରିଥିଲା । କୁଆଡ଼େ କ୍ୟାଟ୍ରିନା ଖୁବ୍ କମ୍ ସମୟ ସଭାରେ ରହିବେ । ତାଙ୍କର ପାରିଶ୍ରମିକ ଘଂଟାକୁ ୫୦ ଲକ୍ଷ ଟଙ୍କା । ଘଂଟାଏ ଟପିଗଲେ ସେ ପୁଣି ଆଉ ୫୦ ଲକ୍ଷ ଟଙ୍କା ନେବେ । ତେଣୁ ଯେମିତି ହେଲେ ସଭାକୁ ଘଂଟାକ ଭିତରେ ଆୟୋଜକଙ୍କୁ ସାରିବାକୁ ହେବ । ଆୟୋଜକଙ୍କ ପାଇଁ ଚିନ୍ତାର କାରଣ ଥିଲେ ପ୍ରସନ୍ନ ପାଟଶାଣୀ । ଏମିତି ପ୍ରସନ୍ନ ଭାଷଣ ଦେବା ଆରମ୍ଭ କଲେ ଶେଷ ହେବାକୁ ତାହା ବହୁ ସମୟ ଲାଗିଥାଏ । ଏହାକୁ ଆଖି ଆଗରେ ରଖି ପ୍ରସନ୍ନଙ୍କୁ ସୂଚାଇ ଦିଆଯାଇଥାଏ ଯେ ସଭାରେ ଭାଷଣ ଦୀର୍ଘ ନକରିବାକୁ । ଅବଶ୍ୟ ଏଭଳି ଅନୁରୋଧ ଶୁଣି ପ୍ରସନ୍ନଙ୍କୁ ପ୍ରଥମେ ଖଟ୍‌କା ଲାଗିଥିଲା । ସେ ଯେଉଁଠିକୁ ଅତିଥି ହୋଇଯାଆନ୍ତି

ସେଠାରେ ଭାଷଣ ଅଧିକ ସମୟ ଦେବା ପାଇଁ ଅନୁରୋଧ ହୋଇଥାଏ । କିନ୍ତୁ ଏଠାରେ ବ୍ୟତିକ୍ରମ ଘଟିଥିଲା । ପ୍ରସନ୍ନ କାରଣ ଜାଣିବାକୁ ଚାହିଁଲେ । ଜଣାପଡ଼ିଲା ଘଂଟାଏରୁ ଅଧିକ ସମୟ କ୍ୟାଟ୍ରିନା ରହିଲେ ପାରିଶ୍ରମିକ ସେହି ଅନୁସାରେ ନେବେ ବୋଲି । ପୁଣି ଲକ୍ଷେ କି ଦୁଇଲକ୍ଷ ନୁହେଁ ଏକାଥରକେ ୫୦ ଲକ୍ଷ ଟଙ୍କା । ପ୍ରସନ୍ନ ମଧ ତାଙ୍କ ଭାଷଣକୁ କାଟ୍‌ଛାଂଟ୍ କରିଦେଲେ । ଯାହା ସେ କହିଲେ ତାହା କ୍ୟାଟ୍ରିନା ବୁଝିପାରିଥିବେ କି ନାହିଁ ଜଣାନାହିଁ କିନ୍ତୁ ସେଠାରେ ଉପସ୍ଥିତ ଥିବା ଲୋକମାନେ ଭଲ ଭାବେ ବୁଝିଥିଲେ । କ୍ୟାଟ୍ରିନାଙ୍କୁ ପ୍ରସନ୍ନ କହିଲେ- ହାଡ଼ ସୁନ୍ଦରୀ ବୋଲି । ମାନେ ତାଙ୍କ ଶରୀରରେ ଥିବା ହାଡ଼କୁ ଦେଖାଇ ସେ ପଇସା ନେଉଛନ୍ତି । ଭୁବନେଶ୍ୱରୀଙ୍କ ନାମରେ ଭୁବନେଶ୍ୱର ହୋଇଛି । ଏଠାରେ କ୍ୟାଟ୍ରିନାଙ୍କ ଠାରୁ ବହୁ ସୁନ୍ଦରୀ ମହିଳା ଅଛନ୍ତି । ସେମାନଙ୍କୁ ଦେଖିଦେଲେ ଆଖି ଲାଖି ରହିବ । ସେମାନେ କ୍ୟାଟ୍ରିନାଙ୍କ ପରି ହାଡ଼ ସୁନ୍ଦରୀ ନୁହନ୍ତି । ସେମାନଙ୍କୁ କୁହାଯିବ ମାଂସ ସୁନ୍ଦରୀ । ମାନେ ବେଶ୍ ତଉଲତାଉଲ ଶରୀର । ଏମିତି ବି ପ୍ରସନ୍ନ କହିଲେ ଯେ କ୍ୟାଟ୍ରିନାଙ୍କ ପରିବର୍ତ୍ତେ ବରଂ ଭୁବନେଶ୍ୱରରେ ଥିବା ସୁନ୍ଦରୀଙ୍କୁ ଅତିଥି କରିଥିଲେ ସଭା ବେଶ୍ ସୌନ୍ଦର୍ଯ୍ୟପୂର୍ଣ୍ଣ ହୋଇପାରିଥା'ନ୍ତା । ଏଣିକି ତାଙ୍କୁ କହିଲେ ସେ ମଧ ସୁନ୍ଦରୀଙ୍କୁ ଅତିଥି କରାଇବାରେ ସହଯୋଗ କରିବେ । କ୍ୟାଟ୍ରିନା ମାତ୍ର କେତୋଟି ମୁହୂର୍ତ୍ତ ପାଇଁ ଭାଷଣ ଦେଲେ । ତାହା ପୁଣି ଠୁସୁମ୍ ଠାସମ୍ ଇଂରାଜୀରେ । ସଭା ଶେଷ ହେଲା । କ୍ୟାଟ୍ରିନା କ'ଣ ବୁଝିଲେ କେଜାଣି ପ୍ରସନ୍ନ ପାଟ୍ଟଶାଣୀଙ୍କ ସହ ହାତ ମିଳାଇ ଦେଲେ । ଏହାପରେ ସେ ତାଙ୍କ ବାଟରେ ଚାଲିଗଲେ । ଦେଖାଗଲା ଦର୍ଶକମାନେ ପ୍ରସନ୍ନଙ୍କ ପାଖକୁ ଚାଲିଆସିଲେ । କୁଆଡ଼େ କ୍ୟାଟ୍ରିନାଙ୍କୁ ନପାଇ ସେମାନେ ପ୍ରସନ୍ନଙ୍କ ସହିତ ହାତ ମିଳାଇଲେ । ପ୍ରସନ୍ନ ସେମାନଙ୍କୁ କହିଲେ କାହିଁ କ୍ୟାଟ୍ରିନା କାହିଁ ପାଟ୍ଟଶାଣୀ ବୋଲି । ଉତର ମିଳିଲା- ସଙ୍ଗେସଙ୍ଗେ କ୍ୟାଟ୍ରିନା ତାଙ୍କ ସହିତ ହାତ ମିଳାଇଛନ୍ତି ବୋଲି । ତେଣୁ ପ୍ରସନ୍ନଙ୍କ ହାତରେ କ୍ୟାଟ୍ରିନାଙ୍କ ହାତର ବାସ୍ନା ରହିଛି । ଆଉ ପ୍ରସନ୍ନଙ୍କ ହାତ ସହିତ ହାତ ମିଳାଇ ଦେଲେ କ୍ୟାଟ୍ରିନାଙ୍କ ହାତର ବାସ୍ନା ମଧ ସେମାନଙ୍କ ପାଖକୁ ଚାଲିଯିବ । ପ୍ରସନ୍ନ କିଛି ନକହି ସମସ୍ତଙ୍କ ସହିତ ହାତ ମିଳାଇଲେ । ଯାହା ହେଲେ ମଧ କ୍ୟାଟ୍ରିନାଙ୍କୁ ନପାଇ ଦର୍ଶକମାନେ ତାଙ୍କ ପାଖକୁ ଚାଲିଆସିଥିବାରୁ ସେଥିରେ ସେ ବହୁତ ଖୁସି ହୋଇଥିଲେ । ଆଉ ନିଜକୁ ଭାବୁଥିଲେ କ୍ୟାଟ୍ରିନଙ୍କର ବିକଳ୍ପ ବୋଲି । ମାନିବାକୁ ପଡ଼ିବ ପ୍ରସନ୍ନ ପାଟ୍ଟଶାଣୀଙ୍କୁ ।

# ହୋଲି, ଟୋପି, ଦଳ ଓ ଚଳ

**ହୋ**ଲିଖେଳ ଚାଲିଥାଏ । ଏମିତି ହୋଲିଖେଳ ଦିନ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ବାସଭବନ ନବୀନ ନିବାସରେ ବେଶ୍ ଭିଡ଼ ହୁଏ । କିନ୍ତୁ ସେଦିନ କାହିଁକି କେଜାଣି ସେମିତି

ଭିଡ଼ ହୋଇ ନଥିଲା । ମଧ୍ୟ-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନା ସବୁଥର ପରି ସେଥର ମଧ୍ୟ ତାଙ୍କ ପଳାସପଲ୍ଲୀ ବାସଭବନରେ ହୋଲି ଖେଳିଥିଲେ । ସେ ଏହିଦିନ ତାଙ୍କୁ ଯେଉଁମାନେ ରଙ୍ଗ ବୋଳିବାକୁ ଆସନ୍ତି ସେମାନଙ୍କୁ ବିଭିନ୍ନ ପ୍ରକାରର ଖାଇବା ଦେଇଥା'ନ୍ତି । ମାନେ ସତେ ଯେମିତି ହ୍ୱାଟ୍‌ନଟ୍ । ଯିଏ ଚାହିଁବ ଚା' ପିଇପାରିବ, ପୁଣି ଆଉ ଯଦି କିଏ ଚାହିଁଲା କଫି ପିଇପାରିବ । ପୁଣି ଯିଏ ଚାହିଁବ ଦହି ବି ପିଇପାରିବ ଆଉ ପୁଣି ଯିଏ ଚାହିଁବ ସେ ମଧ୍ୟ ଫଳ ଖାଇପାରିବ । କିନ୍ତୁ ପ୍ରସଙ୍ଗ ଏଇଠି ଶେଷ ହୋଇ ନଥିଲା । ବିଜୁ ଜନତା ଦଳ ଲେଖାଥାଇ ଶଙ୍ଖ ଚିହ୍ନ ଥିବା ଟୋପି ମଧ୍ୟ ସେଠାରେ ରଖାଯାଇଥିଲା । ସମସ୍ତେ ଟୋପିଟିଏ ପିନ୍ଧି ସେଠାରୁ ଯାଉଥା'ନ୍ତି । ଏମିତି ଟୋପି ପିନ୍ଧିଥିବା କେତେକ ବ୍ୟକ୍ତି ମଧ୍ୟ ସେମାନଙ୍କ ମଧ୍ୟରେ ଏହି ଟୋପିକୁ ନେଇ ହାଲ୍‌କା ଆଲୋଚନା କରୁଥିବାର ବି ଦେଖାଯାଇଥିଲା । ବିଜୁ ଜନତା ଦଳ ଓ ଶଙ୍ଖ ଚିହ୍ନ ଥାଇ ଟୋପି ହୋଇଥିବାରୁ ତାହା ବିଜେଡିର ପ୍ରଚାର ବୋଲି ମଧ୍ୟ କୁହାଗଲା । ଏମିତି ଭାଗିରଥୀ ବଡ଼ଜେନାଙ୍କର ଅନେକ ଶୁଭେଚ୍ଛୁ ଅଛନ୍ତି ଯେଉଁମାନେ ବିଜେଡିର ନୁହନ୍ତି । ଅନେକ ଅନ୍ୟ ଦଳର ବି ଥା'ନ୍ତି । ଅନେକ ମଧ୍ୟ କୌଣସି ଦଳରେ ନଥା'ନ୍ତି । କିନ୍ତୁ ସେମାନେ ସେହି ଟୋପି ପିନ୍ଧିଥିଲେ । ସେମାନଙ୍କୁ ଯେତେବେଳେ ବିଜେଡି ଟୋପି କାହିଁକି ପିନ୍ଧିଛ ବୋଲି ପ୍ରଶ୍ନ କରାଗଲା ସେତେବେଳେ ଉତର ମିଳିଲା କାହା ପାଇଁ ଦଳ ତ କାହା ପାଇଁ ଚୂଳ । ମାନେ ବିଜେଡି କର୍ମୀ ଓ ନେତାଙ୍କ ପାଇଁ ସେହି ଟୋପି ଦଳୀୟ ଟୋପି । ଆଉ ଯେଉଁମାନେ ବିଜେଡି ଦଳର ନୁହନ୍ତି ସେମାନଙ୍କ ପାଇଁ ଚୂଳର ସୁରକ୍ଷା ନିମନ୍ତେ ଟୋପି ଥିଲା ବୋଲି ଚର୍ଚ୍ଚା ହେଉଥିଲା । ଭାଗିରଥୀ ବଡ଼ଜେନା ବେଶ୍ ଚାଲାକ, ଚତୁର ଅଟନ୍ତି । ସେ ଜାଣନ୍ତି ଦଳର ସୁରକ୍ଷା ହେଲେ ତାଙ୍କର ସୁରକ୍ଷା । ସେ ଦଳ ଆଉ ଚୂଳ ଉଭୟକୁ ଲକ୍ଷ୍ୟ ରଖି ଟୋପି କରିଥିଲେ । ସେହି ଟୋପିକୁ ନେଇ ଯେଉଁ ଚର୍ଚ୍ଚା ଆରମ୍ଭ ହୋଇଥିଲା ତାହା ବହୁଦିନ ଧରି ଚାଲିଥିଲା ।

## କାନ୍ଦୁଲ ପ୍ରେମରେ ନବୀନ

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଯେତେବେଳେ ସଭାସମିତିରେ ଯୋଗ ଦେବାକୁ ଯାଆନ୍ତି ଆଉ ଯଦି ସେହି ସ୍ଥାନରେ ମଧ୍ୟାହ୍ନ ଭୋଜନ କିମ୍ବା ରାତ୍ରିଭୋଜନର ଆୟୋଜନ ହୋଇଥାଏ ତେବେ ନବୀନ ସେଠାରେ କ'ଣ ଖାଆନ୍ତି ତାହା ଜାଣିବା ପାଇଁ ସେହି ଅଂଚଳ ବାସିନ୍ଦାଙ୍କ ମଧ୍ୟରେ ଉତ୍ସୁକତା ସୃଷ୍ଟି ହୋଇଥାଏ । ଏମିତି ନବୀନ କଳାହାଣ୍ଡି ଜିଲା ଗସ୍ତରେ ଯାଇଥା'ନ୍ତି । ସେଠାରେ ନବୀନଙ୍କର ମଧ୍ୟାହ୍ନ ଭୋଜନ କରିବାର କାର୍ଯ୍ୟକ୍ରମ ଥାଏ । ତେବେ ନବୀନ କ'ଣ ଖାଇବେ ତାହାକୁ ନେଇ ଜିଲା ପ୍ରଶାସନର ଯେତିକି ମୁଣ୍ଡବ୍ୟଥା

ହେଉ ନଥାଏ ତା'ଠାରୁ ଅଧିକ ମୁଣ୍ଡବ୍ୟଥା ହେଉଥାଏ ଜିଲାର ବିଜେଡି ନେତାମାନଙ୍କର । ନବୀନ ଆମିଷ ଖାଆନ୍ତୁ କି ନିରାମିଷ ଖାଆନ୍ତୁ କିନ୍ତୁ ଡାଲି ଯେ ନିଶ୍ଚିତ ଖାଇବେ ଏହା ସମସ୍ତେ ଜାଣନ୍ତି । ଏହି ଦୃଷ୍ଟିରୁ ନବୀନଙ୍କ ପାଇଁ ହରଡ଼ କି ମୁଗ ଡାଲି ହେବ ସେ ନେଇ ଚାଲିଲା ଚର୍ଚ୍ଚା । କେହି ଜଣେ କହିଲେ- ହରଡ଼ କିମ୍ବା ମୁଗ ନୁହେଁ ଏଥର ନବୀନଙ୍କୁ ଦିଆଯିବ କାନ୍ଦୁଲ ଡାଲି । ଆଉ ଏହି ଡାଲି ବହଳିଆ ହେବ । ପୁଣି ଚର୍ଚ୍ଚା ହେଲା- ନବୀନଙ୍କ ପାଇଁ ଖାସିମାଂସ କି ରୋହି,ଭାକୁର ମାଛ କି ଚିଙ୍ଗୁଡ଼ି ମାଛ କି କୁକୁଡ଼ା ମାଂସ କେଉଁ ତରକାରୀ ହେବ । କେହିକେହି ପ୍ରସ୍ତାବ ଦେଲେ ଖାସିମାଂସ ଠାରୁ ଆରମ୍ଭ କରି କୁକୁଡ଼ା ମାଂସ ପର୍ଯ୍ୟନ୍ତ ସବୁକିଛି ତରକାରୀ କରାଗଲେ ପାଇଟି ଶେଷ । ତେଣିକି ନବୀନ ଯାହା ଖାଇବେ । କୁଆଡ଼େ ଏହି ପ୍ରସ୍ତାବ ଜିଲାର ମନ୍ତ୍ରୀ ପୁଷ୍ପେନ୍ଦ୍ର ସିଂହଦେଓଙ୍କ ମନକୁ ଗଲାନାହିଁ । ସେ ପ୍ରସ୍ତାବ ଦେଲେ ନବୀନ ନିବାସରୁ ବୁଝିବା ପାଇଁ । ନବୀନ ନିବାସରୁ ବୁଝାଗଲା । ସେଠାରେ ମଧ କୌଣସି ଠୋସ୍ ତଥ୍ୟ ମିଳିଲା ନାହିଁ । ଏହାପରେ ନବୀନଙ୍କ ସହିତ ଯୋଗାଯୋଗ କରାଗଲା । ନବୀନ ତାଙ୍କ ମନର କଥାଟି କହିଦେଲେ । ମାନେ କୁକୁଡ଼ା ମାଂସ ତରକାରୀ ଖାଇବେ ବୋଲି । ଏହାପରେ ନବୀନଙ୍କ ପାଇଁ ଅଣାଗଲା ଦେଶୀ କୁକୁଡ଼ା । ସେଦିନ ଦେଶୀ କୁକୁଡ଼ା ମାଂସ ତରକାରୀ ସହିତ କାନ୍ଦୁଲ ଡାଲି ବେଶ୍ ସ୍ୱାଦିଷ୍ଟ ହୋଇଥିଲା । କାନ୍ଦୁଲ ଡାଲିର ସ୍ୱାଦ ଅନ୍ୟ ଡାଲି ଠାରୁ ଭିନ୍ନ ଅଟେ । ଆଉ ଅଳ୍ପ ମିଠା ଲାଗେ । ଏହି ଡାଲିକୁ ଗୋଳାଇ ଭାତ ଖାଇଲେ ଭାତ ଆପେଆପେ ପେଟ ଭିତରକୁ ଚାଲିଯିବ । ସେଦିନ ନବୀନ କାନ୍ଦୁଲ ଡାଲି ଖାଇ ବେଶ୍ ଖୁସ୍ ଥିବାର ଦେଖାଯାଇଥିଲା ।

# ପ୍ରଭାତଙ୍କ ସଉକ

ପ୍ରଭାତ ବିଶ୍ୱାଳ ୨୦୦୦ ମସିହାରେ ପ୍ରତ୍ୟକ୍ଷ ରାଜନୀତିକୁ ଆସିଲେ । ଏହିବର୍ଷ ସେ ସ୍ୱାଧୀନ ଭାବେ କଟକ ସଦରରୁ ପ୍ରାର୍ଥୀ ହେଲେ । ସାରା ନିର୍ବାଚନମଣ୍ଡଳୀରେ ପ୍ରଭାତ ଜିତୁଛନ୍ତି ବୋଲି ଚର୍ଚ୍ଚା ହେଲା । ହଠାତ୍ ଶୁଣାଗଲା ବିଜେପି ପ୍ରାର୍ଥୀ ନିବେଦିତା ପ୍ରଧାନ ଦୁର୍ଘଟଣାଗ୍ରସ୍ତ ହୋଇଛନ୍ତି ବୋଲି । ଏହାପରେ ନିବେଦିତାଙ୍କ ପ୍ରତି ଏକ ସମବେଦନା ସୃଷ୍ଟି ହେଲା । ସେତେବେଳକୁ ହାତରେ ଆଉ ସମୟ ନଥାଏ । ପ୍ରଭାତ ଜିତୁଜିତୁ ହାରିଗଲେ । ଏହାପରେ ପ୍ରଭାତ କଟକ ସଦରରେ ତାଙ୍କର ସଂଗଠନ ଜାରି ରଖିଲେ । ୨୦୦୪ ମସିହାରେ ସେ ପୁଣି କଟକ ସଦରରୁ ସ୍ୱାଧୀନ ପ୍ରାର୍ଥୀ ହେଲେ ଆଉ ଜିତିଲେ । ବିଧାନସଭାରେ ବିଜେଡିର ସହଯୋଗୀ ସଭ୍ୟ ହେଲେ । ୨୦୦୯ ମସିହାରେ ସେ କଟକ-ଚୌଦ୍ୱାରରୁ ବିଜେଡି ପ୍ରାର୍ଥୀ ହୋଇ ଜିତିଲେ । ଏମିତି ସଂଗଠନ କ୍ଷେତ୍ରରେ ସେ ବିଭିନ୍ନ ସମୟରେ ବେଶ୍ ପ୍ରଶଂସିତ ହୋଇଛନ୍ତି । କିନ୍ତୁ ତାଙ୍କର ଯେ ଏକ ଅଜବ ସଉକ ଅଛି ତାହା ବୋଧହୁଏ କେହି ଜାଣନ୍ତି ନାହିଁ । ପ୍ରଭାତଙ୍କ

ପାଖକୁ ଯଦି କେହି ଚାଲିଯିବେ ଆଉ ଗତ ୧୦ ବର୍ଷର ସମ୍ବାଦପତ୍ରରେ କେଉଁଠି କ'ଣ ପ୍ରକାଶ ପାଇଛି ତାହା ଜାଣିବାକୁ ଚାହିଁବେ ତେବେ ପ୍ରଭାତ ସେ ସମ୍ପର୍କରେ ସମୟ ନେଇ ଜଣାଇ ଦେବେ । ପ୍ରଭାତ କୁଆଡ଼େ ସମ୍ବାଦପତ୍ରର ଲାଇବ୍ରେରୀ କରିଛନ୍ତି ଏବଂ ଯେବେଠାରୁ କଟକ ସଦର ନିର୍ବାଚନରେ ଅବତୀର୍ଣ୍ଣ ହେଲେ ସେବେଠାରୁ ସେ ଏହି ଲାଇବ୍ରେରୀ କରିଛନ୍ତି । ମାନେ ୧୦ ବର୍ଷର ସମ୍ବାଦପତ୍ର ପ୍ରଭାତଙ୍କ ପାଖରେ ମିଳିବ । ପ୍ରଭାତଙ୍କର ଏହା ଏକ ସଉକ ବୋଲି ଏବେ ଚର୍ଚ୍ଚା ହେଉଛି । ପ୍ରଭାତ ବିଭିନ୍ନ ସମୟରେ ବିଧାନସଭା ହେଉ କିମ୍ବା ସାଧାରଣ ସଭା ହେଉ ସେଠାରେ ସବୁବେଳେ ତଥ୍ୟ ରଖି ବକ୍ତବ୍ୟ ଦେବାକୁ ଯଥାସାଧ୍ୟ ଉଦ୍ୟମ କରିଥା'ନ୍ତି । ଆଉ ପୁରୁଣା ସମ୍ବାଦପତ୍ର ପଢ଼ିଲେ ହିଁ ଏହି ତଥ୍ୟ ମିଳିବ ବୋଲି ପ୍ରଭାତ ଧରିନେଇଛନ୍ତି । ମାନିବାକୁ ପଡ଼ିବ ପ୍ରଭାତଙ୍କୁ । ଯେଉଁଥିପାଇଁ ସେ ଅନ୍ୟ ବିଧାୟକଙ୍କ ଠାରୁ ବ୍ୟତିକ୍ରମ ବୋଲି କୁହାଯାଉଛି । ଦେଖାଯାଉ ପ୍ରଭାତ ତାଙ୍କର ସମ୍ବାଦପତ୍ର ସଂଗ୍ରହ ସଉକକୁ କେତେଦିନ ବଜାୟ ରଖିପାରୁଛନ୍ତି ।

# ମୁଗସିଝା ଜଳଖିଆ

**ପୁ**ରୁଣା କାଳରେ ଜଳଖିଆ ବୋଲି କୁହାଗଲେ ଚୁଡ଼ା, ମୁଢ଼ି, ଛତୁଆ, ପରଟା ପ୍ରଭୃତିକୁ ଧରାଯାଇଥାଏ । କିନ୍ତୁ ସମୟ ବଦଳିଯିବା ପରେ ଏହି ଜଳଖିଆରେ ଅନେକ କିଛି ଯୋଡ଼ି ହୋଇଯାଇଛି । ଯେମିତି ବରା, ଆଳୁଚପ୍, ସିଙ୍ଗଡ଼ା, ପକଡ଼ି, ବିସ୍କୁଟ୍, ପାଉଁରୁଟି, ଇଡ୍‌ଲି, ଉପମା, ଦୋସା ପ୍ରଭୃତି । କିନ୍ତୁ କେତେକ କ୍ଷେତ୍ରରେ ଏହି ଜଳଖିଆରେ ମଧ୍ୟ ବ୍ୟତିକ୍ରମ ଦେଖାଯାଉଛି । ଯେମିତି ପରିବହନ ଓ ବାଣିଜ୍ୟ ମନ୍ତ୍ରୀ ସଂଜୀବ ସାହୁ । ସଂଜୀବ ଜଣେ ଭୋଜନପ୍ରିୟ ଲୋକ । ସକାଳେ ମୁଢ଼ି ହେଉ କି ଚୁଡ଼ା ହେଉ ତାହା ହେଉଛି ତାଙ୍କର ପ୍ରିୟ ଜଳଖିଆ । ଆଉ ଅପରାହ୍ନ ୨ଟାରୁ ୩ଟା ମଧ୍ୟରେ ସେ ତାଙ୍କର ମଧ୍ୟାହ୍ନ ଭୋଜନ କରିଥା'ନ୍ତି । ଏବେ କିନ୍ତୁ ସଂଜୀବ ସାହୁ ତାଙ୍କର ଜଳଖିଆରେ ମୁଢ଼ି ଆଉ ଚୁଡ଼ା ଖାଉନାହାନ୍ତି । ପିଲାଦିନର ମୁଗସିଝା ଜଳଖିଆ ତାଙ୍କର ମନେ ପଡ଼ିଯାଉଛି । ପିଲାଦିନେ ମୁଗସିଝା ଜଳଖିଆ ତାଙ୍କର ସବୁଠାରୁ ପ୍ରିୟ ଥିଲା । ସଂଜୀବ ସେହି ପିଲାଦିନର ସ୍ମୃତିକୁ ମନେ ପକାଇ ମୁଗ ଜଳଖିଆ ଖାଉଛନ୍ତି । କିନ୍ତୁ ସଂଜୀବଙ୍କର ବୟସ ଯେ ବଢ଼ିଯାଇଛି ତାହା ବୋଧହୁଏ ସେ ଜାଣିପାରୁନାହାନ୍ତି । ମୁଗସିଝା ଜଳଖିଆ ମୁଢ଼ି କିମ୍ବା ଚୁଡ଼ାର ବିକଳ୍ପ ନୁହେଁ । ମୁଢ଼ି ଅପେକ୍ଷା ଚୁଡ଼ା ଆହୁରି ନିଦା । ସକାଳେ ଚୁଡ଼ା ଜଳଖିଆ ଖାଇଥିଲେ ପେଟ ଭରପୂର ଥାଏ । ଭୋକ ଶୀଘ୍ର ହୁଏନାହିଁ । କିନ୍ତୁ ମୁଗସିଝା ଜଳଖିଆ ଖାଇଲେ ଭୋକକୁ ବଢ଼ାଏ ଆଉ ସବୁବେଳେ ଖାଇବାକୁ ଇଚ୍ଛା ହୁଏ । ସେଦିନ ବିଧାନସଭାରେ ସଂଜୀବଙ୍କ ପ୍ରଶ୍ନୋତର କାର୍ଯ୍ୟକ୍ରମ ଥାଏ । ଏହି କାର୍ଯ୍ୟକ୍ରମକୁ ସାରିଦେଇ ସଂଜୀବ ତାଙ୍କ ବିଧାନସଭା

କାର୍ଯ୍ୟାଳୟକୁ ଚାଲିଗଲେ । ହଠାତ୍ ତାଙ୍କ ପାଟିରୁ ବାହାରିଗଲା ଭୋକ କାହିଁକି ହେଉଛି । ଏହାପରେ ତାଙ୍କ ପାଇଁ ଦହିବରା ଆସିଲା । ସେ ଦହିବରା ଖାଇବା ସମୟରେ ପ୍ରକୃତ କଥାକୁ ଫିଟାଇଦେଲେ । ଚୁଡ଼ା ଖାଇବା ବଦଳରେ ଏବେ ମୁଗସିଝା ଖାଉଛନ୍ତି । ଅବଶ୍ୟ ମୁଗସିଝା ସ୍ୱାସ୍ଥ୍ୟପକ୍ଷେ ହିତକାରକ । କିନ୍ତୁ ନେତାଙ୍କ ପାଇଁ ମୁଗସିଝା ଜଳଖିଆ ହୋଇପାରିବ ନାହିଁ । ନେତାମାନେ ସକାଳେ ଚୁଡ଼ା ଖାଇଲେ ହିଁ ତାହା ଭୋକକୁ ସାମ୍ଭାଳି ନେବ । ଏମିତି ଅନେକ ନେତା ମଧ୍ୟ ସକାଳେ ଚୁଡ଼ା ନଖାଇ ଜଳଖିଆରେ ରୁଟି ଖାଉଛନ୍ତି । କିନ୍ତୁ ଯେତେ ଯାହା ହେଲେ ମଧ୍ୟ ନେତାଙ୍କ ପାଇଁ ଚୁଡ଼ା ଜଳଖିଆ ହିଁ ଜିନ୍ଦାବାଦ୍ ।

# ମେରୁ ଉପବାସ

**ମେ**ରୁ ଉପବାସ କୁହାଗଲେ ସହରବାସୀଙ୍କ ଅପେକ୍ଷା ଗାଁଲୋକମାନେ ଅଧିକ ଜାଣନ୍ତି । ଦଣ୍ଡଯାତ୍ରାକୁ ବି ମେରୁ ବୋଲି କୁହାଯାଏ । ତେବେ ମେରୁ ଉପବାସ କରିବାରେ ଗଂଜାମ ଜିଲାର ବାସିନ୍ଦାମାନେ ବେଶ୍ ଆଗରେ ରହିଛନ୍ତି । ସେଦିନ କହୁକହୁ ଗ୍ରାମ୍ୟ ଉନ୍ନୟନ ଓ ଆଇନ ମନ୍ତ୍ରୀ ବିକ୍ରମ କେଶରୀ ଆରୁଖ ଏହି ମେରୁ ଉପରେ ମରମ କଥାଟିଏ କହିଦେଲେ । ବଜେଟ୍ ଅଧିବେଶନ ଚାଲିଥିବା ବେଳେ ଅର୍ଥମନ୍ତ୍ରୀ ଓ ବାଚସ୍ପତିଙ୍କ ପକ୍ଷରୁ ଭିନ୍ନଭିନ୍ନ ଭୋଜି ଦିଆଯାଏ । ସେପରି ଭୋଜି ରାଜ୍ୟ ଅତିଥି ଭବନରେ ହୋଇଥିଲା । ବିକ୍ରମ ଦୁଇଦିନ ଯାକ ନିରାମିଷ ଖାଇଲେ । କାହିଁକି ନିରାମିଷ ଖାଉଛନ୍ତି ବୋଲି କେତେକ ବିଧାୟକ ଜାଣିବାକୁ ଚାହିଁଲେ । ବିକ୍ରମଙ୍କ ପାଟିରୁ ଆପେଆପେ ବାହାରି ଆସିଲା ମେରୁ ବୋଲି । ଏହାପରେ ଗଂଜାମ ଜିଲାରେ କିପରି ମେରୁ ଉପବାସ କରାଯାଏ ସେ ସମ୍ପର୍କରେ ବିକ୍ରମ ବଖାଣିଲେ । ଯେତେ ଯାହା ହେଲେ ମଧ୍ୟ ମେରୁ ଉପବାସ ଚାଲିଥିବା ବେଳେ ଗଂଜାମୀ କେବେ ଆମିଷ ଖାଏନାହିଁ । ଯେହେତୁ ସେ ଗଂଜାମୀ ତେଣୁ ଏହି ସମୟରେ ଆମିଷ ଖାଉନାହାନ୍ତି । ବିକ୍ରମ ମେରୁ ସମ୍ପର୍କରେ ବଖାଣୁଥିବା ବେଳେ କେହି ଜଣେ ବିଧାୟକ କହିଲେ- ରଥଯାତ୍ରା ସମୟରେ କ'ଣ ମେରୁ ହୋଇଥାଏ କି । ସେତେବେଳେ ତ ଆମିଷ ଆପଣ ଖାଆନ୍ତି ନାହିଁ । ବିକ୍ରମ କହିଲେ- ରଥଯାତ୍ରା ସମୟରେ ଆମିଷ ନଖାଇବାର ନାହିଁ । କିନ୍ତୁ ଯେବେଠାରୁ ସେ ଆଇନ ବିଭାଗର ମନ୍ତ୍ରୀ ହେଲେ ସେବେଠାରୁ ରଥଯାତ୍ରା ସମୟରେ ସେ ଆମିଷ ଖାଉନାହାନ୍ତି । କେଜାଣି କାହିଁକି ଆମିଷ ଖାଇବାକୁ ତାଙ୍କର ଏହି ସମୟରେ ଇଚ୍ଛା ହୁଏନାହିଁ । ଯାହା ହେଲେ ଆଇନ ବିଭାଗ ଅଧିନରେ ଜଗନ୍ନାଥ ମନ୍ଦିର ରହିଛି । ଆଇନ ବିଭାଗର ସେ ମନ୍ତ୍ରୀ ହୋଇଥିବାରୁ ନିଜକୁ ଜଗନ୍ନାଥଙ୍କ ସେବକ ବୋଲି ସେ ଭାବୁଛନ୍ତି । ହୋଇପାରେ ଜଗନ୍ନାଥ ତାଙ୍କୁ ରଥଯାତ୍ରା ସମୟରେ ଆମିଷ ନଖାଇବା ପାଇଁ ଅଦୃଶ୍ୟରେ ବାରଣ କରିଥାଇପାରନ୍ତି । ଯେଉଁଥିପାଇଁ ସେ ଏହି ସମୟରେ ଆମିଷ ଖାଇବାକୁ ଇଚ୍ଛା କରି ନଥା'ନ୍ତି । ଆଉ କେଉଁଦିନ

ଆମିଷ ଖାଉନାହାନ୍ତି ବୋଲି ପଚରାଯିବାରୁ ବିକ୍ରମ କହିଲେ- ସେ ଜଣେ ଖାଦ୍ୟ ରକ୍ଷିକେଶୁ । କିନ୍ତୁ ଧର୍ମକୁ ସେ ବେଶ୍ ମାନନ୍ତି । ତେଣୁ ଯେତେବେଳେ ଆମିଷ ଖାଇବା ଦରକାର ନାହିଁ ସେତେବେଳେ ସେ ଆମିଷ ଖାଆନ୍ତି ନାହିଁ । ଏହା କହି ସେ ଜୋରରେ ହସି ଉଠିଲେ । ଆଉ ତାଙ୍କ ହସ ସହିତ କିଛି ବିଧାୟକ ମଧ୍ୟ ହସି ଚାଲିଲେ ।

# ପ୍ରସନ୍ନଙ୍କ ବୈରାଗ୍ୟ

**ଭୁ**ବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀଙ୍କୁ କେଉଁ ଜ୍ୟୋତିଷ ଭବିଷ୍ୟବାଣୀ କରିଛନ୍ତି ଯେ ସେ ଯେତେଦିନ ପର୍ଯ୍ୟନ୍ତ ଚାହୁଁଥିବେ ସେତେଦିନ ପର୍ଯ୍ୟନ୍ତ ନିର୍ବାଚନରେ ଜିତୁଥିବେ । ଯେଉଁଦିନ ଚାହିଁବେ ନାହିଁ ସେହିଦିନଠାରୁ ଆଉ ସେ ପ୍ରାର୍ଥୀ ହେବେନାହିଁ । କିନ୍ତୁ ଜ୍ୟୋତିଷ ତାଙ୍କୁ ଅସଲ କଥାଟିଏ କହିନାହିଁ । ଆଉ ସେ ଅସଲ କଥାଟି ହେଲା ପ୍ରସନ୍ନ ନିଜ ଘର ଛାଡ଼ି ଅନ୍ୟ ସ୍ଥାନକୁ ଚାଲିଯିବେ । ଏକ ପ୍ରବାଦ ଅଛି । ତାହା ହେଲା- ପୁତ୍ର ନିବାସୀ, ପତ୍ନୀ ପାଶେ, ଅଥବା ଚଳିବ ସନ୍ନ୍ୟାସେ । ଏହା କୁଆଡ଼େ ପ୍ରସନ୍ନଙ୍କ ପାଇଁ ଏବେ ପ୍ରଯୁଜ୍ୟ ହେବାକୁ ଯାଉଛି । ପ୍ରସନ୍ନଙ୍କୁ ଯଦିଓ ବାବା ବୋଲି କୁହାଯାଉଛି କିନ୍ତୁ ସେ ପରିବାର ପ୍ରିୟ । ତାଙ୍କର ପତ୍ନୀ, ଝିଅ ଓ ଦୁଇ ପୁଅ ଅଛନ୍ତି । ପୁଅ ଓ ଝିଅ ସମସ୍ତେ ବିବାହିତ । ଯେତେବେଳେ ପ୍ରସନ୍ନ ପାଟଶାଣୀ କଂଗ୍ରେସ ଛାଡ଼ିଦେଲେ ସେତେବେଳେ ୮ ନମ୍ବର ଡିଏଭି ସ୍କୁଲ ସମ୍ମୁଖରେ ତାଙ୍କୁ ମିଳିଥିବା ସରକାରୀ ଜାଗାରେ ସେ ଘର କରି ନଥିଲେ । ସେହି ଜାଗାରେ ସେ ଛୋଟ ଘରଟିଏ କଲେ । ସେହି ଘର ନିର୍ମାଣ ବାବଦରେ ହୋଇଥିବା ବ୍ୟୟ ଖୋର୍ଦ୍ଧା ନିର୍ବାଚନମଣ୍ଡଳୀ ବାସିନ୍ଦା ବହନ କରିଥିଲେ । ଏ ସମ୍ପର୍କରେ ମଧ୍ୟ ସେହି ଘରେ ଏକ ଫଳକ ଲଗାଯାଇଥିଲା । ତେବେ ସମୟ ଅତିକ୍ରମ କରିଯାଇଛି । ପ୍ରସନ୍ନଙ୍କର ଭୁବନେଶ୍ୱରରେ ଦୁଇଟି ଘର ଅଛି । ଗୋଟିଏ ଘର ପଳାଶପଲ୍ଲୀରେ ଏବଂ ଅନ୍ୟ ଘରଟି ଡିଏଭି ସ୍କୁଲ ସମ୍ମୁଖରେ । ଦୁଇ ପୁଅଙ୍କୁ ଏହି ଦୁଇଟି ଘର ପ୍ରସନ୍ନ ଦେଇଦେଇଛନ୍ତି । ସେ ରହୁଥିବା ଡିଏଭି ସ୍କୁଲ ସମ୍ମୁଖ ଘରେ ଚାଲିଛି ସାଜସଜା । ଆଉ ଏହି ସାଜସଜା ଶେଷ ହୋଇଗଲେ ପ୍ରସନ୍ନଙ୍କୁ ସେହି ଘରୁ ବିଦାୟ ନେବାକୁ ହେବ । ପ୍ରସନ୍ନ ଯିବେ ଖଣ୍ଡଗିରି ନିକଟରେ ଥିବା ଏକ ଆଶ୍ରମକୁ । ଏଠାରେ ମଧ୍ୟ ଏକ ହନୁମାନ ମନ୍ଦିର ତିଆରି ହୋଇଛି । ଏହି ଆଶ୍ରମରେ ପ୍ରସନ୍ନଙ୍କ ଦରବାର ଚାଲିବ । ଆଉ ସବୁଦିନ ପାଇଁ ପ୍ରସନ୍ନ ଆଶ୍ରମରେ ରହିବେ । ମଣିଷର ବୟସ ବଢ଼ିଗଲେ ବିଭିନ୍ନ ସମୟରେ ଭିନ୍ନଭିନ୍ନ ଘଟଣା ଘଟେ । ଯେମିତି ପୁଅ ବଡ଼ ହୋଇଗଲେ ବାପାର ଘର ଓ ସମ୍ପତ୍ତିର ଅଧିକାର ତାକୁ ମିଳେ । ତାହା ହିଁ ହୋଇଛି ପ୍ରସନ୍ନଙ୍କ କ୍ଷେତ୍ରରେ । ଯେଉଁଥିପାଇଁ ପ୍ରସନ୍ନଙ୍କୁ ବାବା କୁହାଯାଉଥିଲେ ମଧ୍ୟ ସେ ଆଶ୍ରମରେ ରହୁ ନଥିବାରୁ ତାଙ୍କୁ କେହି ପ୍ରକୃତ ବାବା ବୋଲି କହୁ ନଥିଲେ । ଏବେ ଘର ଛାଡ଼ି ପ୍ରସନ୍ନ ଆଶ୍ରମରେ ରହିଲେ ସେ ହୋଇଯିବେ ପ୍ରକୃତ ବାବା ।

# ବେଦ ପ୍ରକାଶଙ୍କ ଆତ୍ମସନ୍ତୋଷ

**ବେଦ** ପ୍ରକାଶ ଅଗ୍ରୱାଲ ଏବେ ବିଜେଡି ନେତା । କେନ୍ଦ୍ରାପଡ଼ା ଥିଲା ତାଙ୍କର ରାଜନୈତିକ ପେଣ୍ଠସ୍ଥଳୀ । ୧୯୭୪ ମସିହାରେ ଉତ୍କଳ କଂଗ୍ରେସରୁ ସେ କେନ୍ଦ୍ରାପଡ଼ାରୁ ନିର୍ବାଚିତ ହୋଇଥିଲେ । କିନ୍ତୁ ବହୁ ପୂର୍ବରୁ ସେ ରାଜନୀତି ସହିତ ସଂପୃକ୍ତ ଥିଲେ । ଏହାପରେ ୧୯୭୭ ମସିହାରେ ଜନତା, ୧୯୯୦ ମସିହାରେ ଜନତା ଦଳ, ୨୦୦୦ ମସିହାରେ କେନ୍ଦ୍ରାପଡ଼ାରୁ ବିଜେପି ପ୍ରାର୍ଥୀ ହୋଇ ବିଜୟୀ ହୋଇଥିଲେ । ୨୦୦୯ରେ ସେ ପାଟକୁରାରୁ ବିଜେଡି ଟିକେଟରେ ବିଜୟୀ ହୋଇଛନ୍ତି । ଏମିତି ପୂର୍ବରୁ ସେ ମଧ ମନ୍ତ୍ରୀ ଥିଲେ । ଏଥର ମନ୍ତ୍ରୀ ହୋଇ ନଥିବାରୁ ତାଙ୍କ ମନରେ ସେପରି କିଛି ଅସନ୍ତୋଷ ଅଛି ନା ନାହିଁ ତାହା ପ୍ରକାଶ୍ୟରେ ସେ କହନ୍ତି ନାହିଁ । କିନ୍ତୁ ଯେଉଁ ପ୍ରସଙ୍ଗଟିକୁ ସେ ଖୋଲାଖୋଲି ଭାବେ ଏବେ କହୁଛନ୍ତି ତାହା ହେଲା ବିଜୟ ମହାପାତ୍ରଙ୍କ ବିରୋଧରେ ଲଢ଼ି ତାଙ୍କୁ ହରାଇବାକୁ ତାଙ୍କର ଇଚ୍ଛା ଥିଲା । ୨୦୦୯ ମସିହା ନିର୍ବାଚନରେ ସେହି ଇଚ୍ଛା ତାଙ୍କର ପୂରଣ ହୋଇଛି । ଏହାର କାରଣ ଆଉ କିଛି ନୁହେଁ । ୧୯୯୫ ମସିହା ନିର୍ବାଚନରେ କୁଆଡ଼େ ବେଦ ପ୍ରକାଶଙ୍କୁ ହରାଇବାରେ ମୁଖ୍ୟ ଅସ୍ତ୍ର ସାଜିଥିଲେ ବିଜୟ ମହାପାତ୍ର । ସେତେବେଳେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ଦଳ ଲଢୁଥିଲା । କେନ୍ଦ୍ରାପଡ଼ାରେ ତହୁଁ ବଡ଼ି ତହୁଁ ବଡ଼ି ନେତା ଥିଲେ । ବିଜୟ ମହାପାତ୍ର, ନଳିନୀ ମହାନ୍ତି, ବେଦ ପ୍ରକାଶ ଅଗ୍ରୱାଲ ପ୍ରମୁଖ କେହି କାହାରିକୁ କମ୍ ନଥିଲେ । ବିଜୁ ପଟ୍ଟନାୟକଙ୍କ ସରକାରରେ ଏମାନେ ସମସ୍ତେ ମନ୍ତ୍ରୀ ଥିଲେ । କିନ୍ତୁ ବେଦ ପ୍ରକାଶଙ୍କର କହିବା ହେଉଛି ୧୯୯୫ ନିର୍ବାଚନରେ ସେ ହାରି ନଥା'ନ୍ତେ । ତାଙ୍କୁ ବିଜୟ ମହାପାତ୍ର ହରାଇ ଦେଇଥିଲେ । ସୁଯୋଗ ଅପେକ୍ଷାରେ ଥିଲେ ବେଦ ପ୍ରକାଶ । କେବେ ବିଜୟଙ୍କ ବିରୋଧରେ ପ୍ରାର୍ଥୀ ହୋଇ ତାଙ୍କୁ ହରାଇବେ ବୋଲି । ୨୦୦୯ ମସିହା ନିର୍ବାଚନରେ ବେଦପ୍ରକାଶଙ୍କୁ ସେହି ସୁଯୋଗ ମିଳିଲା । ବେଦ ପ୍ରକାଶ କେବେବି ଭାବି ନଥିଲେ କେନ୍ଦ୍ରାପଡ଼ା ଛାଡ଼ି ସେ ଅନ୍ୟ ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେବେ ବୋଲି । ୨୦୦୯ ନିର୍ବାଚନରେ କେନ୍ଦ୍ରାପଡ଼ା ସଂରକ୍ଷିତ ହୋଇଗଲା । ପଡ଼ୋଶୀ ନିର୍ବାଚନମଣ୍ଡଳୀ ପାଟକୁରାରୁ ସେ ପ୍ରାର୍ଥୀ ହେଲେ ଓ ତାଙ୍କ ବିରୋଧରେ ବିଜେପିରୁ ଲଢ଼ିଲେ ବିଜୟ ମହାପାତ୍ର । ଯେତେବେଳେ ବିଜୟ ମହାପାତ୍ର ହାରିଲେ ବୋଲି ତାଙ୍କ ପାଖକୁ ଖବର ଆସିଲା ସେତେବେଳେ ସେ ମନ ଖୋଲା ହସ ହସିଥିଲେ । ଆଉ ସେହି ହସ ହସିବା ପାଇଁ ବେଦ ପ୍ରକାଶଙ୍କୁ ଅପେକ୍ଷା କରିବାକୁ ପଡ଼ିଥିଲା ୧୪ ବର୍ଷ । ମାନେ ବନବାସ । ବେଦ ପ୍ରକାଶଙ୍କ ପାଇଁ ଏହି ବନବାସ ବେଶ୍ ଖୁସି ଆଣିଦେଇଛି । ଆଉ ବିଜୟଙ୍କୁ ହରାଇବା ପ୍ରସଙ୍ଗକୁ ମନେ ପକାଇ ସେ ମଧ ବେଳେବେଳେ ମନ ଖୋଲି ହସ ହସୁଛନ୍ତି ।

# ଅରୁଣଙ୍କ ଟେନିସ୍

ଅରୁଣ ସାହୁଙ୍କ ଚେହେରା ବେଶ୍ ଡଉଲଡାଉଲ । ତାଙ୍କର ଭାଷଣକୁ ମଧ ଖୁଣିବାର ନାହିଁ । ତେବେ ଚେହେରା କିପରି ଅତୁଟ ରହିବ ସେଥିପାଇଁ ସବୁବେଳେ ଉଦ୍ୟମ କରିଆସୁଛନ୍ତି ଅରୁଣ । ଏମିତି ବେଳେବେଳେ ସେ ପ୍ରାତଃ ଭ୍ରମଣ କରନ୍ତି । ପୁଣି କେତେବେଳେ ଫୁଟ୍‌ବଲ ଖେଳନ୍ତି । ଏବେ କିନ୍ତୁ ଅରୁଣ ଆଉ ଏକ ଉପାୟ ଚିନ୍ତା କରିଛନ୍ତି । ସବୁବେଳେ ପ୍ରାତଃ ଭ୍ରମଣ କରିହେଉନାହିଁ । କେତେବେଳେ ବର୍ଷା ହେଲେ ପ୍ରାତଃ ଭ୍ରମଣ ବନ୍ଦ । କେତେବେଳେ ନିର୍ବାଚନମଣ୍ଡଳୀ କିମ୍ବା ଅନ୍ୟ କାମରେ ଗସ୍ତରେ ଗଲେ ପ୍ରାତଃ ଭ୍ରମଣ ବନ୍ଦ । ପୁଣି ଏକାକୀ ଫୁଟ୍‌ବଲ ଖେଳି ହେବନାହିଁ । ସେଥିପାଇଁ ଟିମ୍‌ଟିଏ ଲୋଡ଼ା । ଯଦି ପ୍ରାତଃ ଭ୍ରମଣ ଓ ଫୁଟ୍‌ବଲ ଖେଳ ଉପରେ ନିର୍ଭର କରି ଅରୁଣ ନିଜର ଚେହେରାକୁ ଡଉଲଡାଉଲ ରଖିବାକୁ ଚାହିଁବେ ତେବେ ତାହା ବୃଥା ଉଦ୍ୟମ ହୋଇପାରେ ବୋଲି ଅରୁଣଙ୍କର କେଜାଣି କାହିଁକି ଏକ ଧାରଣା ଜନ୍ମିଲା । କିଛିଦିନ ଚିନ୍ତା କଲେ ଅରୁଣ । ଏହାପରେ ତାଙ୍କର ମୁଣ୍ଡକୁ ଅସଲ ବୁଦ୍ଧିଟିଏ ଆସିଲା । ତାହା ହେଲା ଯଦି ଟେବୁଲଟେନିସ୍ ସେ ଖେଳିବେ ତେବେ ଦେହରୁ ଝାଳ ବାହାରିବ ଆଉ ପ୍ରାତଃ ଭ୍ରମଣ କିମ୍ବା ଫୁଟ୍‌ବଲ ଖେଳର ଆବଶ୍ୟକତା ରହିବ ନାହିଁ । ଏମିତି ଓଏଏସ୍ ଆସୋସିଏସନ୍‌ରେ ସକାଳେ ଟେବୁଲଟେନିସ୍ ଖେଳଟି ବେଶ୍ ଜମିଥାଏ । ସେଠାରେ ଅବସରପ୍ରାପ୍ତ ଅଫିସର ହୁଅନ୍ତୁ କିମ୍ବା ଚାକିରିରେ ଥିବା ଓଏଏସ୍ ଅଫିସର ହୁଅନ୍ତୁ କେତେକଙ୍କୁ ସକାଳେ ଟେବୁଲଟେନିସ୍ ଖେଳୁଥିବାର ଦେଖିବାକୁ ମିଳିଥାଏ । ଏହାର କାରଣ ଆଉ କିଛି ନୁହେଁ । କେବଳ ଦେହରୁ ଝାଳ ବୁହାଇବା ପାଇଁ ଏହି ଖେଳ ହୋଇଥାଏ । ବିଧାୟକମାନଙ୍କ ପାଇଁ ଟେବୁଲଟେନିସ୍ ଖେଳିବା ନିମନ୍ତେ ବିଧାୟକ କଲୋନୀରେ ସେଭଳି କିଛି ସତନ୍ତ୍ର ବ୍ୟବସ୍ଥା ନାହିଁ । ଅରୁଣ ତାଙ୍କୁ ମିଳିଥିବା ସରକାରୀ କ୍ୱାର୍ଟରରେ ଟେବୁଲଟେନିସ୍ ଖେଳିବା ପାଇଁ ଏକ ପ୍ରକୋଷ୍ଠଟିଏ କଲେ ଏବଂ ସେଠାରେ ସେ ଟେବୁଲଟେନିସ୍ ଖେଳିଲେ । ଏମିତି ଅରୁଣ ଯେତେବେଳେ ଯାହା ଇଚ୍ଛା ହୁଏ ତାହା ତୁରନ୍ତ କରିବାକୁ ଚାହିଁଥା'ନ୍ତି । ଆଉ ଟେବୁଲଟେନିସ୍ ଖେଳିବା ପାଇଁ ଯେଭଳି ସେ ପ୍ରକୋଷ୍ଠଟିଏ କରିଛନ୍ତି ତାହା ମଧ ରାତାରାତି । ଦେଖାଯାଉ ଅରୁଣ ଟେବୁଲଟେନିସ୍ ଖେଳି ଦେହରୁ ଝାଳ ବୁହାଇ କେତେଦୂର ନିଜକୁ ଫିଟ୍ ରଖିପାରୁଛନ୍ତି ।

# ଅତନୁଙ୍କ ସ୍ୱୀକୃତି

**ସେ**ଦିନ ହଠାତ୍ ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକ ତାଙ୍କ ପାଖରେ ଥିବା ଜଣେ ବ୍ୟକ୍ତିଙ୍କ ଉପରେ ବିରକ୍ତ ହେଉଥା'ନ୍ତି । ଏମିତି ଅତନୁଙ୍କୁ କେହି ସାଧାରଣତଃ ବିରକ୍ତ ହେଉଥିବାର ଦେଖନ୍ତି ନାହିଁ । ସେ ରାଜନୀତିରେ ହାତେ ମାପି ଚାଖଣ୍ଡେ ଚାଲନ୍ତି । ଭିତରେ

ଭିତରେ ସେ ଅସନ୍ତୁଷ୍ଟ ହେଲେ ମଧ୍ୟ ତାହାକୁ ଉପରେ ପ୍ରକାଶ କରି ନଥା'ନ୍ତି । ଏପରିକି ଶତ୍ରୁମାନଙ୍କୁ ମଧ୍ୟ ସେ ମିତ୍ର ପରି ବ୍ୟବହାର କରନ୍ତି । ସେଦିନ ଯେତେବେଳେ ଅତନୁ ବିରକ୍ତ ଭାବ ପ୍ରକାଶ କଲେ ସେତେବେଳେ ସେଠାରେ ତାଙ୍କର ନିକଟତମ ମହଲ ପକ୍ଷରୁ ଆଶ୍ଚର୍ଯ୍ୟ ପ୍ରକାଶ କରାଯାଇଥିଲା । ଅତନୁ କହୁକହୁ ଗୁମର କଥାଟିଏ ଫିଟାଇ ଦେଲେ । ସେତେବେଳେ ତାଙ୍କ ହାତରେ ଗୋଟିଏ ନିମନ୍ତ୍ରଣ ପତ୍ର ଥିଲା । ସେହି ନିମନ୍ତ୍ରଣ ପତ୍ରରେ ଅତନୁ ଅତିଥି ଭାବେ ଯୋଗ ଦେଉଛନ୍ତି ବୋଲି ଉଲ୍ଲେଖ ହୋଇଥିଲା । ଆଉ ତାହାକୁ ଦେଖି ଅତନୁ ବିରକ୍ତ ଭାବ ପ୍ରକାଶ କରିଥିଲେ । ଅତନୁ ସିଧାସଳଖ କହିଥିଲେ ଯେ ସେହି ସଭାରେ ଯୋଗ ଦେବା ପାଇଁ ସେ ସ୍ୱୀକୃତି ଦେଇନାହାନ୍ତି । ତାଙ୍କୁ ନପଚାରି ନିମନ୍ତ୍ରଣ ପତ୍ରରେ ତାଙ୍କର ନାମ ଛପାଯାଇଛି । ଯେଉଁ ସଭାକୁ ସେ ଯିବା ପାଇଁ ସ୍ୱୀକୃତି ଦେଇଥା'ନ୍ତି ସେଠାରେ ସେମିତି କିଛି ଅସୁବିଧା ନହେଲେ ସେ ସେହି ସଭାରେ ଯୋଗ ଦେବା ପାଇଁ ଯଥାସମ୍ଭବ ଉଦ୍ୟମ କରିଥା'ନ୍ତି । ସ୍ୱୀକୃତି ଦେଇ ସଭାରେ ଯୋଗ ନଦେଲେ ତାହାର ବାର୍ତ୍ତା ବିଭିନ୍ନ ଆଡ଼େ ଯିବ ହିଁ ଯିବ । ଏହାକୁ ସେ ଭଲରେ ଗ୍ରହଣ କରନ୍ତି ନାହିଁ । ଏମିତି କଟକ ଶୈଳବାଳା ମହିଳା ମହାବିଦ୍ୟାଳୟର ଏକ ଉତ୍ସବରେ ସେ ଯୋଗ ଦେଉଛନ୍ତି ବୋଲି ନିମନ୍ତ୍ରଣ ପତ୍ରରେ ଛପା ଯାଇଥିଲା । କିନ୍ତୁ ସେ ସେହି ସଭାରେ ଯୋଗ ଦେବେ ବୋଲି ସ୍ୱୀକୃତି ଦେଇ ନଥିଲେ । ଜଣେ ବ୍ୟକ୍ତି ତାଙ୍କୁ ଟେଲିଫୋନ୍ କଲେ ଆଉ କହିଲେ- ଅତନୁବାବୁ କେବେ ସ୍ୱୀକୃତି ଦେଇ ସଭାକୁ ନଆସିଥିବାର ସେ ଜାଣିନାହାନ୍ତି । କିନ୍ତୁ ଶୈଳବାଳା ମହିଳା ମହାବିଦ୍ୟାଳୟ ସଭାଟି ବ୍ୟତିକ୍ରମ ହୋଇଯାଇଛି । ଯଦି ଆସିବାର ନଥିଲା ତେବେ ସ୍ୱୀକୃତି ଦେଉଥିଲେ କାହିଁକି । ଯେଉଁ ନେତା ସ୍ୱୀକୃତି ଦେଇ ସଭାରେ ଯୋଗ ଦେଇପାରିବେ ନାହିଁ ସେହି ନେତାଙ୍କର ରାଜନୈତିକ ଭବିଷ୍ୟତ ଅନିଶ୍ଚିତ ଆଡ଼କୁ ଚାଲିଯିବ । ଏହା ଆଉ କେହି ନହେଲେ ମଧ୍ୟ ଅତନୁ ବେଶ୍ ଭଲ ଭାବେ ଜାଣିଛନ୍ତି । ଯେଉଁଥିପାଇଁ ସେ ଯେଉଁ ସଭାକୁ ଯିବା ପାଇଁ ସ୍ୱୀକୃତି ଦିଅନ୍ତି ସେଠାକୁ ଯିବା ପାଇଁ ଶେଷ ପର୍ଯ୍ୟନ୍ତ ଉଦ୍ୟମ କରିଥା'ନ୍ତି । ଯେଉଁଠି ବାଧ୍ୟବାଧକତାରେ ତାଙ୍କ ନାମକୁ ନିମନ୍ତ୍ରଣ ପତ୍ରରେ ଛାପି ଦିଆଯାଇଥାଏ ସେଠାକେ ସେ ସଭାକୁ ସାଧାରଣତଃ ଯାଇ ନଥା'ନ୍ତି । କିନ୍ତୁ ଜନସାଧାରଣଙ୍କ ମଧ୍ୟରେ ଏକ ବାର୍ତ୍ତା ପହଂଚିଥାଏ ଯେ ସ୍ୱୀକୃତି ଦେଇ ସେ ସଭାକୁ ଆସିନାହାନ୍ତି ବୋଲି । ଯେଉଁଥିପାଇଁ ଅତନୁ ସେଦିନ ଭୀଷଣ ବିରକ୍ତ ହେଉଥିଲେ । ଅତନୁଙ୍କ ପରି ଅନ୍ୟ ମନ୍ତ୍ରୀମାନେ ମଧ୍ୟ ଏହି ସ୍ୱୀକୃତି ସମ୍ପର୍କରେ ସଚେତନ ହେବାର ଆବଶ୍ୟକତା ରହିଛି ।

## ପ୍ରସନ୍ନଙ୍କ ତାବିଜ

ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀଙ୍କ ପୋଷାକ ଠାରୁ ଆରମ୍ଭ କରି ଦାଢ଼ି ପର୍ଯ୍ୟନ୍ତ ସବୁକିଛିକୁ ନେଇ ଚର୍ଚ୍ଚା ହେଉଛି । ଏମିତି ଏକ ଚର୍ଚ୍ଚାକୁ ମଧ୍ୟ ଏଠାରେ ଉପସ୍ଥାପିତ

କରାଯାଉଛି । ଆଉ ଏହି ଚର୍ଚ୍ଚା ଅନ୍ୟ କେହିନୁହନ୍ତି ଖୋଦ୍ ପ୍ରସନ୍ନ ହିଁ କରିଥିଲେ । ସେଦିନ ଦରବାର ଚାଲିଥାଏ । ପ୍ରସନ୍ନଙ୍କ ବେକରେ ତାବିଜଟି ନଥିଲା । କେହି ଜଣେ ପ୍ରଶ୍ନ କଲେ- ବାବା ଆଜି କ'ଣ ତାବିଜ ନାହିଁ । ହଠାତ୍ ପ୍ରସନ୍ନ ତାଙ୍କ ବେକ ତଳକୁ ଚାହିଁଲେ । ଆଉ କହିଲେ- ତାବିଜ ଅଛି କିନ୍ତୁ ତାକୁ ସେ ବର୍ତମାନ ପିନ୍ଧିନାହାନ୍ତି । ଏହି ତାବିଜ ହିଁ ତାଙ୍କର ରକ୍ଷାକର୍ତା । ଜଣେ ବାବା ତାଙ୍କୁ ତାବିଜଟି ଦେଇଥିଲେ । ତାଙ୍କର କେବେଠାରୁ ମୃତ୍ୟୁ ହୋଇଗଲାଣି । ତାବିଜଟିକୁ ସେ ପିନ୍ଧିଥିଲେ ଶତ୍ରୁ ତାଙ୍କର କିଛି କ୍ଷତି କରିପାରିବ ନାହିଁ ବୋଲି ସେହି ବାବା କହିଥିଲେ । ସେହିଦିନ ଠାରୁ ସେ ତାବିଜ ପିନ୍ଧି ଆସୁଛନ୍ତି । ଯେବେଠାରୁ ରାଜନୀତି କଲେଣି ସେବେଠାରୁ ବେକରେ ସେ ତାବିଜଟି ପକାଉଛନ୍ତି । ତେବେ ତାବିଜଟି ତାଙ୍କଠାରୁ ନେଇଯିବା ପାଇଁ ଶତ୍ରୁମାନେ ମଧ ବହୁ ଉଦ୍ୟମ କରୁଛନ୍ତି । ଏମିତି ହଠାତ୍ ଜଣେ ବ୍ୟକ୍ତି ତାବିଜଟି ତାଙ୍କ ବେକରୁ ଟାଣି ନେଇ ଦୌଡ଼ିଲା । କାହିଁକି ସେହି ବ୍ୟକ୍ତି ଜଣକ ତାବିଜଟିକୁ ବେକରୁ ନେଇ ଚାଲିଗଲେ ତାହାର କାରଣ ପ୍ରସନ୍ନ ସେତେବେଳେ ଜାଣିପାରିଲେ ନାହିଁ । ଯଦି ତାବିଜଟିକୁ ନେଇ ସେହି ବ୍ୟକ୍ତି ଜଣଙ୍କ ଖୁସିରେ କାଳାତିପାତ କରିବ ତେବେ ତାହା ହିଁ ହେବ ତାଙ୍କର ସବୁଠାରୁ ଆନନ୍ଦ ବୋଲି ସେଦିନ ପ୍ରସନ୍ନ କହିଥିଲେ । କିନ୍ତୁ ସେହି ସମୟରେ ସେ ଆଉ ଏକ କଥା ମଧ କହିଥିଲେ । ତାହା ଥିଲା ତାବିଜଟି ପୁଣି ତାଙ୍କ ପାଖକୁ ଫେରିଆସିବ । ଏହି ତାବିଜକୁ ନେଇ କେହି ରଖିପାରିବେ ନାହିଁ । ପ୍ରକୃତରେ ଦେଖାଗଲା ପ୍ରସନ୍ନ ସେଦିନ ଯାହା କହିଥିଲେ ତାହା ହିଁ ଘଟିଥିଲା । କୁଆଡ଼େ ତାବିଜ ନେଇଥିବା ବ୍ୟକ୍ତି ଜଣଙ୍କ ଗୁରୁତର ଅସୁସ୍ଥ ହୋଇଗଲେ । ଆଉ ପରଦିନ କେହି ଜଣେ ବ୍ୟକ୍ତି ତାଙ୍କ ପାଖକୁ ଆସିଲେ ଏବଂ ତାବିଜଟିକୁ ତାଙ୍କ ହାତକୁ ବଢ଼ାଇଦେଲେ । ତାହା ଦେଖି ସେ ଆଶ୍ଚର୍ଯ୍ୟ ହୋଇ ନଥିଲେ । ଆଉ ସେ କହିଥିଲେ- ପ୍ରଥମରୁ ମୁଁ ସୂଚନା ଦେଇଥିଲି ତାବିଜଟି ତାଙ୍କ ପାଖକୁ ଫେରିଆସିବ ବୋଲି । ଆଉ ତାହା ହିଁ ହେଲା । ପ୍ରସନ୍ନ ସେହି ବ୍ୟକ୍ତି ଜଣଙ୍କୁ ଆଉ ଅଧିକ କିଛି ପଚାରିଲେ ନାହିଁ । ତାବିଜଟି ତାଙ୍କର ଏକ ରକ୍ଷା କବଚ ବୋଲି ସେ ଜାଣନ୍ତି । ଏମିତି ଯାହାର ଟ୍ୟାଲେଂଟ ଥାଏ ତା'ର ଶତ୍ରୁ ଅଧିକ ହୋଇଥା'ନ୍ତି । ଆଉ ତାଙ୍କର ଟ୍ୟାଲେଂଟ ଥିବାରୁ ସବୁଦିନ ଶତ୍ରୁ ସୃଷ୍ଟି ହେଉଛନ୍ତି । ରକ୍ଷା କବଚ ହିଁ ଶତ୍ରୁଙ୍କ କବଳରୁ ତାଙ୍କୁ ରକ୍ଷା କରିଦେଉଛି । ଅନେକ ମଧ ଭାବନ୍ତି ଯେ ପ୍ରସନ୍ନ ଟଙ୍କା ଖର୍ଚ୍ଚ କରନ୍ତି ନାହିଁ, ପ୍ରଚାର ବି କରନ୍ତି ନାହିଁ, ପ୍ରଚାରପତ୍ର ବି ମାରନ୍ତି ନାହିଁ, ଭୋଟ ପ୍ରଚାର ମଧ କରନ୍ତି ନାହିଁ । ଏହାସତ୍ୱେ ସେ ବହୁ ଭୋଟ ବ୍ୟବଧାନରେ କିପରି ଜିତୁଛନ୍ତି । ପ୍ରସନ୍ନ ମଧ ବେଳେବେଳେ ଏହା କୁଆଡ଼େ ତାବିଜର କରାମତି ବୋଲି କହିବାକୁ ପଛାଇ ନଥା'ନ୍ତି । ଯେତେବେଳେ ଶତ୍ରୁଙ୍କ କବଳରୁ ତାବିଜ ତାଙ୍କୁ ରକ୍ଷା କରିଦିଏ ସେତେବେଳେ ସେ ଭୋଟରେ ଜିତିବେ ହିଁ ଜିତିବେ । ପ୍ରସନ୍ନ ତାବିଜ ସମ୍ପର୍କରେ ଦରବାରରେ ବର୍ଣ୍ଣନା

କରୁଥିବା ବେଳେ କେହି ଜଣେ ପ୍ରଶ୍ନ କଲେ- ଯେଉଁ ବାବା ତାଙ୍କୁ ଏହି ତାବିଜ ଦେଇଥିଲେ ସେ କ'ଣ କେବଳ ପ୍ରସନ୍ନ ପାଢଶାଣୀଙ୍କୁ ଦେଇଥିଲେ ନା ଅନ୍ୟ କାହାରିକୁ ଦେଇଥିଲେ । ଉତରରେ ପ୍ରସନ୍ନ ପାଢଶାଣୀ କହିଲେ- ସେ କଥା ସେ ଜାଣନ୍ତି ନାହିଁ । କିନ୍ତୁ ଏହା ଭଲ ଭାବେ ସେ ଜାଣିଛନ୍ତି ଯେ ତାବିଜ ହିଁ ତାଙ୍କର ପାଲଟିଛି ରକ୍ଷା କବଚ । ଯେତେ ଶତ୍ରୁ ହେଲେ ମଧ୍ୟ ସେଥିରେ ତାଙ୍କର ପରବାୟ ନାହିଁ । ରକ୍ଷା କବଚ ତାଙ୍କ ପାଇଁ ଶତ୍ରୁଙ୍କୁ ବିନାଶ କରିବ ହିଁ କରିବ । ଦରବାରରେ ଥିବା ଲୋକମାନେ ପ୍ରସନ୍ନଙ୍କ କଥାକୁ ଅମୃତ ପିଇବା ପରି ଶୁଣି ଚାଲିଥିଲେ । କାହା ପାଟିରୁ କିଛି କଥା ବାହାରୁ ନଥିଲା । କାଳେ କିଛି କହିଦେଲେ ତାବିଜର ଦୃଷ୍ଟିରେ ସେମାନେ ପଡ଼ିଯିବେ ବୋଲି ଭାବୁଥିଲେ । କିନ୍ତୁ ପ୍ରସନ୍ନ ସେଠାରେ ସୂଚାଇ ଦେଲେ ଯେ ମିତ୍ରଙ୍କୁ ତାବିଜଟି ଆହୁରି ମିତ୍ର କରିଦେବ ଆଉ ଶତ୍ରୁଙ୍କୁ ବିନାଶ କରିଦେବ । ତେଣୁ ଦରବାରକୁ ଆସି ଯେଉଁମାନେ ତାଙ୍କର ମିତ୍ର ହେଉଛନ୍ତି ସେମାନଙ୍କର ଉନ୍ନତି ତାବିଜ କରିବ । ଏହାପରେ ଦରବାରରେ ହସ ଖେଳିଯାଇଥିଲା ।

## ଯଦି ଯୁଗଳ ନଥା'ନ୍ତେ...

**ଯୁ**ଗଳ ପଟ୍ଟନାୟକ ହେଉଛନ୍ତି ଭଦ୍ରକର ବିଜେଡି ବିଧାୟକ । ୧୯୬୮ ମସିହାରେ ସେ ଭଦ୍ରକ ବ୍ଲକ ଅଧ୍ୟକ୍ଷ ଥିଲେ । ପାଠ ପଢ଼ିବା ସମୟରେ ଲୋକକବି ଜଗନ୍ନାଥ ପାଣିଙ୍କୁ ସେ ସେତେ ଜାଣି ନଥିଲେ । ୧୯୮୦ ମସିହାରେ ଯେତେବେଳେ ସେ ରାଷ୍ଟ୍ରମନ୍ତ୍ରୀ ହେଲେ ସେତେବେଳେ ତାଙ୍କୁ ମିଳିଥିଲା ଶ୍ରମ, ନିଯୁକ୍ତି, ପର୍ଯ୍ୟଟନ, କ୍ରୀଡ଼ା, ସଂସ୍କୃତି, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗ । ୧୯୮୫ ମସିହାରେ ସେ ହୋଇଥିଲେ ରାଜସ୍ୱ ବିଭାଗର କ୍ୟାବିନେଟ ମନ୍ତ୍ରୀ । ମନ୍ତ୍ରୀ ଥିବା ସମୟରେ ଭଦ୍ରକ ନିକଟବର୍ତ୍ତୀ ନଳାଙ୍ଗ ଗ୍ରାମରେ ଲୋକକବି ଜଗନ୍ନାଥ ପାଣିଙ୍କ ପରି ଜଣେ ଖ୍ୟାତନାମା ଲେଖକ ଜନ୍ମଗ୍ରହଣ କରିଥିଲେ ବୋଲି ସେ ଜାଣିବାକୁ ପାଇଥିଲେ । ଅବଶ୍ୟ ପୂର୍ବରୁ ଜଗନ୍ନାଥ ପାଣିଙ୍କ ସମ୍ପର୍କରେ ସେ ଜାଣି ନଥିଲେ ଯେ ତାହା ନୁହେଁ । କିନ୍ତୁ ମନ୍ତ୍ରୀ ହେବାପରେ ଜଗନ୍ନାଥ ପାଣିଙ୍କ ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ପଦକ୍ଷେପ ନେବାକୁ ଅନୁରୋଧ ତାଙ୍କ ପାଖକୁ ଆସିଥିଲା । ନିଜ ଅଂଚଳ ହେଉ କିମ୍ବା ସାହିତ୍ୟ ପ୍ରୀତି ହେଉ ଜଗନ୍ନାଥ ପାଣିଙ୍କ ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ସେତେବେଳେ ସେ ବଦ୍ଧପରିକର ହୋଇଥିଲେ । ୧୮୩୬ ମସିହା ଏପ୍ରିଲ ୧୪ ତାରିଖରେ ଜଗନ୍ନାଥ ପାଣି ଜନ୍ମଗ୍ରହଣ କରିଥିଲେ । ତାଙ୍କର ମୃତ୍ୟୁ ହୋଇଥିଲା ୧୮୯୭ ମସିହା ଡିସେମ୍ବର ୧୧ ତାରିଖରେ । ମାନେ ଜଗନ୍ନାଥ ପାଣିଙ୍କ ମୃତ୍ୟୁ ହେବାର ଇତିମଧ୍ୟରେ ୧୧୪ ବର୍ଷ ହୋଇଗଲାଣି । ୧୯୮୦ ମସିହା ବେଳକୁ ଜଗନ୍ନାଥ ପାଣିଙ୍କ ମୃତ୍ୟୁକୁ ୮୩ ବର୍ଷ ହୋଇଯାଇଥିଲା । ମୃତ୍ୟୁର ଏତେବର୍ଷ ପରେ ଜଣେ କବିଙ୍କୁ ଉଜ୍ଜୀବିତ କରିହେବ ଏହା

କେହି ସପ୍ନରେ ସୁଦ୍ଧା ଭାବିପାରିବେ ନାହିଁ । ଏମିତି ଜଗନ୍ନାଥ ପାଣିଙ୍କୁ ଆଦି ଗୀତିନାଟ୍ୟକାର ଲୋକକବି ବୋଲି ଗଣନା କରାଯାଏ । ସେ ଏକାଧାରରେ ଥିଲେ ଜଣେ ପ୍ରତିଭାଶାଳୀ କବି, ଲୋକପ୍ରିୟ ନାଟ୍ୟକାର, କୁଣ୍ଡଳୀ ଅଭିନେତା, ଦକ୍ଷ ନିର୍ଦ୍ଦେଶକ ଓ ସଂଗଠକ । ଓଡ଼ିଆ ଲୋକନାଟ୍ୟର ସୃଜନ, ସମୃଦ୍ଧି ଓ ବିକାଶ କ୍ଷେତ୍ରରେ ସେ ଜଣେ ଅଗ୍ରଗଣ୍ୟ ସାଧକ ତଥା ଦିଗ୍‌ଦର୍ଶକ ଭାବରେ ଯଶ ଲାଭ କରିଥିଲେ । ରୀତିଯୁଗୀୟ କାବ୍ୟଶୈଳୀ ଅନୁସରଣରେ ସେ ରାଶି ରାଶି କାବ୍ୟକବିତା, ଛାନ୍ଦନାଟ୍ୟ, ଚୌପଦୀ, ଚଉତିଶା ରଚନା କରି ନିଜର ଅସାଧାରଣ ସୃଜନଶୀଳତା ଓ ପାଣ୍ଡିତ୍ୟର ପରିଚୟ ଦେଇପାରିଛନ୍ତି । କିନ୍ତୁ ଯୁଗଳ ପଟ୍ଟନାୟକ ନଥିଲେ ଏହି ଲୋକକବି ଜଗନ୍ନାଥ ପାଣିଙ୍କ ସ୍ମୃତି ଉଜ୍ଜୀବିତ ହୋଇପାରି ନଥା'ନ୍ତା । ସେଦିନ ଓଡ଼ିଶା ସାହିତ୍ୟ ଏକାଡ଼େମୀ ଓ ଜଗନ୍ନାଥ ପାଣି ସ୍ମୃତି ସଂସଦ ମିଳିତ ଆନୁକୂଲ୍ୟରେ ଲୋକକବି ଜଗନ୍ନାଥ ପାଣିଙ୍କ ରାଜ୍ୟସ୍ତରୀୟ ଜୟନ୍ତୀ ଉତ୍ସବ ଭଂଜକଳାମଣ୍ଡପ ଠାରେ ଅନୁଷ୍ଠିତ ହୋଇଥିଲା । ଏଥିରେ ସଭାପତିତ୍ୱ କରିଥିଲେ ଯୁଗଳ ପଟ୍ଟନାୟକ । ସେ ତାଙ୍କ ଅଭିଭାଷଣରେ କହୁକହୁ ଅନେକ କଥା ବଖାଣି ଦେଇଗଲେ । ଏମିତି ମୋଗଲ ତାମ୍‌ସାକୁ ଲୋକପ୍ରିୟ କରିବା ପାଇଁ କିପରି ସେ ଉଦ୍ୟମ କରୁଥିବା ବେଳେ ସେଥିରେ ଈର୍ଷାନ୍ୱିତ ହୋଇଥିବା କେତେକ ବ୍ୟକ୍ତି କିପରି ତାହାକୁ ଯୁଗଳ ତାମ୍‌ସା ବୋଲି କହୁଥିଲେ ସେ ସମ୍ପର୍କରେ ମଧ୍ୟ ସେ ସୂଚନା ଦେଇଥିଲେ । ଲୋକକବି ଜଗନ୍ନାଥ ପାଣିଙ୍କ ସ୍ମୃତିକୁ ଉଜ୍ଜୀବିତ ରଖିବା ପାଇଁ ସେ ବହୁ ସପ୍ନ ଦେଖିଛନ୍ତି । ଅନେକ ସପ୍ନ ସାକାର ହୋଇଛି । ରାଜଧାନୀ ଭୁବନେଶ୍ୱରର ସଙ୍ଗୀତ ମହାବିଦ୍ୟାଳୟ ପରିସରରେ ଜଗନ୍ନାଥ ପାଣିଙ୍କ ପ୍ରତିମୂର୍ତ୍ତୀ ସ୍ଥାପିତ ହେବା ଆଉ କାହା ପାଇଁ ହେଉ କି ନହେଉ ତାଙ୍କ ପାଇଁ ଗୌରବର ବିଷୟ ବୋଲି ସେ କହିଥିଲେ । ତାଙ୍କରି ଉଦ୍ୟମ ଯୋଗୁଁ ସାହିତ୍ୟ ଏକାଡ଼େମୀ ଜଗନ୍ନାଥ ପାଣିଙ୍କ ଦ୍ୱାରା ଲିଖିତ କୃତିକୁ ସଂକଳନ କରିଛନ୍ତି । ତେବେ ସରକାରଙ୍କ ଗଣ୍ଡି ଭିତରେ ରହି ସାହିତ୍ୟ ଏକାଡ଼େମୀ ଜଗନ୍ନାଥ ପାଣିଙ୍କୁ ଯେତିକି ବାଟ ନେବାକଥା ତାହା ନେଇପାରୁ ନଥିବାର ଦର୍ଶାଇ ସେ କ୍ଷୋଭ ପ୍ରକାଶ କରିଥିଲେ । ଶେଷ ରକ୍ତବିନ୍ଦୁ ଥିବା ପର୍ଯ୍ୟନ୍ତ ସେ ଜଗନ୍ନାଥ ପାଣିଙ୍କ ସ୍ମୃତିକୁ ଉଜ୍ଜୀବିତ କରିବା ପାଇଁ ଉଦ୍ୟମ ଅବ୍ୟାହତ ରଖିବେ ବୋଲି ଘୋଷଣା କରିଥିଲେ । ଏମିତି କୁହାଯାଏ ନେତାଙ୍କର ଦୂରଦୃଷ୍ଟି ଥାଏ ବୋଲି । ଏଠାରେ ଯୁଗଳ ପଟ୍ଟନାୟକଙ୍କର ଦୂରଦୃଷ୍ଟି ଯୋଗୁ ଭଦ୍ରକ ଅଂଚଳର କେଉଁ ବିକାଶ ହୋଇଛି ତାହା ଭଦ୍ରକବାସୀ ହିଁ କହିବେ । କିନ୍ତୁ ଏହା ସତ୍ୟ ଯେ, ଯୁଗଳଙ୍କ ଦୂରଦୃଷ୍ଟି ଯୋଗୁ ଲୋକକବି ଜଗନ୍ନାଥ ପାଣିଙ୍କ ସ୍ମୃତି ଓ କୀର୍ତ୍ତି ଆଜି ଉଜ୍ଜୀବିତ ହୋଇଛି । ରାଜନେତାମାନେ ଯଦି ସାହିତ୍ୟ ପ୍ରତି ସାମାନ୍ୟ ଦୃଷ୍ଟି ଦେବେ ତେବେ ସାହିତ୍ୟ ଯେଉଁ ସଙ୍କଟରେ ପଡ଼ିଛି ସେଥିରୁ ଉଧୁରି ପାରନ୍ତା ନିଶ୍ଚିତ । ଆଉ ଯୁଗଳ ହିଁ ଏହାର ଜ୍ୱଳନ୍ତ ଉଦାହରଣ ।

# ଦେଉଳ ଓ ସୂର୍ଯ୍ୟ

**ରା**ଜସ୍ୱ ଓ ବିପର୍ଯ୍ୟୟ ପ୍ରଶମନ ମନ୍ତ୍ରୀ ସୂର୍ଯ୍ୟ ନାରାୟଣ ପାତ୍ରଙ୍କର ଯେ ଏମିତି ଏକ ସଉକ ଅଛି ତାହା ବୋଧହୁଏ କେହି ଜାଣନ୍ତି ନାହିଁ । ଏମିତି ନେତା ହେଲେ ସାଧାରଣତଃ ଲୋକଙ୍କ ସେବା କରିବା ସମସ୍ତଙ୍କର ସଉକ ଥାଏ । କିନ୍ତୁ ସୂର୍ଯ୍ୟଙ୍କର ଯେଉଁ ସଉକ ସମ୍ପର୍କରେ ଏଠାରେ ବର୍ଣ୍ଣନା କରାଯାଉଛି ତାହା ନେତା ସହିତ କୌଣସି ସମ୍ପର୍କ ନାହିଁ । ଏହି ସଉକ ମାତ୍ର ୩ ବର୍ଷ ହେଲା ସୂର୍ଯ୍ୟଙ୍କ ଠାରେ ଉଭା ହୋଇଛି । ଏବେ ଯିବା ପ୍ରକୃତ ପ୍ରସଙ୍ଗକୁ । ସୂର୍ଯ୍ୟ କୁଆଡ଼େ ମନ୍ଦିର କରିବା ଆଉ ମନ୍ଦିରରେ ଦେବାଦେବୀ ମୂର୍ତି ବସାଇବା ପାଇଁ ଏବେ ବେଶ୍ ଇଚ୍ଛା ପ୍ରକାଶ କରୁଛନ୍ତି । ଏହା କୁଆଡ଼େ ତାଙ୍କର ସଉକ ହୋଇଯାଇଛି । ଏମିତି ସେଦିନ କହୁକହୁ ସୂର୍ଯ୍ୟ ମରମ କଥାଟିଏ କହିଦେଲେ । ତିନିବର୍ଷ ମଧ୍ୟରେ ସେ ପ୍ରାୟ ୮୦ଟି ମନ୍ଦିରର ନିର୍ମାଣ କାର୍ଯ୍ୟ ସହିତ ସାମିଲ ହୋଇଯାଇଛନ୍ତି । ପୁଣି ଆହୁରି ଅନେକ ମନ୍ଦିର ନିର୍ମାଣ କାର୍ଯ୍ୟ ସହିତ ସେ ମଧ୍ୟ ସଂପୃକ୍ତ ଅଛନ୍ତି । ଯେଉଁ ମନ୍ଦିର ନିର୍ମାଣ ସହିତ ସୂର୍ଯ୍ୟ ସଂପୃକ୍ତ ରହନ୍ତି ସେହି ମନ୍ଦିରର ନିର୍ମାଣ କାର୍ଯ୍ୟ କେତେ ଶୀଘ୍ର ଶେଷ ହେବ ସେ ଦିଗରେ ସେ ଦୃଷ୍ଟି ଦେଇଥା'ନ୍ତି । ତେବେ ମନ୍ଦିର ନିର୍ମାଣ ସହିତ ସୂର୍ଯ୍ୟ ଯେତିକି ସଂପୃକ୍ତ ଥା'ନ୍ତି ତା' ଠାରୁ ଅଧିକ ସଂପୃକ୍ତ ରହିଥା'ନ୍ତି ଦେବାଦେବୀ ମୂର୍ତି ବସାଇବାରେ । କୁଆଡ଼େ ମୂର୍ତି ତିଆରିରେ ସୂର୍ଯ୍ୟ ନିଜେ ଟଙ୍କା ଖର୍ଚ୍ଚ କରିଥା'ନ୍ତି । ସୂର୍ଯ୍ୟଙ୍କର ଏହି ମନ୍ଦିର ନିର୍ମାଣ ଆଉ ଦେବାଦେବୀ ମୂର୍ତି ବସାଇବା ନିଶା ସମ୍ପର୍କରେ କେବଳ ଯେ ତାଙ୍କ ନିର୍ବାଚନମଣ୍ଡଳୀ ଦିଗପହଣ୍ଡିରେ ପ୍ରଚାର ହୋଇଛି ତାହା ନୁହେଁ । କ୍ରମେ ଗଂଜାମ ଜିଲା ଆଉ ଓଡ଼ିଶାର ବିଭିନ୍ନ ଅଂଚଳରେ ମଧ୍ୟ ଏହା ପ୍ରଚାର ହେବାରେ ଲାଗିଛି । ଏମିତି ସୂର୍ଯ୍ୟଙ୍କର ଦେବାଦେବୀଙ୍କ ଉପରେ ବିଶ୍ୱାସ ଥିଲା କି ନାହିଁ ଜଣାନାହିଁ କିନ୍ତୁ ୧୯୯୦ ମସିହାରେ ଯେତେବେଳେ ସେ ବ୍ରହ୍ମପୁର ଆସନରୁ ପ୍ରାର୍ଥୀ ନହୋଇ ମୋହନା ନିର୍ବାଚନମଣ୍ଡଳୀରୁ ପ୍ରାର୍ଥୀ ହେଲେ ଆଉ ସେତେବେଳେ ତାଙ୍କୁ ଯେଉଁ ବାଣୀ ହୋଇଥିଲା ତାହା ଏବେବି ସତ ହୋଇରହିଛି । ସେତେବେଳେ ତାଙ୍କୁ କେହି ଜଣେ ବାବା କହିଥିଲେ ଯେ ବ୍ରହ୍ମପୁର ଛାଡ଼ି ଅନ୍ୟ ସ୍ଥାନରେ ପ୍ରାର୍ଥୀ ହେଲେ ସେ ବିଜୟୀ ହେବେ । ପୂର୍ବରୁ ବ୍ରହ୍ମପୁରରୁ ସୂର୍ଯ୍ୟ ପ୍ରାର୍ଥୀ ହୋଇ ନିର୍ବାଚନରେ ପରାଜିତ ହେଉଥିଲେ । ୧୯୯୦ ମସିହାରେ ସୂର୍ଯ୍ୟ ମୋହନାରୁ ପ୍ରାର୍ଥୀ ହୋଇ ବିଜୟୀ ହେବାପରେ ଆଉ ପଛକୁ ଫେରି ଚାହିଁନାହାନ୍ତି । ୧୯୯୫, ୨୦୦୦ ଓ ୨୦୦୪ ମସିହାରେ ମୋହନାରୁ ସୂର୍ଯ୍ୟ ବିଜୟୀ ହୋଇଥିବା ବେଳେ ୨୦୦୯ ମସିହାରେ ସେ ଦିଗପହଣ୍ଡିରୁ ପ୍ରାର୍ଥୀ ହୋଇ ବିଜୟୀ ହୋଇଛନ୍ତି । ସୂର୍ଯ୍ୟ ଏବେ ୧୪ ବର୍ଷରୁ ଅଧିକ ସମୟ ମନ୍ତ୍ରୀ ହେଲେଣି । ସୂର୍ଯ୍ୟ ତାଙ୍କ ମନ୍ତ୍ରୀ ଅଭିଜ୍ଞତା ହେଉ କି ରାଜନୀତି ଅଭିଜ୍ଞତା ହେଉ ସେଥିରୁ ଅନୁଭବ କଲେଣି ଯେ ସବୁ ଗୋଟିଏ ଆଡ଼େ ଏବଂ ଦଇବ ଆଉ ଗୋଟିଏ

ଆନ୍ତେ । ଯେଉଁଥିପାଇଁ ସୂର୍ଯ୍ୟଙ୍କର ମନ୍ଦିର ନିର୍ମାଣ ଓ ଦେବାଦେବୀ ପ୍ରତିଷ୍ଠା ଦୁର୍ବଳତା ଦିନକୁ ଦିନ ଅଧିକ ହେବାରେ ଲାଗିଛି । ସୂର୍ଯ୍ୟ ଯଦି ତାଙ୍କର ଏ ମନ୍ଦିର ନିର୍ମାଣ ଓ ଦେବାଦେବୀ ପ୍ରତିଷ୍ଠା ନିଶା ସମ୍ପର୍କରେ ଅନ୍ୟ ନେତାମାନଙ୍କ ଆଗରେ ପ୍ରକାଶ କରନ୍ତେ ତେବେ ଆଉ କିଛି ନହେଲେ ବି ଏହାର ପ୍ରଭାବ ନେତାଙ୍କ ଉପରେ ପଡ଼ନ୍ତା ଏବଂ ନେତାମାନେ ମନ୍ଦିର ନିର୍ମାଣ ଓ ଦେବାଦେବୀ ପ୍ରତିଷ୍ଠା କରିବାକୁ ଆଗେଇ ଆସନ୍ତେ ।

# ଗ୍ଲାସେ ପାଣି

**ଯେ**ତେବେଳେ ଶୋଷ ହୁଏ ସେତେବେଳେ ମଣିଷ ହେଉ କି ପଶୁ ହୁଅନ୍ତୁ କି ପକ୍ଷୀ ହୁଅନ୍ତୁ ସେମାନେ ପାଣି ମୁନ୍ଦାଏ ଖୋଜିଥା'ନ୍ତି । କିନ୍ତୁ ଏଠାରେ ଏମିତି ଏକ ପ୍ରସଙ୍ଗ ସମ୍ପର୍କରେ ବର୍ଣ୍ଣନା କରାଯାଉଛି ଶୋଷ ନଥିଲେ ମଧ୍ୟ ପାଣି ଖୋଜାଯାଉଛି । ଆଉ ଏହି ଏପିସୋଡ୍‌ର ନାୟକ ହେଲେ ଉତର-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନା । ଏମିତି ଭାଗିରଥୀ ବହୁ ଦିନରୁ ବିଧାୟକ ହେବେ ବୋଲି ସ୍ୱପ୍ନ ଦେଖିଥିଲେ । କଂଗ୍ରେସରେ ସେ ଜଣେ ବେଶ୍ କାଟ୍‌ତି ନେତା ବି ଥିଲେ । ଭୁବନେଶ୍ୱର ବିଧାନସଭା ନିର୍ବାଚନମଣ୍ଡଳୀରେ ପ୍ରାର୍ଥୀ ହୋଇ ମଧ୍ୟ ସେ ଜିତିପାରି ନଥିଲେ । ପୁଣି ଭୁବନେଶ୍ୱର ନିର୍ବାଚନମଣ୍ଡଳୀରୁ କଂଗ୍ରେସରୁ ଟିକେଟ୍ ପାଇଥିବା ବେଳେ ଶେଷ ମୁହୂର୍ତ୍ତରେ ତାଙ୍କୁ କାଟି ଦିଆଯାଇ ବିଜେଡିରୁ କଂଗ୍ରେସକୁ ଆସିଥିବା ଶରତ କରଙ୍କୁ ୨୦୦୪ ମସିହାରେ ଟିକେଟ୍ ଦିଆଗଲା । ସେତେବେଳେ ଏକ ଧାରଣା ସୃଷ୍ଟି ହେଲା ଯେ ଭାଗିରଥୀ ଭବିଷ୍ୟତରେ ଆଉ ବିଧାୟକ ହୋଇପାରିବେ ନାହିଁ ବୋଲି । ରାଜନୀତିରେ ଏକ ପ୍ରବାଦ ଅଛି । ତାହା ହେଲା- ସମୟ ଯଦି ସାଥ୍ ଦିଏ ତେବେ ସବୁ ଅସମ୍ଭବ ସମ୍ଭବ ହେବ । ଭାଗିରଥୀଙ୍କ କ୍ଷେତ୍ରରେ ଏହା ହିଁ ହୋଇଛି । ସେ କଂଗ୍ରେସ ଛାଡ଼ି ବିଜେଡିକୁ ଆସିଲେ । ବହୁ ଉଦ୍ୟମ କରିଥିଲେ ୨୦୦୯ ମସିହା ନିର୍ବାଚନରେ ଭୁବନେଶ୍ୱରର ଯେକୌଣସି ତିନୋଟି ନିର୍ବାଚନମଣ୍ଡଳୀ ମଧ୍ୟରୁ ଗୋଟିକରେ ସେ ପ୍ରାର୍ଥୀ ହେବେ ବୋଲି । ଯେତେବେଳେ ଟିକେଟ୍ ଦିଆଗଲା ସେତେବେଳେ ଭାଗିରଥୀଙ୍କ ନାମ ନଥିଲା । ସୁରେନ୍ଦ୍ର ନାଥ ନାୟକଙ୍କୁ ଉତର-ଭୁବନେଶ୍ୱର ପାଇଁ ବିଜେଡିରୁ ଟିକେଟ୍ ମିଳିଲା । ଭାଗିରଥୀ ତାଙ୍କୁ କାହିଁକି ଟିକେଟ୍ ମିଳିଲା ନାହିଁ ସେ ସମ୍ପର୍କରେ ବିଜେଡି ହାଇକମାଣ୍ଡଙ୍କୁ ଅବଗତ କରାଇବାକୁ ଗଲେ । ସେତେବେଳେ ସେ ଘରୁ ବାହାରିଲା ବେଳକୁ କେଜାଣି କାହିଁକି ଶୋଷ ହେଉ ନଥିଲେ ମଧ୍ୟ ଗ୍ଲାସେ ପାଣି ପିଇଲେ । ଦେଖାଗଲା ସୁରେନ୍ଦ୍ରଙ୍କ ଟିକେଟ୍ କାଟି ଦିଆଯାଇ ଭାଗିରଥୀଙ୍କୁ ବିଜେଡିରୁ ଟିକେଟ୍ ମିଳିଲା । ଭାଗିରଥୀଙ୍କ ଆଖି ଆଗରେ ସେହି ଗ୍ଲାସେ ପାଣି କଥା ସବୁବେଳେ ନାଚି ଉଠୁଛି । ଆଉ ମଧ୍ୟ ସେ ସବୁବେଳେ ଭାବନ୍ତି ଯେ ଯଦି ସେହିଦିନ ଗ୍ଲାସେ ପାଣି ପିଇ ଯାଇ ନଥା'ନ୍ତେ ତେବେ ତାଙ୍କୁ ଟିକେଟ୍ ମିଳି

ନଥା'ନ୍ତା କି ସେ ଆଉ ବିଧାୟକ ହୋଇପାରି ନଥା'ନ୍ତେ । ସବୁ ସେହି ଗ୍ଲାସେ ପାଣିର କରାମତି । ଏବେ ଦେଖାଯାଉଛି ଭାଗିରଥୀ ଘରୁ ବାହାରକୁ ବାହାରିବା ମାତ୍ରେ ଗ୍ଲାସେ ପାଣି ପିଇ ଯାଉଛନ୍ତି । ସତେ ଯେମିତି ଗ୍ଲାସେ ପାଣି ପିଇବାଟା ଭାଗିରଥୀଙ୍କ ପାଇଁ ଶୁଭ ହୋଇଯାଉଛି । ଦେଖାଯାଉ ଭାଗିରଥୀ କେତେଦିନ ଏହି ଗ୍ଲାସେ ପାଣି ପିଇବା ଅଭ୍ୟାସ ଜାରି ରଖୁଛନ୍ତି ।

# ମହାରଥୀଙ୍କ ଇଲମ

**ବି**ଧାନସଭାରେ ପ୍ରଦୀପ ମହାରଥୀ ବିଧାୟକ ଭାବେ ଯେତେବେଳେ ବକ୍ତବ୍ୟ ରଖନ୍ତି ସେତେବେଳେ ତାଙ୍କର ବକ୍ତବ୍ୟକୁ ଅନେକ ହାଲ୍‌କା ଭାବେ ନେଇଥା'ନ୍ତି । କିନ୍ତୁ ଏମିତି କୌଣସି ପ୍ରସଙ୍ଗ ନାହିଁ ଯାହା ଉପରେ ବିଧାନସଭାରେ ପ୍ରଦୀପ ମହାରଥୀ ବକ୍ତବ୍ୟ ଦେଇପାରିବେ ନାହିଁ । ବିଧାନସଭାର ଆଇନକାନୁନ୍ ଠାରୁ ଆରମ୍ଭ କରି ସମସ୍ତ ବିଷୟରେ ପ୍ରଦୀପଙ୍କର ପାରଙ୍ଗମତା ରହିଛି । ମନ୍ତ୍ରୀ ହେବାପରେ ଏବେ ପ୍ରଦୀପ ମହାରଥୀ ବେଶ୍ ଦକ୍ଷତାର ସହ କାମ କରୁଛନ୍ତି । ଏମିତି ଅଫିସରଙ୍କୁ ଡାକି ସେ କବାଟ କିଳା ଆଲୋଚନା କରୁଛନ୍ତି । ପ୍ରଥମ ଦିନରେ ଅଫିସରଙ୍କ ସହିତ ସେ ଫଟୋ ଉଠାଇଲେ ଆଉ ନିର୍ଦ୍ଦେଶ ଦେଲେ ସେହି ଫଟୋକୁ କୃଷି ବିଭାଗର ସମସ୍ତ କାର୍ଯ୍ୟାଳୟରେ ଲଗାଯିବା ନିମନ୍ତେ । ଏହା ହେଲେ ସମସ୍ତ ଅଫିସର ଓ କର୍ମଚାରୀମାନେ ଭାବିବେ ଯେ ସେମାନଙ୍କ ବିଭାଗର ଅଫିସର ଓ ମନ୍ତ୍ରୀ ଏକ ବୋଲି । ଆଉ ଏହା ଫଳରେ କୃଷି ବିଭାଗରେ କାମ ଧିମେଇ ନଯାଇ ଦୌଡ଼ିବ । ପ୍ରଦୀପ ମହାରଥୀ ଜଣେ ଚାଷୀ ଘରର ପୁଅ । ତାଙ୍କର କୃଷି ଫାର୍ମ ଅଛି । ବିଧାନସଭା ଅଧିବେଶନ ଚାଲିବା ସମୟରେ ତାଙ୍କର ଫାର୍ମରୁ ସେ ଫଳ ଓ ପନିପରିବା ଆଣି ବିଧାୟକ ଓ ମନ୍ତ୍ରୀଙ୍କୁ ଦେଉଥିଲେ । ମନ୍ତ୍ରୀ ହେବାପରେ ଏହି ଯୋଜନାକୁ ସେ ପ୍ରୟୋଗ କରିଛନ୍ତି ତାଙ୍କ ମନ୍ତ୍ରୀ ପ୍ରକୋଷ୍ଠରେ । ମାନେ ଫାର୍ମରୁ ଫଳ ଆସିବ ଆଉ ତାହାକୁ ଜୁସ୍ କରାଯିବ । ତାଙ୍କ ମନ୍ତ୍ରୀ ପ୍ରକୋଷ୍ଠରେ ଚା' କି କଫି ଦିଆଯିବନାହିଁ । ସମସ୍ତେ ପାନ କରିବେ ଫଳ ଜୁସ୍ । ଏଥିପାଇଁ ପ୍ରଦୀପ ମହାରଥୀ ନିଜେ ଟଙ୍କା ଖର୍ଚ୍ଚ କରି ମନ୍ତ୍ରୀ ପ୍ରକୋଷ୍ଠରେ ଏକ ଫ୍ରିଜ୍ ବି ରଖିସାରିଲେଣି । ଯଦି କୃଷିମନ୍ତ୍ରୀ ହୋଇ ସେ ଚା', କଫି ପିଆଇବେ ତା' ହେଲେ ତାଙ୍କୁ କୃଷିମନ୍ତ୍ରୀ କୁହାଯିବନାହିଁ । ଫଳରସ ପିଆଇଲେ ହିଁ ତାଙ୍କୁ କୃଷିମନ୍ତ୍ରୀ କୁହାଯିବ । ଅବଶ୍ୟ ଫଳରସ ପିଆଇବା ପାଇଁ ସରକାରଙ୍କୁ ଅର୍ଥ ଦେବାକୁ ପଡ଼ିବ ନାହିଁ । ନିଜ ଫାର୍ମରେ ହେଉଥିବା ଫଳରୁ ରସ ପ୍ରସ୍ତୁତ କରି ସେ ଫଳରସ ପିଆଇବେ । ମାନିବାକୁ ପଡ଼ିବ ପ୍ରଦୀପ ମହାରଥୀଙ୍କୁ । କୃଷକ ହୋଇ କୃଷି ବିଭାଗ ପାଇଥିବାରୁ କୃଷକର ସମସ୍ୟା କ'ଣ ସେ ଭଲ ରୂପେ ଜାଣନ୍ତି । ବିଧାନସଭାରେ କୃଷକର ସମସ୍ୟାକୁ ସେ

ଭଲ ଭାବେ ଉପସ୍ଥାପନ କରନ୍ତି । ମହାରଥୀଙ୍କୁ କୃଷିମନ୍ତ୍ରୀ ଭାବେ ପାଇ କୃଷକମାନେ ଖୁସ୍ ହେବା ସାଭାବିକ । ଦେଖାଯାଉ କୃଷକଙ୍କୁ ଖୁସ୍ ରଖିବା ପାଇଁ ମହାରଥୀ କେଉଁ ପଦକ୍ଷେପ ନେଉଛନ୍ତି । ତାଙ୍କର ଫଳରସ କେବଳ ସଚିବାଳୟରେ ସୀମିତ ରହୁଛି ନା କୃଷକମାନେ ମଧ୍ୟ ଫଳରସ ପିଇ ନବୀନ ସରକାରଙ୍କ ସମୟରେ ରାମରାଜ୍ୟରେ ରହୁଛନ୍ତି ।

# ପାଟଶାଣୀଙ୍କ ସ୍ମରଣଶକ୍ତି

**ସେ**ଦିନ ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀ ତାଙ୍କ ଦରବାରରେ ବସିଥା'ନ୍ତି । ଦରବାର ଟିକିଏ ପତଳା ହୋଇଆସିଥାଏ । ପ୍ରସନ୍ନ ବାହାରକୁ ଚାହିଁ ଦାଢ଼ିକୁ ଆଉଁସୁଥା'ନ୍ତି । ଏହି ସମୟରେ ଦରବାରରେ ବସିଥିବା ଜଣେ କେହି ବ୍ୟକ୍ତି ପ୍ରସନ୍ନଙ୍କୁ ପଚାରିଲେ- ବାବା, କ'ଣ ଖାଇଲେ ସ୍ମରଣଶକ୍ତି ବଢ଼ିବ । ପ୍ରସନ୍ନ କହିଲେ- ସେଥିପାଇଁ କିଛି ନିର୍ଦ୍ଦିଷ୍ଟ ଖାଦ୍ୟ ନାହିଁ । ଯାହା ଖାଇବ ସେଥିରେ ସନ୍ତୁଷ୍ଟ ହେଲେ ସ୍ମରଣଶକ୍ତି ବଢ଼ିବ । ବ୍ୟକ୍ତି ଜଣଙ୍କ କହିଲେ- ଆପଣଙ୍କ ସ୍ମରଣଶକ୍ତି କମୁଛି ନା ବଢୁଛି । ପ୍ରସନ୍ନ କହିଲେ- ବହୁଦିନର ଘଟଣା ମଧ୍ୟ ମୋର ଏବେବି ମନେରହିଛି । ବ୍ୟକ୍ତି ଜଣଙ୍କ କହିଲେ- ୩୨ ବର୍ଷ ତଳର ଘଟଣାଟିଏ କୁହନ୍ତୁ ଦେଖି । ହଠାତ୍ ପ୍ରସନ୍ନ କହିଲେ- ମୁଁ ସେତେବେଳେ ଭିଏନା ଯାଇଥିଲି । ଏମିତି ବୁଲୁଥାଏ । ପାଠ ବି ପଢୁଥାଏ । ଜଣେ ସୁନ୍ଦରୀ ମହିଳା ତାଙ୍କ ପାଖରେ ଆସି ବସିଲେ । ଆଉ ତାଙ୍କୁ ଚାହିଁ ହସିଲେ । ପୁରୁଷଟିଏ ସୁନ୍ଦରୀ ମହିଳାଙ୍କୁ ନିଶ୍ଚିତ ଭାବେ ଚାହିଁବ ହିଁ ଚାହିଁବ । ସେହିପରି ସେ ତାଙ୍କୁ ଚାହିଁଥିଲେ । ହଠାତ୍ ଦେଖାଗଲା ସେହି ସୁନ୍ଦରୀ ମହିଳା ଜଣଙ୍କ ତାଙ୍କର ଏକ ଝୁଲାମୁଣିରୁ ଏକ ଛୋଟ ବାକ୍ସ ବାହାର କଲେ । ଆଉ ସେହି ବାକ୍ସଟିକୁ ଖୋଲିଦେଇ ସେ ତାଙ୍କର ଜିଭକୁ ଲମାଇ ଦେଲେ । ବାକ୍ସ ଭିତରୁ ସାପ ପରି ଏକ ଜୀବ ବାହାରି ସେହି ମହିଳାଙ୍କ ଜିଭକୁ ଦଂଶିଦେଲା । ଏହାପରେ ମହିଳା ଜଣଙ୍କ ବାକ୍ସଟିକୁ ବନ୍ଦ କରିଦେଲେ । ତାହା ଦେଖି ତାଙ୍କର ସେତେବେଳେ ପିଳେହିପାଣି ହୋଇଗଲାଣି । ଯଦି ବାକ୍ସଟିକୁ ମହିଳା ଜଣକ ତାଙ୍କ ଆଡ଼କୁ ଆଣିବେ ତେବେ ବାକ୍ସ ଭିତରେ ଥିବା ସେହି ସାପପରି ଜୀବଟି ତାଙ୍କୁ ଯେ ଦଂଶି ନଦେବ ତାହା କହି ହେବନାହିଁ । ମହିଳା ଜଣଙ୍କ ହସୁଥା'ନ୍ତି । ଆସ୍ତେଆସ୍ତେ ସେ ତାଙ୍କର ନିକଟବର୍ତ୍ତୀ ହେଲେ । ଅବଶ୍ୟ ସୁନ୍ଦରୀ ମହିଳା ଜଣଙ୍କ ତାଙ୍କ ନିକଟବର୍ତ୍ତୀ ହେଉଥିବାରୁ ସେଥିରେ ତାଙ୍କ ମନ ଭିତରେ ଆନନ୍ଦ ଆସିଯାଉଥିଲା । କିନ୍ତୁ ବାକ୍ସ ଭିତରେ ଥିବା ସାପ ପରି ଜୀବଟିର ଚେହେରା ମନ ଭିତରେ ଆସିଯାଉଥିବାରୁ ଆନନ୍ଦ ଅପେକ୍ଷା ଆତଙ୍କ ଅଧିକ ହୋଇଯାଉଥିଲା । ମହିଳା ଜଣଙ୍କ କ'ଣ ଭାବିଲେ କେଜାଣି ତାଙ୍କ ପାଖକୁ ଲାଗିଆସିଲେ । ମହିଳାଙ୍କୁ ହ୍ୟାଲୋ ବୋଲି ସେ

କହିଲେ । ମହିଳା ଜଣଙ୍କ ହ୍ୟାଲୋ କହି ତାଙ୍କ ଆଡ଼କୁ ହାତ ବଢ଼ାଇ ଦେଲେ । ଏହି ସମୟରେ ସେ ଭାବିଲେ ଯେ ମହିଳା ଜଣଙ୍କ ବୋଧହୁଏ ସେହି ବାକ୍ସଟିକୁ ତାଙ୍କ ଆଡ଼କୁ ବଢ଼ାଇ ଦେଲେ ବୋଲି । ଆଲୋ ବୋପାଲୋ କହି ସେ ସେଠାରୁ ଉଠି ଦୌଡ଼ିଲେ । କିଛି ବାଟ ଯିବାପରେ ପଛକୁ ସେ ଚାହିଁଲେ । ସେତେବେଳେ ସେ ଦେଖିଲେ ଯେ ସୁନ୍ଦରୀ ମହିଳା ଜଣଙ୍କ ଖୁବ୍ ଜୋର୍‌ରେ ହସୁଥିଲେ । ଆଉ ବାକ୍ସଟିକୁ ଖୋଲି ସେ ଜିଭକୁ ଦେଖାଉଥିଲେ । ଏହି ଘଟଣାଟିକୁ ପ୍ରସନ୍ନ ଏଭଳି ବଖାଣୁଥିଲେ ଯେ ସତେ ଯେମିତି ସଙ୍ଗେସଙ୍ଗେ ସେ ସୁନ୍ଦରୀ ମହିଳାଙ୍କ ପାଖରୁ ଫେରିଥିଲେ । ପ୍ରଶ୍ନ ପଚାରିଥିବା ବ୍ୟକ୍ତି ଜଣଙ୍କ କହିଲେ- ବାବା, ପ୍ରକୃତରେ ଆପଣଙ୍କର ସ୍ମରଣଶକ୍ତି ପ୍ରଖର । ୩୫ ବର୍ଷ ତଳର ଘଟଣାକୁ ମଧ୍ୟ ଆପଣ ଟିକିନିଖି ମନେ ରଖିଛନ୍ତି । ପ୍ରସନ୍ନ କହିଲେ- ସେଇଥିପାଇଁ ତ ତାଙ୍କର ନାଁ ପ୍ରସନ୍ନ ପାଟଶାଣୀରୁ ଏବେ ବାବା ହୋଇଯାଇଛି । ଏହାପରେ ପ୍ରସନ୍ନ ହୋ ହୋ ହୋଇ ହସି ଉଠିଲେ ।

## ରାଜ୍ୟପାଳଙ୍କ ନିଶା

**ଓ**ଡ଼ିଶାର ରାଜ୍ୟପାଳ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ବୟସ ହେଉଛି ୮୨ ବର୍ଷ । କିନ୍ତୁ ତାଙ୍କର ଚାଲିଚଳଣ ଯାହା ସେଥିରେ ତାଙ୍କର ବୟସ ୮୨ ନକୁହାଯାଇ ବରଂ ତାହାକୁ ଓଲଟାଇ ଦେଲେ ଠିକ୍ ହେବ । ମାନେ ୨୮ ବର୍ଷ । ଏମିତି ୮୨ ବର୍ଷରେ ଜଣେ କେହି ଗଲ୍‌ଫ ଖେଳିବାକୁ ଯିବେନାହିଁ । କିନ୍ତୁ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କୁ ଗଲ୍‌ଫ ନିଶା ଏତେ ଜୋର୍‌ରେ ଘାରିଛି ଯେ ପ୍ରତିଦିନ ସେ ଯେମିତି ହେଲେ ଗଲ୍‌ଫ ଖେଳିବାକୁ ଯିବେ ହିଁ ଯିବେ । ଯୁବକମାନେ ଗଲ୍‌ଫ ଖେଳିବାକୁ ପସନ୍ଦ ବି କରି ନଥା'ନ୍ତି । କିନ୍ତୁ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଗଲ୍‌ଫ ଖେଳି ସତେ ଯେମିତି ଯୁବକ ହୋଇଯାଇଛନ୍ତି । ଏ ତ ଗଲା ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ଗଲ୍‌ଫ ଖେଳିବା ନିଶା । ଏବେ ଆସିବା ଆଉ ଏକ ନିଶାକୁ । ଏହି ନିଶାଟି ହେଲା ସନ୍ତରଣ । ସତେ ଯେମିତି ନପହଁରିଲେ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ମନରେ ଶାନ୍ତି ଆସେନାହିଁ । ଅବଶ୍ୟ ସବୁଦିନ ପହଁରିବାକୁ ଯାଆନ୍ତି ନାହିଁ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ । ସପ୍ତାହରେ ଦୁଇଦିନ ଯେମିତି ହେଲେ ସେ ପହଁରିବାକୁ ଯିବେ । ସତେ ଯେମିତି ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଯୁବକ ତ ନୁହନ୍ତି ଜଣେ ସୁପର ଯୁବକ । ତାଙ୍କ ବୟସରେ କେହି ଗଲ୍‌ଫ ଖେଳିବାକୁ ଯିବେନାହିଁ କି ପହଁରିବେ ନାହିଁ । ଓଡ଼ିଶାରେ ୮୨ ବର୍ଷର ଜଣେ ବ୍ୟକ୍ତି ପହଁରୁଥିବାର କେହିବି ଦେଖି ନଥିବେ । ଏହି ଦୃଷ୍ଟିରୁ ରାଜ୍ୟପାଳ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କୁ ମାନିବାକୁ ହିଁ ପଡ଼ିବ । ଅବଶ୍ୟ ସଭାସମିତିରେ ମାନ୍ୟବର ରାଜ୍ୟପାଳ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଯେଉଁଠି ଯୋଗ ଦେଉଛନ୍ତି ସେଠାରେ ତାଙ୍କର ଗଲ୍‌ଫ ଖେଳିବା ଓ ପହଁରିବା ନିଶା ସମ୍ପର୍କରେ ଦୁଇପଦ

କହିବା ଉଚିତ୍ । ଏହା ହେଲେ ତାହାର ପ୍ରଭାବ ନିଶ୍ଚିତ ଭାବେ ଓଡ଼ିଶାର ଜନସାଧାରଣଙ୍କ ଉପରେ ପଡ଼ିବ ହିଁ ପଡ଼ିବ । ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଗଲ୍‌ଫ ଖେଳି କିମ୍ବା ପହଁରିବା ପରେ ଯେ ହାଲିଆ ହୋଇଯାଆନ୍ତି ତାହା ନୁହେଁ । ବରଂ କାମ କରିବା ପାଇଁ ତାଙ୍କ ମନରେ ଏହି ଗଲ୍‌ଫ ଖେଳ ଓ ପହଁରା ବେଶ୍ ଉତ୍ସାହ ଆଣି ଦେଇଥାଏ । ଯେଉଁଥିପାଇଁ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ଗଲ୍‌ଫ ଖେଳିସାରି କିମ୍ବା ପହଁରିସାରି ରାଜଭବନରେ ପହଂଚିବା ପରେ ସେ ଦୀର୍ଘ ସମୟ ଧରି କାମ କରିଥା'ନ୍ତି । ତାଙ୍କ ମନରେ ଉତ୍ସାହ, ଉଦ୍ଦିପନା ଏତେ ଅଧିକ ଥାଏ ଯେ ତାହା ଦେଖିଲେ ଯେକୌଣସି ବ୍ୟକ୍ତି ଆଶ୍ଚର୍ଯ୍ୟ ହେବେ ହିଁ ହେବେ । ମାନିବାକୁ ପଡ଼ିବ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କୁ । ୮୨ ବର୍ଷ ବୟସରେ ମଧ ସେ ଯୁବକମାନଙ୍କୁ ଟପିଯାଉଛନ୍ତି । ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ ଏହି ଗଲ୍‌ଫ ଖେଳିବା ଓ ପହଁରିବା ଦୃଶ୍ୟକୁ ରାଜ୍ୟ ସରକାର ପ୍ରଚାର କଲେ ଯୁବକମାନେ ନହୁଅନ୍ତୁ ପଛେ ବୟସ୍କମାନେ ନିଜକୁ ଫିଟ୍ ରଖିବା ପାଇଁ ଆଗେଇ ଆସନ୍ତେ ।

# ଅତନୁ ଓ ପହଁରା

**ସେ**ଦିନ ଉଚ୍ଚଶିକ୍ଷା, କ୍ରୀଡ଼ା ଓ ଯୁବ ବ୍ୟାପାର ମନ୍ତ୍ରୀ ବଦ୍ରି ନାରାୟଣ ପାତ୍ରଙ୍କ ପ୍ରକୋଷ୍ଠରେ ବସିଥିଲେ ଶକ୍ତିମନ୍ତ୍ରୀ ଅତନୁ ସବ୍ୟସାଚୀ ନାୟକ । ଏମିତି ବଦ୍ରିଙ୍କ ସହିତ ଅତନୁଙ୍କର ଗୁରୁତ୍ୱପୂର୍ଣ୍ଣ ଆଲୋଚନା ଚାଲିଥାଏ । ଆଲୋଚନା ଶେଷ ପରେ ଅତନୁଙ୍କୁ କଫିରେ ଆପ୍ୟାୟିତ କଲେ ବଦ୍ରି । କଫି ପାନ ବେଳେ ହଠାତ୍ ଅତନୁ ଜାଣିବାକୁ ଚାହିଁଲେ ବଦ୍ରିଙ୍କ ବିଭାଗ ଦ୍ୱାରା ତାଙ୍କ ନିର୍ବାଚନମଣ୍ଡଳୀରେ କେଉଁ ନୂଆ କାମ ହେବ ବୋଲି । ପ୍ରଥମେ ଷ୍ଟାଡ଼ିୟମ କଥା ପଡ଼ିଲା । ବଦ୍ରି କହିଲେ- ବିଭାଗରେ ପାଣ୍ଠି ବହୁତ କମ୍ । ଛୋଟ ବିଭାଗଟିଏ । ତେଣୁ ସବୁଆଡ଼େ ଷ୍ଟାଡ଼ିୟମ କରି ହେବନାହିଁ । ତେବେ ପାଣ୍ଠିକୁ ଦେଖି କେଉଁଠି ଷ୍ଟାଡ଼ିୟମ ହେବ ତାହା ନିଷତି ନିଆଯିବ । ଏମିତି କଥା ପଡୁପଡୁ ହଠାତ୍ ଅତନୁ କହିଲେ- ପହଁରା ଶିଖାଇ ଦେବେ କି । ଏଥିରେ ଜୋର୍‌ରେ ହସି ଉଠିଲେ ବଦ୍ରି । ଅତନୁ କହିଲେ- ଆପଣ ହସନ୍ତୁ ନାହିଁ । ସେ ହେଲେ କେନ୍ଦ୍ରାପଡ଼ା ଜିଲାର ବାସିନ୍ଦା । ପୁଣି ତାଙ୍କର ନିର୍ବାଚନମଣ୍ଡଳୀ ହେଉଛି ମହାକାଳପଡ଼ା । ଯେଉଁଠି ବନ୍ୟା, ବାତ୍ୟା ଚିର ସହଚର । ବନ୍ୟା ଅଂଚଳର ବ୍ୟକ୍ତି ହୋଇଥିବାରୁ ତାଙ୍କର ପହଁରା ଜାଣିବା ଦରକାର । ତେଣୁ ସେ ପହଁରା ଶିଖିବାକୁ ଚାହୁଁଛନ୍ତି । ବଦ୍ରି କହିଲେ- ଏହା ଏକ ଭଲ ପ୍ରସ୍ତାବ । ମନ୍ତ୍ରୀ ଯଦି ପହଁରା ଶିଖିବାକୁ ଚାହିଁବେ ତେବେ ତାଲିମ ଦେବା ପାଇଁ ତାଙ୍କ କ୍ରୀଡ଼ା ବିଭାଗ ବନ୍ଦୋବସ୍ତ କରିଦେବ । ଏମିତି କଳିଙ୍ଗ ଷ୍ଟାଡ଼ିୟମର ସୁଇମିଂପୁଲ୍‌ରେ ପହଁରା ଶିକ୍ଷା ଦିଆଯାଉଛି । ଖରାଦିନେ ପହଁରିବା ପାଇଁ ବହୁ ଭିଡ଼ ହେଉଛି । ଟିକିଏ ଅପେକ୍ଷା କରିଗଲେ ଭିଡ଼ କମିଯିବ । ଏହି

ସମୟରେ ଅତନୁ କହିଲେ ସେ ରମେଶ ମାଝୀଙ୍କ ସମ୍ପର୍କରେ ବେଳେବେଳେ ଭାବନ୍ତି । କଲେଜ ଛାଡ଼ିବାର ୧୫ ବର୍ଷର ବ୍ୟବଧାନ ପରେ ସେ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ପାଶ୍ କଲେ । ଏହାକୁ ଛୋଟ କଥା ବୋଲି ଧରାଯିବ ନାହିଁ । ରାଜନୀତି କରି ଜଣେ ପାଠ ପଢ଼ି ପାରିବ ସେ ଦିଗରେ ରମେଶ ଏବେ ଅନ୍ୟମାନଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଯାଇଛନ୍ତି । ଏଥିପାଇଁ ରମେଶଙ୍କୁ ପ୍ରଶଂସା କରିବାକୁ ହେବ ହିଁ ହେବ । ଯଦି ରମେଶ ୧୫ ବର୍ଷ ବ୍ୟବଧାନ ପରେ ଯୁକ୍ତ ଦୁଇ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀରେ ପାଶ୍ କରୁଛନ୍ତି ତେବେ ସେ ନିଜେ ପିଲାଦିନେ ପହଁରା ଶିଖି ନଥିଲେ ମଧ ବର୍ତମାନ ବୟସରେ କାହିଁକି ପହଁରା ଶିଖିପାରିବେ ନାହିଁ । ଦୃଢ଼ ଇଚ୍ଛାଶକ୍ତି ଥିଲେ ସବୁକିଛି ସମ୍ଭବ ହୋଇପାରିବ । ଏହି ସମୟରେ ବଦ୍ରି ପାତ୍ର କହିଲେ- ତାଙ୍କର ଦୃଢ଼ ଇଚ୍ଛାଶକ୍ତି ଅଛି ବୋଲି ସେ ଜାଣିସାରିଲେଣି । ତେଣୁ କ୍ରୀଡ଼ା ବିଭାଗ ପକ୍ଷରୁ ତାଙ୍କୁ ପହଁରା ଶିଖାଇ ଦିଆଯିବାର ବ୍ୟବସ୍ଥା କରାଯିବ । ଏହାପରେ ବଦ୍ରିଙ୍କୁ ଧନ୍ୟବାଦ ଦେଇ ଅତନୁ ତାଙ୍କ ପ୍ରକୋଷ୍ଠକୁ ଚାଲିଗଲେ । କିନ୍ତୁ ଅତନୁ ଚାଲିଯିବା ପରେ ପହଁରା ଶିଖିବା ପାଇଁ ତାଙ୍କର ଯେଉଁ ଆଗ୍ରହ ଅଛି ତାହାକୁ ନେଇ ସେଠାରେ ଥିବା କେତେକ ବ୍ୟକ୍ତି ଚର୍ଚ୍ଚା କଲେ । ଆଉ ସମସ୍ତେ ଅତନୁଙ୍କୁ ପ୍ରଶଂସା କଲେ । ଯାହା ଜାଣିନାହାନ୍ତି ତାହାକୁ ପ୍ରକାଶ କରିଦେଲେ କିଛି ଅସୁବିଧା ହେବନାହିଁ । ଆଉ ଶିଖିବା ପାଇଁ ଆଗ୍ରହ ପ୍ରକାଶ କଲେ ଜଣେ ଉପରକୁ ଉଠିବ । ଆଉ ଏହି ମନୋବୃତି ହିଁ ଅତନୁଙ୍କ ଠାରେ ଅଛି ବୋଲି ସେଦିନ ସ୍ପଷ୍ଟ ହୋଇଯାଇଥିଲା ।

# ନିରଂଜନ ପୂଜାରୀ ଓ ପ୍ରସନ୍ନ ଆଚାର୍ଯ୍ୟ

ନିରଂଜନ ପୂଜାରୀ କ୍ୟାବିନେଟ୍ ମନ୍ତ୍ରୀ । ପ୍ରସନ୍ନ ଆଚାର୍ଯ୍ୟ ମଧ କ୍ୟାବିନେଟ୍ ମନ୍ତ୍ରୀ । ତେବେ ପ୍ରସନ୍ନ ଆଚାର୍ଯ୍ୟଙ୍କର ଋଣ ନିରଂଜନ ଶୁଝିପାରିବେ ନାହିଁ ବୋଲି ଏମିତି କହୁକହୁ କହିଦେଲେ । କାରଣ ଆଉ କିଛି ନୁହେଁ । ୨୦୦୦ ମସିହାରେ ବିଜେଡିର ଯେଉଁ ଟିକେଟ ସେ ପାଇଥିଲେ ସେଥିରେ ପ୍ରସନ୍ନଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ଏମିତି ୮୦ ଦଶକରେ ଯେଉଁ ଛାତ୍ର ଆନ୍ଦୋଳନ ହୋଇଥିଲା ସେଥିରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ ନିରଂଜନ । ୧୯୯୭ ମସିହାରେ ଯେତେବେଳେ ବିଜେଡି ଗଠନ ହେଲା ସେତେବେଳେ ବିନିକା ନିର୍ବାଚନମଣ୍ଡଳୀରେ ଜନତା ଦଳର ବିଧାୟକ ଥିଲେ ନରସିଂହ ମିଶ୍ର । କିନ୍ତୁ ନରସିଂହ ଚାହିଁଲେ ନାହିଁ ବିଜେଡିରେ ସାମିଲ ହେବା ପାଇଁ । ଆଉ ବିନିକାରେ ମଧ ସେ ବିଜେଡିକୁ ପୂରାଇ ଦେଲେନାହିଁ । ଯେହେତୁ ଛାତ୍ର ନେତା ସମୟରୁ ରାଜନୀତିରେ ପ୍ରବଳ ଆଗ୍ରହ ନିରଂଜନ ପୂଜାରୀ ରଖିଥିଲେ ତେଣୁ ସେତେବେଳେ ବିନିକାରୁ ବିଜେଡିର ନେତୃତ୍ୱ ନେବା ପାଇଁ ବିଜେଡିର ପ୍ରତିଷ୍ଠାତା ମହାସଚିବ ପ୍ରସନ୍ନ ଆଚାର୍ଯ୍ୟ ତାଙ୍କୁ ଅନୁରୋଧ

କରିଥିଲେ । ପ୍ରସନ୍ନଙ୍କ ବିଧାନସଭା ନିର୍ବାଚନମଣ୍ଡଳୀ ଥିଲା ବରଗଡ଼ । ପରେ ସେ ସମ୍ବଲପୁର ଲୋକସଭା ଆସନରୁ ସାଂସଦ ହୋଇଥିଲେ । ବରଗଡ଼ ଆଉ ବିନିକା ନିର୍ବାଚନମଣ୍ଡଳୀ ପାଖାପାଖି । ଏହି ଦୃଷ୍ଟିରୁ ପ୍ରସନ୍ନଙ୍କ ସହିତ ବେଶ୍ ପରିଚୟ ଥାଏ ନିରଂଜନ ପୂଜାରୀଙ୍କର । ତେବେ ୨୦୦୦ ମସିହା ନିର୍ବାଚନରେ ବିନିକା ବିଜେଡି ଭାଗରେ ପଡ଼ିବ କି ବିଜେପି ଭାଗରେ ପଡ଼ିବ ତାହା ଶେଷ ପର୍ଯ୍ୟନ୍ତ ସ୍ଥିର ହୋଇପାରୁ ନଥିଲା । ନିରଂଜନ ବହୁଦିନ ଧରି ଭୁବନେଶ୍ୱରରେ ଡେରା ପକାଇ ରହିଲେ । କାଳେ ବିଜେଡି ଭାଗରେ ବିନିକା ପଡ଼ିଗଲେ ତାଙ୍କୁ ଟିକେଟ ମିଳିଯିବ ବୋଲି ସେ ଭାବୁଥିଲେ । କିନ୍ତୁ ଶେଷ ବେଳକୁ ପ୍ରଚାର ହେଲା ଯେ, ଅନଙ୍ଗ ଉଦୟ ସିଂହଦେଓ ଓ ପଦ୍ମନାଭ ବେହେରା ତାଙ୍କୁ ବିରୋଧ କରୁଛନ୍ତି । ସେମାନେ ପୀତାମ୍ବର ପ୍ରଧାନଙ୍କୁ ବିଜେଡିରୁ ଟିକେଟ ଦେବା ପାଇଁ ସୁପାରିଶ କରିଛନ୍ତି । ଏହି ଦୃଷ୍ଟିରୁ ନିରଂଜନ ଆଉ ବିଜେଡିରୁ ଟିକେଟ ପାଇବେ ବୋଲି ଭାବିଲେ ନାହିଁ । ଯେତେବେଳେ ସେ ବିନିକା ଫେରିଯିବାକୁ ବସିଲେ ସେତେବେଳେ ତାଙ୍କୁ କୁହାଗଲା ଅଳ୍ପ ସମୟ ମଧ୍ୟରେ ଆସନ ବଂଟା ଚୂଡ଼ାନ୍ତ ହୋଇଯିବ । ପୁଣି ଯେତେବେଳେ ଆସନ ବଂଟା ଚୂଡ଼ାନ୍ତ ହୋଇଗଲା ସେତେବେଳେ ତୁରନ୍ତ ଟିକେଟ ବଂଟନ ହେଲା । ହାତରେ ସମୟ ନଥିବାରୁ ସମସ୍ତେ ଟିକେଟ ନେଇ ପ୍ରାର୍ଥୀପତ୍ର ଦାଖଲ କରିବା ପାଇଁ ଚାଲିଯାଉଥିଲେ । ଅନଙ୍ଗ ଉଦୟ ସିଂହଦେଓ ମଧ୍ୟ ପ୍ରାର୍ଥୀପତ୍ର ଦାଖଲ କରିବା ପାଇଁ ଟିକେଟ ନେଇ ବଲାଙ୍ଗୀର ଚାଲିଯାଇଥିଲେ । ସେପଟେ ଫୁଲବାଣୀ ବିଜେଡି ଭାଗରେ ପଡ଼ିଥିଲେ ମଧ୍ୟ ପ୍ରଚାର ହେଲା ଯେ ବିଜେପି ଭାଗରେ ପଡ଼ିଛି ବୋଲି । ଏଥିରେ ପଦ୍ମନାଭ ବିରକ୍ତ ହୋଇଯାଇଥିଲେ । ନିଜେ ଟିକେଟ କିପରି ପାଇବେ ସେଥିପାଇଁ ସେ ଲବି କରିଚାଲିଥିବାରୁ ପଦ୍ମନାଭ ବିନିକା କଥା ଆଉ ବୁଝିଲେ ନାହିଁ । ଏହି ସମୟରେ ନିରଂଜନଙ୍କ ନିକଟକୁ ପ୍ରସନ୍ନ ଖବର ପଠାଇଲେ ଯେ ତୁରନ୍ତ ନବୀନ ନିବାସ ଆସି ଟିକେଟ ନେଇଯାଆନ୍ତୁ ବୋଲି । ଏଥିରେ ନିରଂଜନ ବେଶ୍ ଖୁସି ହୋଇଯାଇଥିଲେ । ତେବେ ନବୀନଙ୍କ ପାଖକୁ ଯେତେବେଳେ ନିରଂଜନ ଗଲେ ସେତେବେଳେ ନବୀନ ହଠାତ୍ ପଚାରିଲେ- ନାମ କ'ଣ ବୋଲି । ପାଖରେ ଥିବା ପ୍ରସନ୍ନ କହିଲେ- ନିରଂଜନ ପୂଜାରୀ । ନବୀନ କହିଲେ- ୟାଙ୍କର ନାମ ବୋଧହୁଏ ନାହିଁ । ଅନଙ୍ଗ ଉଦୟ ଓ ପଦ୍ମନାଭ ଅନ୍ୟ କାହା ନାଁ କହିଛନ୍ତି । କିନ୍ତୁ ପ୍ରସନ୍ନ ଦୃଢ଼ତାର ସହ କହିଲେ- ସେମାନଙ୍କ ସହିତ ଆଲୋଚନା ହୋଇଥିଲା ନିରଂଜନ ପୂଜାରୀଙ୍କ ନାମକୁ ନେଇ । ତେଣୁ ନିରଂଜନଙ୍କୁ ଟିକେଟ ଦିଆଯାଉ । ନବୀନ ସେତେବେଳେ ଟିକିଏ କୁନୁକୁନୁ ହେଲେ । କିନ୍ତୁ ହାତରେ ସମୟ ନଥିବାରୁ ତୁରନ୍ତ ଟିକେଟ ଦେଲେ ଆଉ ରାତାରାତି ବଲାଙ୍ଗୀର ଯାଇ ପ୍ରାର୍ଥୀପତ୍ର ଦାଖଲ କରିବା ପାଇଁ ନିର୍ଦ୍ଦେଶ ଦେଲେ । ନିରଂଜନ ଟିକେଟ ଧରି ଆସିବା ବେଳକୁ ଦେଖିଲେ ପଦ୍ମନାଭ ନବୀନ ନିବାସରେ ପଶୁଛନ୍ତି ।

ସେତେବେଳେ ଆଉ ପଦ୍ମନାଭଙ୍କୁ ଦେଖା ଦେଲେନାହିଁ ନିରଂଜନ । ଅବଶ୍ୟ ସେତେବେଳେ ମୋବାଇଲ ଫୋନ୍‌ର ସେମିତି ଚଳପ୍ରଚଳ ନଥିଲା । ନହେଲେ ପଦ୍ମନାଭ ନବୀନଙ୍କୁ ସାକ୍ଷାତ କରିବା ପରେ ନିରଂଜନଙ୍କ ନାମ ମଧ୍ୟ ବିଜେଡି ଟିକେଟରୁ କଟିଯାଇଥା'ନ୍ତା । ପ୍ରସନ୍ନ ଆଚାର୍ଯ୍ୟ ଯଦି ନଥା'ନ୍ତେ ତେବେ ନିରଂଜନ ଟିକେଟ ପାଇ ନଥା'ନ୍ତେ । ଆଉ ବିଜେଡି ବିଧାୟକ ହୋଇପାରି ନଥା'ନ୍ତେ । ତେଣିକି କ୍ୟାବିନେଟ୍ ମନ୍ତ୍ରୀ ପଛକଥା । ଏହି ଘଟଣାଟି ସତେ ଯେମିତି ନିରଂଜନଙ୍କର ସ୍ମୃତିପଟ୍ଟରେ ଲିପିବଦ୍ଧ ହୋଇରହିଯାଇଛି । ଯେଉଁଥିପାଇଁ ପ୍ରସନ୍ନଙ୍କ ପ୍ରତି ନିରଂଜନଙ୍କର ମୁଣ୍ଡ ଆପେଆପେ ନଇଁଯାଉଛି । କିନ୍ତୁ ରାଜନୀତିରେ ଯିଏ ସାହାଯ୍ୟ କରିଥିବ ତାଙ୍କରି ବେକରେ ଗୋଡ଼ ଦେଇ ଉପରକୁ ଉଠିଲେ ହିଁ ଜଣେ ସଫଳ ନେତା ହୋଇପାରିବ । ଆଉ ଏହା ହିଁ ଚାଲିଛି ବର୍ତ୍ତମାନ ସମୟରେ । ନିରଂଜନ କିନ୍ତୁ ଏଥିରୁ ବ୍ୟତିକ୍ରମ ଅଟନ୍ତି । ଦେଖାଯାଉ କମ୍ୟୁନିଷ୍ଟରୁ ବିଜେଡିକୁ ଆସି କ୍ୟାବିନେଟ୍ ମନ୍ତ୍ରୀ ହୋଇଥିବା ନିରଂଜନ କେତେଦିନ ପ୍ରସନ୍ନଙ୍କ ପ୍ରଶଂସା କରିଚାଲୁଥିବେ ।

## ଓମାନ୍ ପ୍ରିୟ ଅନଙ୍ଗ

ଏମିତି ଓମାନ୍ କୁହାଗଲେ ଓଡ଼ିଆରେ ବୁଝାଯାଏ ମହିଳା ବୋଲି । କିନ୍ତୁ ଏଠାରେ ଯେଉଁ ଓମାନ୍ କଥା କୁହାଯାଉଛି ତାହାର ଓଡ଼ିଆ ଶବ୍ଦ କିଛିନାହିଁ । ଏହା ଏକ ରାଷ୍ଟ୍ରର ନାମ । କେଜାଣି କାହିଁକି ହଠାତ୍ ମନ୍ତ୍ରୀ ଅନଙ୍ଗ ଉଦୟ ସିଂହଦେଓଙ୍କ ଠାରେ ଓମାନ୍ ପ୍ରୀତି ଦେଖାଗଲା । ଏମିତି ମନ୍ତ୍ରିମଣ୍ଡଳ ଅଦଳବଦଳ ହେଲେ ଅନଙ୍ଗ ଭାବି ନେଇଥିଲେ ଯେ ତାଙ୍କୁ ନିଶ୍ଚିତ ଭାବେ ପୂର୍ତ୍ତ ବିଭାଗ ମିଳିବ ବୋଲି । ଏ ସମ୍ପର୍କରେ କୁଆଡ଼େ ଅନଙ୍ଗ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ସହିତ ମଧ୍ୟ ଆଲୋଚନା କରିଥିଲେ । କିନ୍ତୁ ଘଟଣାଟି ହାତୀ ପାଡ଼ିବ ପାଡ଼ିବ ଫୁସ୍ ପରି ହୋଇଗଲା । ଅନଙ୍ଗ ପୂର୍ବରୁ ଥିଲେ ଯୋଜନା, ସମନ୍ୱୟ ଓ ସରକାରୀ ଉଦ୍ୟୋଗ ମନ୍ତ୍ରୀ । ଅନଙ୍ଗଙ୍କ ଠାରୁ ସରକାରୀ ଉଦ୍ୟୋଗ ବିଭାଗ କାଢ଼ି ନିଆଯାଇ ଅବକାରୀ ବିଭାଗ ଦିଆଗଲା । ଯେତେବେଳେ ଅନଙ୍ଗ ଜାଣିଲେ ଯେ ତାଙ୍କୁ ଅବକାରୀ ବିଭାଗ ଦିଆଯାଇଛି ବୋଲି ସେତେବେଳେ ତାଙ୍କ ମନ ଊଣା ତ ନୁହେଁ ଆହୁରି ଦୁଃଖ ହୋଇଗଲା । ଅନଙ୍ଗ ଭାବିନେଲେ ଯେ ବୋଧହୁଏ ତାଙ୍କୁ ମନ୍ତ୍ରିମଣ୍ଡଳରୁ ବାହାର କରିବା ପାଇଁ ଏକ ଯୋଜନା ଚାଲିଛି । ଆଉ ଅବକାରୀ ବିଭାଗ ଦିଆଯିବା ଏହାର ମୁଖ୍ୟ କାରଣ । ଯେକୌଣସି ସମୟରେ ମଦ ମୃତ୍ୟୁ ହୋଇପାରେ । ଆଉ ଅବକାରୀ ମନ୍ତ୍ରୀ ହୋଇଥିବାରୁ ତାହାକୁ ମୁଣ୍ଡକୁ ନେଇ ସେ ମନ୍ତ୍ରୀ ପଦରୁ ଇସ୍ତଫା ଦେବାକୁ ଚାପ ପଡ଼ିବ । ପୂର୍ତ୍ତ ବିଭାଗ ପ୍ରତି ଅନଙ୍ଗଙ୍କର ଏକ ସତନ୍ତ୍ର ଦୁର୍ବଳତା ରହିଛି । ୨୦୦୪ରୁ ୨୦୦୯ ମସିହା ପର୍ଯ୍ୟନ୍ତ ଅନଙ୍ଗ ପୂର୍ତ୍ତ ବିଭାଗର ମନ୍ତ୍ରୀ ଥିଲେ । ଏଥର ମଧ୍ୟ ପୂର୍ତ୍ତ ବିଭାଗ ପାଇବେ ବୋଲି ଆଶା

ରଖିଥିଲେ । ଅନଙ୍ଗଙ୍କୁ ଯେଉଁ ବିଭାଗ ଦିଆଯାଇଥିଲା ତାହା କେବଳ ମନ୍ତ୍ରୀ ହୋଇରହିବା ପାଇଁ । ମାନେ କାମ ନାହିଁ କି ଫାଇଲ ନାହିଁ । ଯେଉଁଥିପାଇଁ ଅନଙ୍ଗ ମାସକରେ ୨୫ ଦିନ ଓଡ଼ିଶା ବାହାରେ ରହିଲେ । କେତେବେଳେ ଦିଲ୍ଲୀରେ ତ କେତେବେଳେ ମୁମ୍ବାଇରେ । ତେବେ ମନ୍ତ୍ରିମଣ୍ଡଳ ସଂପ୍ରସାରଣ ହେବାକୁ ଯାଉଥିବାରୁ ଅନଙ୍ଗ ଭାବିନେଲେ ଯେ ତାଙ୍କର ବେଳା ଭଲ ପଡ଼ିଯାଇଛି ବୋଲି । କିନ୍ତୁ ଯାହା ଦେଖାଗଲା ବେଳା ଭଲ ପରିବର୍ତ୍ତେ ଖରାପ ଆଡ଼କୁ ଆସିଯାଇଛି । ଅନଙ୍ଗ ଅବକାରୀ ବିଭାଗ ଗ୍ରହଣ କରିବେ କି ନାହିଁ ନିଷ୍ପତି ନେଇପାରିଲେ ନାହିଁ । କିନ୍ତୁ ପରିସ୍ଥିତି ଏପରି ହୋଇଥିଲା ଯେ ସେ ଅବକାରୀ ବିଭାଗ ନେବାକୁ ବାଧ ହେଲେ । ଏବେ ଦେଖାଗଲାଣି ଅବକାରୀ ବିଭାଗ ପାଇ ଅନଙ୍ଗ ସାମାନ୍ୟ ଖୁସି ହେଉଥିବାର । କେହି ଜଣେ କହିଲେ ଯେ ଓମାନ୍ ରାଷ୍ଟ୍ର ବୁଲିଗଲେ ଅନଙ୍ଗଙ୍କର ଖରାପ ବେଳା କଟିଯିବ ବୋଲି । ନେତାମାନେ ସାଧାରଣତଃ ଭବିଷ୍ୟଦ୍ରଷ୍ଟାଙ୍କୁ ବିଶ୍ୱାସକୁ ନେଇଥା'ନ୍ତି । ଅନଙ୍ଗ ମଧ ସେଭଳି ବିଶ୍ୱାସ କଲେ । ଯେଉଁଥିପାଇଁ ଓମାନ୍ ରାଷ୍ଟ୍ରକୁ ସେ ବୁଲିବାକୁ ଗଲେ । ଦେଖାଯାଉ ଓମାନ୍ ରାଷ୍ଟ୍ର ବୁଲି ଆସିବା ପରେ ଅନଙ୍ଗଙ୍କର ଭାଗ୍ୟ ଅନୁକୂଳ ହେଉଛି କି ନାହିଁ ।

## କାଳି-ଗୋରି

ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀଙ୍କର ଦରବାର ଚାଲିଥାଏ । ହଠାତ୍ ଦୁଇଜଣ ମହିଳା ସେଠାରେ ଖିଲିଖିଲି ହୋଇ ହସୁଥିବାର ଦେଖାଗଲା । ସେମାନଙ୍କୁ ଚାହିଁ ପ୍ରସନ୍ନ କହିଲେ- ଦରବାରକୁ ଆସିଛ କ'ଣ କାମ ଅଛି କୁହ । ମୋ ଦରବାରରେ ମହିଳାମାନେ ବେଶୀ ସମୟ ରହିବେ ନାହିଁ । ଏହି ସମୟରେ ସେହି ଦୁଇଜଣ ମହିଳା ଏକସମୟରେ କହିଲେ- ଆମେ ବହୁ ଥର ଆପଣଙ୍କ ଦରବାରକୁ ଆସିଲୁଣି । ଯାହା କାମ ହାସଲ କରିବା କଥା କରିସାରିଲୁଣି । ଆପଣ ଆମ ପାଇଁ ଫୋନ୍ କରିଦିଅନ୍ତି ପୁଣି ଚିଠି ବି ଲେଖି ଦିଅନ୍ତି । କାମ ଆମର ସବୁ ଫଟାଫଟ ହୋଇଯାଇଛି । ପ୍ରସନ୍ନ କହିଲେ- ଯଦି କାମ ନାହିଁ ତାହା ହେଲେ ଦରବାରକୁ ଆସିଲ କାହିଁକି । ସେହି ମହିଳା ଦୁଇଜଣ ପୁଣି ଖିଲିଖିଲି ହୋଇ ହସିଲେ । ସେମାନଙ୍କୁ ପ୍ରସନ୍ନ ଭଲ କରି ଚାହିଁଲେ । ଜଣଙ୍କର ରଙ୍ଗ ଗୋରା ଆଉ ଜଣଙ୍କର କଳା । ମାନେ ଜଣେ ଗୋରି ଆଉ ଜଣେ କାଳି । ପ୍ରସନ୍ନ ଉଭୟଙ୍କୁ କହିଲେ- ତମ ନାଁ କ'ଣ ମୁଁ ଜାଣିନାହିଁ । କିନ୍ତୁ ରଙ୍ଗକୁ ଦେଖି ମୁଁ ତମ ନାଁ ଦେଲି । ଯାହାର ରଙ୍ଗ ଗୋରା ସେ ଗୋରି ଆଉ ଯାହାର ରଙ୍ଗ କଳା ସେ କାଳି । ଏଥିର ତମର ମନ ଦୁଃଖ କରିବାର ଅଛି କି । ମହିଳା ଦୁଇଜଣ କହିଲେ- ଆପଣ ବାବା । ଆପଣ ମହାନ୍ । ଆପଣ ଯାହା ନାମ ଦେବେ ତାହା ଗ୍ରହଣ ହେବ ହିଁ ହେବ । ଆମେ ଆପଣଙ୍କ ନାମକରଣକୁ ଗ୍ରହଣ କଲୁ । ପ୍ରସନ୍ନ କହିଲେ- ହଉ, ତାହା ହେଲେ ଶୁଣ କାଳି-ଗୋରି । କୁହ କାହିଁକି

ଆସିଥିଲ । ଉଭୟେ କହିଲେ- ସେମାନଙ୍କର ଘର ହେଉଛି ଅନୁଗୁଳ । ବହୁଥର ଦରବାରକୁ ଆସି ଅନେକ କାମ ନେଲେଣି । ଯେଉଁ କାମ ପ୍ରସନ୍ନ ପାଟ୍ଟଶାଣୀଙ୍କ ଦ୍ୱାରା ହେଉଛି ତାହାକୁ ତାଙ୍କ ବିଧାୟକ କିମ୍ବା ସାଂସଦ କରିପାରୁନାହାନ୍ତି । ସେମାନେ ପ୍ରସନ୍ନ ପାଟ୍ଟଶାଣୀଙ୍କ ଋଣୀ ହୋଇଯାଇଛନ୍ତି । ଦୁଇଜଣଙ୍କର ଦୁଇଟି ଉତ୍ସବ ଅଛି । ସେଠାକୁ ନିମନ୍ତ୍ରଣ କରିବା ପାଇଁ ସେମାନେ ଆସିଛନ୍ତି । ପ୍ରସନ୍ନ କହିଲେ- କେଉଁ ସ୍ଥାନକୁ ଯିବାକୁ ପଡ଼ିବ । ସେମାନେ କହିଲେ- ଅନୁଗୁଳକୁ । ପ୍ରସନ୍ନ କହିଲେ- କହିପାରିବିନି ଯାଇ ହେବ କି ନାହିଁ । ସବୁବେଳେ ଡିମାଣ୍ଡ ରହୁଛି । ଏତେ ବାଟ ଯାଇ ହେବନାହିଁ । ସେମାନେ କହିଲେ- ଆମେ ଭାବିଛୁ ଆପଣଙ୍କର ଭୋଟର ହୋଇଯିବୁ ବୋଲି । ଆମର ଭୋଟରକାର୍ଡ଼ଟିକୁ ଆପଣଙ୍କୁ ଭୋଟ ଦେବା ପାଇଁ ବଦଳାଇ ଦିଅନ୍ତୁ । ମାନେ ଆମେ ଭୁବନେଶ୍ୱରର ଭୋଟର ହେବୁ । ପ୍ରସନ୍ନ କହିଲେ- ଏହା ଅସମ୍ଭବ । ଯାହାର ଘର ଯେଉଁଠି ଅଛି ସେ ସେଠାର ଭୋଟର ହେବ । ଭୋଟରକାର୍ଡ଼ ଟ୍ରାନ୍ସଫର ହୋଇପାରେନାହିଁ । ପ୍ରସନ୍ନଙ୍କର ଏହି କଥା ଶୁଣି ଉଭୟେ ଖିଲିଖିଲି ହୋଇ ହସିଲେ । ପ୍ରସନ୍ନ କହିଲେ- ଦରବାର ଚାଲିଛି । ତମେ ହସିଲେ ଅନ୍ୟମାନେ ହସିବେ । ତେଣୁ କାଳବିଳମ୍ବ ନକରି ତମେ ଏଠାରୁ ଚାଲିଯାଅ । ସେମାନେ ପ୍ରସନ୍ନଙ୍କୁ ନମସ୍କାର କଲେ । ପ୍ରସନ୍ନ କହିଲେ- ଠିକ୍ ଅଛି କାଲି-ପରି ଯେତେବେଳେ କାମ ପଡ଼ିବ ସେତେବେଳେ ଆସିବ । ଅଧମ, ମୂର୍ଖ ପାଟ୍ଟଶାଣୀର ଦରବାର ସମସ୍ତଙ୍କ ପାଇଁ ଖୋଲା ।

# ଭଗବାନ ବଡ଼ଲୋକ

ଏମିତି କହୁକହୁ ସେଦିନ ଭାବବିହ୍ୱଳ ହୋଇ ଅର୍ଥମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ କିଛି କହିଚାଲିଲେ । କେମିତି ସେ ତାଙ୍କର ସ୍ୱାସ୍ଥ୍ୟ ପ୍ରତି ଅବହେଳା କରିଛନ୍ତି ସେ ବିଷୟ ବଖାଣିଲେ । ବେଳେବେଳେ ସକାଳୁ ଉଠି ଚାଲିଲା ବେଳକୁ ପାଦ ତଳେ ଦେଇ ହୁଏନାହିଁ । ଭାରି କଷ୍ଟ ହୁଏ । ବିଧାନସଭା ଡାକ୍ତରଙ୍କୁ ଡାକି ସେ ପେନ୍‌କିଲର ଇଂଜେକ୍‌ସନ୍ ନିଅନ୍ତି । ସେତିକିରେ ସବୁ ଠିକ୍‌ଠାକ୍ ହୋଇଯାଏ । ଯଦି ସେତେବେଳଠାରୁ ସେ ସ୍ୱାସ୍ଥ୍ୟ ପ୍ରତି ଯତ୍ନ ନେଇଥା'ନ୍ତେ ତେବେ ତାଙ୍କର କିଡ୍‌ନୀ ପ୍ରତିରୋପଣ ହୋଇ ନଥା'ନ୍ତା । ଏମିତି ଆମେରିକାରେ ତାଙ୍କର କିଡ୍‌ନୀ ପ୍ରତିରୋପଣ ହେବାର ଥିଲା । ସେଠାରେ ଡାକ୍ତର ଥିବା ଜଣେ ମହିଳା ଯେ କି ତାଙ୍କର ଆତ୍ମୀୟ ଅଟନ୍ତି ସେ ଏହି କିଡ୍‌ନୀ ପ୍ରତିରୋପଣ ଦାୟିତ୍ୱ ନେଇଥିଲେ । କିନ୍ତୁ ହଠାତ୍ ସେ ଜଣାଇଲେ ଯେ, ଆମେରିକାରେ ତାଙ୍କର କିଡ୍‌ନୀ ପ୍ରତିରୋପଣ ହୋଇପାରିବ ନାହିଁ । ୫୦ରୁ ଅଧିକ ବର୍ଷ ହୋଇଗଲେ କିଡ୍‌ନୀ ପ୍ରତିରୋପଣ କରାଯିବା ପାଇଁ ଆମେରିକାରେ ଡାକ୍ତରମାନେ ରିସ୍କ ନିଅନ୍ତି ନାହିଁ । ଏହାପରେ ଘଡ଼ାଇ

ପଚାରିଥିଲେ- କେଉଁଠି କିଡ୍‌ନୀ ପ୍ରତିରୋପଣ ହେବ ବୋଲି । ସେ କହିଥିଲେ- ଏଥିପାଇଁ ସିଙ୍ଗାପୁର ହେଉଛି ସବୁଠାରୁ ଶ୍ରେଷ୍ଠ । ଏହାପରେ ପ୍ରଫୁଲ୍ଲ ମନସ୍ଥ କରିଥିଲେ କିଡ୍‌ନୀ ପ୍ରତିରୋପଣ ସିଙ୍ଗାପୁରରେ କରିବେ ବୋଲି । କିନ୍ତୁ ଭଗବାନ ତାଙ୍କୁ ଏମିତି ଜଣେ ବ୍ୟକ୍ତିଙ୍କୁ ଜୁଟାଇ ଦେଲେ ଯେ ସିଙ୍ଗାପୁରରେ କିଡ୍‌ନୀ ପ୍ରତିରୋପଣ କରିବାରେ ବାଟ ଦେଖାଇଥିଲେ । ଅବଶ୍ୟ ସିଙ୍ଗାପୁର ଯିବା ପୂର୍ବରୁ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କ ଅନୁମତି ନେଇଥିଲେ ପ୍ରଫୁଲ୍ଲ ଘଡ଼ାଇ । ନବୀନ ତାଙ୍କୁ ଯେଉଁ ଅଶ୍ୱାସନା ଦେଲେ ତାହା ସେ ସାରା ଜୀବନରେ କୌଣସି ନେତାଙ୍କ ଠାରୁ ପାଇନାହାନ୍ତି । ନବୀନ ତାଙ୍କୁ କହିଲେ- କିଛି ଭାବନାହିଁ । ଯେତେ ଶୀଘ୍ର ପାରୁଛ ଚିକିତ୍ସା ପାଇଁ ଚାଲିଯାଅ । ସୁସ୍ଥ ହୋଇ ଫେରିଆସ । ଏହା ହିଁ ପ୍ରଫୁଲ୍ଲଙ୍କ ମନୋବଳକୁ ବଢ଼ାଇ ଦେଇଥିଲା । ଏବେ ପ୍ରଫୁଲ୍ଲ ବେଳେବେଳେ ଭଗବାନ ବଡ଼ଲୋକ ବୋଲି କହୁଛନ୍ତି । ନହେଲେ ଆମେରିକାରେ କିଡ୍‌ନୀ ପ୍ରତିରୋପଣ କରିବାର ଥିବାବେଳେ ସିଙ୍ଗାପୁରରେ ସେ କରି ନଥା'ନ୍ତେ । ପୁଣି ନବୀନଙ୍କୁ ଦେଖା କଲାବେଳେ ସେ ଏଭଳି ଆଶ୍ୱାସନାବାଣୀ ଦେଇ ନଥା'ନ୍ତେ । ଭଗବାନଙ୍କର ବହୁ ପୂଜା ପ୍ରଫୁଲ୍ଲ କରିଛନ୍ତି । ପୁଣି ଦେବାଦେବୀ ପୀଠର ବିକାଶ ପାଇଁ ସେ ବହୁ ଉଦ୍ୟମ ବି କରିଛନ୍ତି । ଭଗବାନ ହିଁ ତାଙ୍କୁ କିଡ୍‌ନୀ ପ୍ରତ୍ୟାରୋପଣରେ ସହାୟକ ହୋଇଛନ୍ତି । ଯେଉଁଥିପାଇଁ ପ୍ରଫୁଲ୍ଲଙ୍କ ପାଟିରୁ ଆପେଆପେ ବାହାରି ଆସୁଛି ଭଗବାନ ବଡ଼ଲୋକ ବୋଲି ।

# ପ୍ୟାରୀଙ୍କ ଚେତାବନୀ

**ଯେ**ବେଠାରୁ ଦାମୋଦର ରାଉତ ମନ୍ତ୍ରିମଣ୍ଡଳରୁ ବାହାରି ଗଲେଣି ସେବେଠାରୁ ପ୍ୟାରୀଙ୍କ ବିରୋଧରେ କିଛି ବିଜେଡି ବିଧାୟକ ଭିତରେ ଭିତରେ ମେଳି ହେଉଥିବାର ଖବର ପଦାକୁ ଆସୁଛି । କିନ୍ତୁ ଅତୀତରେ ବିଜେଡିରୁ ଯେଉଁ ନେତାମାନେ ବାହାରି ଯାଇଛନ୍ତି ସେମାନେ ଯେ ଆଉ ଭୋଟ ରାଜନୀତିରେ ଖାତା ଖୋଲିପାରିନାହାନ୍ତି ତାହା ବୋଧହୁଏ ବିଜେଡିର ଏହି ବିଧାୟକମାନେ ଜାଣିପାରିନାହାନ୍ତି । ଏହାକୁ ଭଲ ଭାବେ ଜାଣିଛନ୍ତି ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ଏମିତି ତ ବିଜେଡିର ସାଂଗଠନିକ ବ୍ୟାପାର ସେ ବୁଝୁଛନ୍ତି । କିଏ ମନ୍ତ୍ରୀ ହେଲେ ଦଳ ପାଇଁ ଭଲ ଆଉ କିଏ ମନ୍ତ୍ରୀ ହେଲେ ଦଳ ପାଇଁ ଖରାପ ସେହି ଖବର ମଧ୍ୟ ସେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକଙ୍କୁ ଦେଉଛନ୍ତି । ଏମିତି କେତେକ ବିଧାୟକ ଭାବୁଛନ୍ତି ଯେ ପ୍ୟାରୀମୋହନଙ୍କୁ ବିରୋଧ କଲେ ମନ୍ତ୍ରୀ ହୋଇଯିବେ ବୋଲି । ଯେମିତି ଦାମୋଦର ରାଉତ ଭାବିଥିଲେ ପ୍ୟାରୀମୋହନଙ୍କୁ ବିରୋଧ କରି ସେ ନବୀନଙ୍କର ପ୍ରିୟ ହୋଇଯିବେ ବୋଲି । କିନ୍ତୁ ମନ୍ତ୍ରିମଣ୍ଡଳରୁ ବାହାରିଯିବା ପରେ ଦାମୋଦର ରାଉତ ଜାଣିଗଲେ ସେ ଠିକ୍ କରିଥିଲେ କି ଭୁଲ୍ କରିଥିଲେ । କିଛି ବିଜେଡି ବିଧାୟକ ଦଳର

ନୀତି, ନିୟମକୁ ମାନିବା ଅବସ୍ଥାରେ ନାହାନ୍ତି । ଏମିତି ବି ଥରକ ପାଇଁ ବିଧାୟକ ହୋଇ ମନ୍ତ୍ରୀ ହେବା ପାଇଁ ସେମାନେ ଗୋଡ଼ କାଢ଼ି ବସିଛନ୍ତି । ତେବେ ପ୍ୟାରୀମୋହନ ଯେ ଏ କ୍ଷେତ୍ରରେ ଚୁପ୍ ହୋଇରହିଛନ୍ତି ତାହା ନୁହେଁ । ସେ ମଧ୍ୟ ଖୋଲାଖୋଲି ଚେତାବନୀ ଦେଉଥିବାର ଦେଖାଗଲାଣି । ଏମିତି କେତେକ ବିଧାୟକଙ୍କୁ ସେ ଖୋଲାଖୋଲି କହିଲେଣି ଯେ କେହି ନିଜ ଭାବମୂର୍ତ୍ତିରେ ଜିତିନାହାନ୍ତି । ସବୁ ନବୀନ ପଟ୍ଟନାୟକଙ୍କ ସ୍ୱଚ୍ଛ ଓ ନିର୍ମଳ ଭାବମୂର୍ତ୍ତି ଯୋଗୁଁ ସମ୍ଭବ ହୋଇଛି । ତେଣୁ ବିଜେଡିର ଯେଉଁ ବିଧାୟକମାନେ ଦଳ ସହିତ ରହିବାକୁ ଚାହୁଁନାହାନ୍ତି ଆଉ ଦଳର ନେତାଙ୍କୁ ମାନିବା ଅବସ୍ଥାରେ ନାହାନ୍ତି ବରଂ ସେମାନେ ଦଳ ଛାଡ଼ି ଚାଲିଯିବା ଶ୍ରେୟସ୍କର ହେବ । ଏହା ସେମାନଙ୍କ ପାଇଁ ଓ ଦଳ ପାଇଁ ଉଭୟଙ୍କ ନିମନ୍ତେ ମଙ୍ଗଳ ହେବ । ଅବଶ୍ୟ ଏମିତି ପ୍ୟାରୀମୋହନଙ୍କୁ ପଚରାଯାଇନାହିଁ ଯେ ପରିସ୍ଥିତି ଯଦି କମ୍ବଳରୁ ବାଳ ବାଛିବା ପରି ହେବ ତେବେ କ'ଣ ହେବ । ଏଥିରେ ପ୍ୟାରୀମୋହନଙ୍କର ସ୍ପଷ୍ଟ ଉତ୍ତର ମଧ୍ୟ ରହିଥିଲା । ଅନିଚ୍ଛୁକ ଘୋଡ଼ାକୁ ନେଇ ଦୌଡ଼ ପ୍ରତିଯୋଗିତାରେ ସାମିଲ କଲେ ଘୋଡ଼ାଟି ପ୍ରଥମ ହୋଇପାରିବ ନାହିଁ । ବରଂ ସେ କ୍ଷେତ୍ରରେ ଘୋଡ଼ାକୁ ପ୍ରତିଯୋଗିତାକୁ ନେବା ଉଚିତ ନୁହେଁ । ସେହିଭଳି ଯେଉଁ ବିଜେଡି ବିଧାୟକଙ୍କୁ ଦଳ ଭଲ ଲାଗୁନାହିଁ କି ଦଳର ନୀତି ଓ ଆଦର୍ଶ ଭଲ ଲାଗୁନାହିଁ କି ଦଳର ନେତା ଭଲ ଲାଗୁନାହାନ୍ତି ବରଂ ସେମାନେ ଦଳ ଛାଡ଼ି ଚାଲିଯିବା ଉଚିତ । ବିଜେଡିର ସଂଖ୍ୟା ୧୦୩ । ଏହି ସଂଖ୍ୟା ୭୪ ତଳକୁ ନଖସିବା ପର୍ଯ୍ୟନ୍ତ ବିଜେଡିକୁ ସରକାର ଗଢ଼ିବା ପାଇଁ କୌଣସି ଅସୁବିଧା ହେବନାହିଁ । ଆଉ ଯେତେବେଳେ ସଂଖ୍ୟା ୭୪ ତଳକୁ ଖସିବ ସେତେବେଳେ ଗୋଟିଚାଳନା କରାଯିବ । କୌଣସି ପ୍ରକାରେ ନବୀନ ପଟ୍ଟନାୟକଙ୍କୁ ମୁଖ୍ୟମନ୍ତ୍ରୀରୁ ହଟିବାକୁ ଦିଆଯିବନାହିଁ ବୋଲି ଦୃଢ଼ ଭାବେ ଶୁଣାଉଛନ୍ତି ପ୍ୟାରୀମୋହନ । ତେବେ ପ୍ୟାରୀମୋହନ ଯେଉଁ ପ୍ରସଙ୍ଗ ଏଠାରେ ଉଠାଉଛନ୍ତି ତାହା ଉପରକୁ ହାଲ୍କା ହେଲେ ମଧ୍ୟ ଭିତରେ ବେଶ୍ ଗମ୍ଭୀର । ଯାହା ଜଣାପଡୁଛି ପ୍ୟାରୀମୋହନଙ୍କ ପାଖରେ ସୂଚନା ଅଛି ଯେ କିଛି ବିଧାୟକ ଦଳ ଭିତରେ ଥାଇ ଦଳକୁ ଭାଙ୍ଗିବା ପାଇଁ ଉଦ୍ୟମ କରୁଛନ୍ତି । ମାନେ ବିଜେଡି ଢୋଲ ଭିତରେ ବିଜେଡି ମୂଷା ଅଛନ୍ତି । ଅବଶ୍ୟ ଏଭଳି ମୂଷା କିଏ ତାହାର ତାଲିକା ମଧ୍ୟ ପ୍ୟାରୀମୋହନ ପ୍ରସ୍ତୁତ କରିସାରିବେଣି । କେବଳ ସମୟ ଓ ସୁବିଧାକୁ ଚାହିଁ ରହିଛନ୍ତି ପ୍ୟାରୀମୋହନ । ତେବେ ଏହା ସ୍ପଷ୍ଟ ଯେ ଆସନ୍ତା ନିର୍ବାଚନରେ ବିଜେଡିର ଯେଉଁ ୧୦୩ ଜଣ ବିଧାୟକ ଅଛନ୍ତି ସେମାନଙ୍କ ମଧ୍ୟରୁ ଅନେକ ମଧ୍ୟ ଟିକେଟ୍ ପାଇ ନପାରନ୍ତି । ଯେଉଁ ବିଧାୟକମାନଙ୍କ ଉପରେ ଦଳର ହାଇକମାଣ୍ଡମାନଙ୍କର ସନ୍ଦେହ ରହୁଛି ସେମାନେ ଯେ ନିର୍ବାଚନ ବେଳକୁ ଅନ୍ୟ ଦଳକୁ ଡେଇଁ ନଥିବେ ତାହା ବି କହି ହେବନାହିଁ । କିନ୍ତୁ ପ୍ୟାରୀମୋହନଙ୍କ ଗୋଟିଚାଳନା ୨୦୦୦, ୨୦୦୪ ଓ ୨୦୦୯ ମସିହାରେ ଯେଭଳି

ସଫଳ ହୋଇଛି ୨୦୧୪ ମସିହାରେ ସେଭଳି ସଫଳ ହେବ ବୋଲି ଏବେଠାରୁ ଏକ ଧାରଣା ସୃଷ୍ଟି ହେଲାଣି । ଦେଖାଯାଉ ବିଜେଡିରେ ଥିବା ଅସନ୍ତୁଷ୍ଟ ବିଧାୟକମାନଙ୍କର ପତାକୁ ପ୍ୟାରୀମୋହନ କାଟିବାରେ ସଫଳ ହେଉଛନ୍ତି କି ନାହିଁ ।

# ପାନ ଓ ଘଡ଼ାଇ

**କୁ**ହାଯାଏ ଯେଉଁ ବ୍ୟକ୍ତିମାନେ କ୍ରିଏଟିଭ୍ ସେମାନେ ପାନ ଖାଇଲେ କୁଆଡ଼େ ଭଲ ଭଲ ଭାବନା ଆସିଥାଏ । ତେବେ ନେତାମାନେ କ୍ରିଏଟିଭ୍ ନୁହନ୍ତି କିନ୍ତୁ ସେମାନଙ୍କ ମଧ୍ୟରୁ ଅଧିକାଂଶ ପାନୁଆ ଅଟନ୍ତି । ଏଭଳି ଜଣେ ପାନୁଆ ଥିଲେ ଅର୍ଥମନ୍ତ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇ । ଅବଶ୍ୟ ସିଙ୍ଗାପୁର ଯାଇ କିଡ୍‌ନୀ ପ୍ରତ୍ୟାରୋପଣ କରି ଭୁବନେଶ୍ୱର ଫେରିଆସିବା ପରେ ଆଉ ସେ ପାନ ପ୍ରାୟ ଖାଉନାହାନ୍ତି । ଏମିତି ସେଦିନ କହୁକହୁ ସେ କହିଦେଲେ କେମିତି ପାନ ପ୍ରେମରେ ପଡ଼ିଯାଇଥିଲେ ବୋଲି । ନିଶ ନଗଜଗୁଣ୍ଠ ପ୍ରଫୁଲ୍ଲ ହୋଇଯାଇଥିଲେ ୧୯୬୭ ମସିହାରେ ବିଧାୟକ । ମାନେ କଂଚା ବୟସରେ ସେ ରାଜନୀତିର ସ୍ୱାଦ ଚାଖିଥିଲେ । କିନ୍ତୁ ସେ ସେତେବେଳେ ପାନ ପ୍ରେମରେ ପଡ଼ି ନଥିଲେ । ୧୯୯୦ ମସିହାରେ ଯେତେବେଳେ ବିଜୁ ପଟ୍ଟନାୟକଙ୍କ ନେତୃତ୍ୱରେ ଜନତା ଦଳ ସରକାର ଗଢ଼ାଗଲା ସେତେବେଳେ ପ୍ରଫୁଲ୍ଲ ସୁକିନ୍ଦାର ଜନତା ଦଳ ବିଧାୟକ । ପରବର୍ତ୍ତୀ ସମୟରେ ସେ ମନ୍ତ୍ରୀ ହେଲେ । କିନ୍ତୁ ଜନତା ଦଳର ଅଧିକାଂଶ ବିଧାୟକ ସେତେବେଳେ ପାନୁଆ ଥିଲେ । ଏମିତି ନଳିନୀ ମହାନ୍ତି ହୁଅନ୍ତୁ କି ବିଜୟ ମହାପାତ୍ର ହୁଅନ୍ତୁ କି ଦାମୋଦର ରାଉତ ହୁଅନ୍ତୁ କି ମୁସ୍ତାଫିଜ ଅହମ୍ମଦ ହୁଅନ୍ତୁ ସେତେବେଳେ ସମସ୍ତେ ଥିଲେ ପାନୁଆ । ଅନେକ ନେତା ଆସନ୍ତି ପାନ ନିଜେ ଖାଆନ୍ତି ଆଉ ଗୋଟିଏ ପାନ ପ୍ରଫୁଲ୍ଲଙ୍କ ଆଡ଼କୁ ବଢ଼ାଇ ଦିଅନ୍ତି । ଏମିତି ମୁସ୍ତାଫିଜଙ୍କ ପାଖରେ ବସିଲେ ସେ ନିଜେ ପାନ ଖାଆନ୍ତି ଆଉ ପ୍ରଫୁଲ୍ଲଙ୍କୁ କଟିକିଆ ପାନଟେ ଖାଅ ବୋଲି କହି ପାନଟେ ବଢ଼ାଇ ଦିଅନ୍ତି । ପ୍ରଫୁଲ୍ଲ ତାହା କଡ଼ା ପାନ ହୋଇଥିବାରୁ ଖାଇବେ ନାହିଁ ବୋଲି ସିଧାସଳଖ କହନ୍ତି । କିନ୍ତୁ ମୁସ୍ତାଫିଜ ମୁଚୁକୁନ୍ଦି ହସ ହସି ପାନରୁ କଡ଼ା ଅଂଶ କାଢ଼ିଦେଇ ତାଙ୍କୁ ଖାଇବା ପାଇଁ ଦିଅନ୍ତି । ଆଉ କହନ୍ତି ଏଣିକି ଏହା ପୂରାପୂରି ସାଧା । ଯେମିତି ମାଂସ ତରକାରୀରୁ ମାଂସ କାଢ଼ିଦେଲେ ସେଥିରେ ଥିବା ଝୋଳ, ଆଳୁ ସାଧା ହୋଇଯିବ ସେହିପରି ପ୍ରଫୁଲ୍ଲଙ୍କ ପାଇଁ ମୁସ୍ତାଫିଜଙ୍କ କଡ଼ାପାନ ହୋଇଯାଇଥିଲା । ମାନେ ମାଂସ କଢ଼ା ଯାଇଥିଲେ ମଧ୍ୟ ଝୋଳ, ଆଳୁ ନିରାମିଷ ନୁହେଁ ଆମିଷ । ସେହିପରି ପାନରୁ କଡ଼ା ଅଂଶ କଢ଼ାଯାଇଥିଲେ ତାହା ସାଧା ନୁହେଁ କଡ଼ାପାନ । ପୁଣି ନଳିନୀ ମହାନ୍ତିଙ୍କ ପାଖକୁ ପ୍ରଫୁଲ୍ଲ ଯିବାବେଳେ ସେ କଡ଼ାପାନରୁ ଗୁଆ କାଢ଼ି ତାଙ୍କୁ ଦେଇଥା'ନ୍ତି । ଏମିତି କଡ଼ାପାନକୁ ସାଧାପାନ କରି ପ୍ରଫୁଲ୍ଲ ଖାଉଖାଉ

କ୍ରମେ କଡ଼ାପାନ ଖାଇବାକୁ ପସନ୍ଦ କଲେ । ଆଉ ପାନ ପ୍ରେମରେ ପଡ଼ିଗଲେ । ଦିନକୁ ଗୋଟିଏ କି ଦୁଇଟି କି ଦଶଟି ନୁହେଁ କେତେ ଯେ ପାନ ପ୍ରଫୁଲ୍ଲ ଖାଇଲେ ତାହାର ହିସାବ କେହି ରଖିପାରିଲେ ନାହିଁ । କିନ୍ତୁ ପ୍ରଫୁଲ୍ଲ ପ୍ରତିଜ୍ଞା କରିଥିଲେ ଯେ, ହାତରୁ ଖର୍ଚ୍ଚ କରି ପାନ ଖାଇବେ ନାହିଁ ବୋଲି । ତାଙ୍କର ଧାରଣା ଥିଲା ଯେ ହାତରୁ ଖର୍ଚ୍ଚ କରି ପାନ ଖାଇଲେ କୁଆଡ଼େ ପାନୁଆ ହୋଇଯିବ ବୋଲି । କିନ୍ତୁ ସକାଳୁ ରାତି ଅଧ ପର୍ଯ୍ୟନ୍ତ ପ୍ରଫୁଲ୍ଲଙ୍କ ପାଖକୁ ଯେଉଁ ଲୋକମାନେ ଆସନ୍ତି ସେମାନଙ୍କ ମଧ୍ୟରୁ ଅଧିକାଂଶ ପ୍ରଫୁଲ୍ଲଙ୍କ ପାଇଁ ପାନ ନେଇ ଆସିଥା'ନ୍ତି । ମାନେ ସବୁଦିନ ପ୍ରଫୁଲ୍ଲଙ୍କ ପାଖରେ ଏକାଧିକ ପାନ ପ୍ୟାକେଟ୍ ଥାଏ । ପ୍ରଫୁଲ୍ଲ କଥା ହେଉହେଉ ଗୋଟିଏ ଗୋଟିଏ ପାନ ପାଟିରେ ପକାନ୍ତି । ସମୟ ଆସିଲା ପାନ ନଖାଇଲେ ପ୍ରଫୁଲ୍ଲଙ୍କ ପାଟି ଖଟାଖଟା ଲାଗିଲା । ଅବଶ୍ୟ ପତ୍ନୀ ପ୍ରତିମା ଘଡ଼ାଇ ପ୍ରଫୁଲ୍ଲଙ୍କୁ ପାନ ଖାଇବା ପାଇଁ ଯେତେ ବାରଣ କଲେ ମଧ୍ୟ ପ୍ରଫୁଲ୍ଲ ତାହାକୁ ମାନନ୍ତି ନାହିଁ । ଏମିତି ବି ସମୟ ଆସିଛି ପାନ ବଦଳରେ ପ୍ରଫୁଲ୍ଲ ଟାବଲେଟ୍ ଚୁଚୁମନ୍ତି । କିନ୍ତୁ ପାନର ମଜା ଯିଏ ଥରେ ଚାଖିଛି ସେ ଆଉ ପାନକୁ ଛାଡ଼ିପାରିବ ନାହିଁ । ଏହା ହିଁ ଘଟିଛି ପ୍ରଫୁଲ୍ଲଙ୍କ କ୍ଷେତ୍ରରେ । ତେବେ କିଡ୍‌ନୀ ପ୍ରତ୍ୟାରୋପଣ ପରେ ପ୍ରଫୁଲ୍ଲ ପାନ ଛାଡ଼ି ଦେଇଛନ୍ତି । କିନ୍ତୁ ପାନ କଥା ପଡ଼ିଲା ବେଳକୁ ଯାହା ଜଣାପଡୁଛି ପ୍ରଫୁଲ୍ଲଙ୍କ ପାଟିରେ ଜିଭ ଏପଟସେପଟ ହେଉଛି । ଦେଖାଯାଉ କେତେଦିନ ପ୍ରଫୁଲ୍ଲ ପାନକୁ ଛାଡ଼ି ରହିପାରୁଛନ୍ତି ।

## ବାବା ନମସ୍କାର

ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟ୍ଟଶାଣୀ ସେଦିନ ଦରବାରରେ ବସିଥା'ନ୍ତି । ଦରବାର ଟିକିଏ ପତଳା ହୋଇଆସୁଥିବା ବେଳେ ଜଣେ ଖାକି ପୋଷାକ ପିନ୍ଧି ମହିଳାଟିଏ ଆସି ସେଠାରେ ପହଂଚିଲେ । ପୁଲିସ ଷ୍ଟାଇଲରେ ଗୋଡ଼କୁ ତଳେ କଚାଡ଼ି ଦେଇ ମହିଳା ଜଣଙ୍କ ପ୍ରସନ୍ନ ପାଟ୍ଟଶାଣୀଙ୍କୁ ସାଲ୍ୟୁଟ୍ ମାରିଲେ । ପ୍ରସନ୍ନ ତାଙ୍କୁ ଦେଖି ଟିକିଏ ହସି ଦେଲେ । ଏହାପରେ ଦରବାରରେ ଥିବା ଅନ୍ୟ ଲୋକଙ୍କ କଥା ଶୁଣିଲେ । ଖାକି ପୋଷାକ ପିନ୍ଧିଥିବା ମହିଳା ଜଣଙ୍କ ପ୍ରସନ୍ନଙ୍କ ପାଖକୁ ଆସି କହିଲେ- ବାବା ନମସ୍କାର । ମୋତେ ବୋଧହୁଏ ଆପଣ ଚିହ୍ନି ପାରୁନାହାନ୍ତି । ପ୍ରସନ୍ନ କହିଲେ- ମୋ ଦରବାରକୁ ଯିଏ ଥରେ ଆସେ ମୁଁ ତାକୁ ସବୁଦିନ ପାଇଁ ଚିହ୍ନିଥାଏ । ତା'ର ଚେହେରା ମୋ ମସ୍ତିଷ୍କରେ ରହିଯାଇଥାଏ । ମହିଳା ଜଣଙ୍କ କହିଲେ- ବାବା ମୁଁ ଆଗରୁ ଟ୍ରାଫିକ୍‌ରେ ଥିଲି । ଏବେ ନୂଆପଲ୍ଲୀ ଥାନାକୁ ଆସିଯାଇଛି । ପ୍ରସନ୍ନ କହିଲେ- ଆରେ ହଁ, ମନେପଡ଼ିଲା । ତମେ ଦୁଇଜଣ ଝିଅ ପୁଲିସ କନଷ୍ଟବଳ ଚାକିରି ପାଇଁ ମୋ ପାଖକୁ ଆସିଥିଲ । ମୁଁ ଫୋନ୍

କରି ତମ କଥା ଡିସିପିଙ୍କୁ କହିଦେଇଥିଲି । ସଙ୍ଗେସଙ୍ଗେ ମହିଳା ଜଣଙ୍କ କହିଲେ- ଆଜ୍ଞା, ଆପଣଙ୍କ ଫୋନ୍ ଯୋଗୁଁ ଆମେ ଦୁଇଜଣ ଚାକିରି ପାଇଯାଇଛୁ । ପ୍ରସନ୍ନ କହିଲେ- ମୋ ଫୋନ୍ କେବେ ବ୍ୟର୍ଥ ହୁଏନାହିଁ । ଯାହା ପାଇଁ ଯେତେବେଳେ ମୁଁ ଫୋନ୍ କରିଛି ସେହି କାର୍ଯ୍ୟ ହୋଇଯାଇଛି । ଆଉ ତମ ଚାକିରି କାହିଁକି ବା ହେବନାହିଁ । ଏମିତି ବହୁ ବଡ଼ବଡ଼ ଚାକିରି ମୁଁ ଫୋନ୍ କରିଦେବାରୁ ହୋଇଛି । ମହିଳା ଜଣଙ୍କ ହସୁଥା'ନ୍ତି । ସେ କହିଲେ- ବାବା, ଆପଣ ନଥିଲେ ଚାକିରି ହୋଇ ନଥା'ନ୍ତା । ପ୍ରସନ୍ନ କହିଲେ- ଚାକିରି ପାଇଁ ତମେ ଦୁଇଜଣ ମୋ ପାଖକୁ ଆସିଥିଲ । ତୁ ତ ଚାକିରି ପାଇଲା ପରେ ମୋ ପାଖକୁ ଆସିଲୁ । ଆର ଝିଅଟି ଗଲା କୁଆଡ଼େ । ମହିଳା ଜଣଙ୍କ କହିଲେ- ତା'ର ଟ୍ରାଫିକ୍‌ରେ ପୋଷ୍ଟିଂ ହୋଇଛି । ସମୟ ପାଇଲେ ଆସିବ । ଏହାପରେ ପ୍ରସନ୍ନ କହିଲେ- ତମ କାମ ହୋଇଗଲା । ସେତିକି ମୋ ପାଇଁ ଯଥେଷ୍ଟ । ମୋ ଦରବାରରେ ମହିଳାମାନେ ବେଶି ସମୟ ରହନ୍ତି ନାହିଁ । ମୁଁ ବାବାଜୀ ନହେଲେ ମଧ ମୋତେ ଲୋକମାନେ ବାବା କରିସାରିଲେଣି । ଦରବାରରେ ମହିଳା ଅଧିକ ସମୟ ରହିଲେ ଯଦି କେତେବେଳେ ମହିଳାଙ୍କ ସହିତ ଆଖି ମିଶିଯିବ ତେବେ ମୁଁ ବଦନାମ୍ ହୋଇଯିବି । ମୂଳରୁ ମାରିଲେ ଯିବ ସରି ପରି ମୁଁ କାମ କରୁଛି । ଦରବାରରେ ଅଧିକ ସମୟ ମହିଳା ନରହିଲେ ମୋର ବଦନାମ୍ ହେବାର ନାହିଁ । ତେଣୁ ତୋ'ର କାମ ହୋଇଯାଇଛି ତୁ ଯଥାଶୀଘ୍ର ପଳା । ମହିଳା ଜଣଙ୍କ କହିଲେ- ଆଉ ଛୋଟିଆ କାମଟିଏ ରହିଛି । ପ୍ରସନ୍ନ କହିଲେ- ତା' ହେଲେ କହ ତୁରନ୍ତ କରିଦେବା । ମହିଳା ଜଣଙ୍କ କହିଲେ- ଦରମା ଟିକିଏ ବଢ଼ାଇବା ପାଇଁ କହନ୍ତୁ । ପ୍ରସନ୍ନ କହିଲେ- କାହାକୁ କହିଲେ ହେବ କହ । ମହିଳା ଜଣଙ୍କ କହିଲେ- ଘରୋଇ ସଚିବଙ୍କୁ କୁହନ୍ତୁ । ପ୍ରସନ୍ନ କହିଲେ- ହଉ କହିଦେବା । ଆଉ ଯଦି କହିବୁ ତୋରି ଆଗରେ ଘରୋଇ ସଚିବଙ୍କୁ ଫୋନ୍ କରିଦେବି ଆଉ ତୋ' ନାଁ ମଧ କହିଦେବି । ଏତିକିରେ ମହିଳା ଜଣଙ୍କର ହସହସ ମୁହଁଟି ଶୁଖିଗଲା । ସେ କହିଲେ- ନାଇଁ ବାବା, ଏବେ କିଛି କହିବା ଦରକାର ନାହିଁ । ସୁବିଧା ଦେଖି କହିବେ । ମୁଁ ଯାଉଛି । ମହିଳା ଜଣଙ୍କ ଚାଲିଯିବା ପରେ ପ୍ରସନ୍ନ ହୋ ହୋ ହୋଇ ହସିଲେ । ଆଉ କହିଲେ- ମୁଁ ଜାଣେ କାହାକୁ କେମିତି ଔଷଧ ଦିଆଯିବ ବୋଲି । ଯଦି ସେହି ମହିଳା ଜଣଙ୍କୁ ମୁଁ ସଙ୍ଗେସଙ୍ଗେ ଘରୋଇ ସଚିବଙ୍କୁ ଫୋନ୍ କରୁଛି ଆଉ ସେ ଅଛି ବୋଲି କହି ନଥା'ନ୍ତି ତେବେ ସେ ଏଠାରୁ ଯାଇ ନଥା'ନ୍ତା । ରାଜନୀତି କଲେ ସବୁବେଳେ ମହିଳାଙ୍କ ଠାରୁ ଦୂରରେ ରହିବ । ଆଉ ଯଦି ମହିଳା ବଦନାମ୍ ଲାଗିଗଲା ତା' ହେଲେ ଜାଣ ବାର ବର୍ଷର ତପସ୍ୟା ଶୁଖୁଆ ପୋଡ଼ାରେ ଗଲା ବୋଲି । ମାନିବାକୁ ପଡ଼ିବ ପ୍ରସନ୍ନଙ୍କ ବୁଦ୍ଧିକୁ ।

# ଧନେଶ୍ୱର ଓ ପିତୃଋଣ

ଧନେଶ୍ୱର ମାଝୀ ହେଉଛନ୍ତି ପୂର୍ବତନ ରାଜ୍ୟସଭା ସାଂସଦ ଓ ପୂର୍ବତନ ବିଧାୟକ । ସେ ୧୯୭୧ ଓ ୧୯୭୪ ମସିହାରେ ନର୍ଲାରୁ ସ୍ୱତନ୍ତ୍ର ଦଳରୁ ଟିକେଟ୍ ପାଇ ନିର୍ବାଚିତ ହୋଇଥିଲେ । ୨୦୦୦ ଓ ୨୦୦୪ ମସିହାରେ କେସିଙ୍ଗାରୁ ବିଜେପିରୁ ଟିକେଟ୍ ପାଇ ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ୧୯୭୮ ମସିହାରେ ସେ ରାଜ୍ୟସଭା ସଦସ୍ୟ ହୋଇଥିଲେ । ମାନେ ୪ ଥର ବିଧାୟକ ଆଉ ଥରେ ରାଜ୍ୟସଭା ସଭ୍ୟ । ଧନେଶ୍ୱରଙ୍କୁ ଜଣେ ବରିଷ୍ଠ ନେତା ବୋଲି ଗଣନା କରାଯାଏ । ୨୦୦୯ ମସିହା ନିର୍ବାଚନ ପୂର୍ବରୁ ସାନନ୍ଦ ମାରାଣ୍ଡି ଓ ଧନେଶ୍ୱର ମାଝୀ ବିଜେପିରୁ ଇସ୍ତଫା ଦେଇ ବିଜେଡିରେ ମିଶିଥିଲେ । ସାନନ୍ଦ ବିଜେଡି ଟିକେଟ୍‌ରେ ବାରିପଦାରୁ ଲଢ଼ି ନିର୍ବାଚିତ ହୋଇଥିଲେ । କିନ୍ତୁ ଧନେଶ୍ୱରଙ୍କୁ ଥଇଥାନ କରାଯାଇପାରିଲା ନାହିଁ । ତାଙ୍କୁ ପ୍ରସ୍ତାବ ଦିଆଯାଇଥିଲା ଯେ କଳାହାଣ୍ଡି ଲୋକସଭା ଆସନରୁ ସ୍ୱାଧୀନ ଭାବେ ଲଢ଼ିବା ପାଇଁ । ଆଉ ଭିତରେ ଭିତରେ ତାଙ୍କୁ ବିଜେଡି ସମର୍ଥନ ଦେବ । ଏହା ଶେଷ ମୁହୂର୍ତ୍ତର ନିଷ୍ପତ୍ତି ହୋଇଥିବାରୁ ଧନେଶ୍ୱର ୨୦୦୯ ମସିହା ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ଚାହିଁଲେ ନାହିଁ । ଧନେଶ୍ୱରଙ୍କର ଶିକ୍ଷାଗତ ଯୋଗ୍ୟତା ହେଉଛି ବି.ଏ., ବି.ଇଡି. । ତାଙ୍କୁ ତାଙ୍କ ବାପା ଅମର ମାଝୀ ପାଠ ପଢ଼ାଇଥିବାରୁ ତାହାକୁ ସେ ପିତୃଋଣ ବୋଲି ସବୁବେଳେ କହନ୍ତି । ପିତୃଋଣ ଶୁଝିବା ପାଇଁ ବାପାଙ୍କୁ ଆଖି ଆଗରେ ରଖି ତାଙ୍କ ଅଂଚଳରେ କଲେଜଟିଏ କରିବାକୁ ସେ ଚାହିଁଲେ । ଏଥିପାଇଁ ଆବଶ୍ୟକ ହେଲା ୧୨ ଲକ୍ଷ ଟଙ୍କା । କୁଆଡୁ ଏତେ ଟଙ୍କା ଆସିବ ବୋଲି ଭାବନା ହୋଇଗଲା ଧନେଶ୍ୱରଙ୍କର । ଏମିତି ଧନେଶ୍ୱରଙ୍କ ପତ୍ନୀ ତିଳୋତମା ମାଝୀ ତାଙ୍କୁ କୁଆଡ଼େ ପ୍ରସ୍ତାବ ଦେଇଥିଲେ ଯେ ସେମାନଙ୍କର ପୁଅ, ଝିଅ ନଥିବାରୁ ତାଙ୍କ ପାଖରେ ଯାହା କିଛି ଗହଣା ଅଛି ତାକୁ ବିକି ଦେଇ କଲେଜ କରାଯାଉ । ପତ୍ନୀଙ୍କ ପ୍ରସ୍ତାବ ଅନୁଯାୟୀ ଗହଣାକୁ ବିକିଦେଲେ ଧନେଶ୍ୱର । ଏହାସତ୍ୱେ ଆହୁରି ୮ ଲକ୍ଷ ଟଙ୍କା ନିଅଂଟ ପଡ଼ିଲା । ପୁଣି ଚିନ୍ତାରେ ପଡ଼ିଲେ ଧନେଶ୍ୱର । ଯାହାକିଛି ଚାଷ ଜମି ଅଛି ତାହାକୁ ବିକି ଦେବା ପାଇଁ ଚାହିଁଲେ ଉଭୟ ଧନେଶ୍ୱର ଓ ତାଙ୍କ ପତ୍ନୀ ତିଳୋତମା । କିନ୍ତୁ ସତେ ଯେମିତି ଭଗବାନ ବଡ଼ଲୋକ । ପୂର୍ବତନ ରାଜ୍ୟସଭା ସଭ୍ୟ ଭାବେ କିଛି ବକେୟା ପ୍ରାପ୍ୟ ପାଇବାର ଥିଲା ଧନେଶ୍ୱରଙ୍କର । ଏହି ସମୟରେ ସେହି ପ୍ରାପ୍ୟ ତାଙ୍କୁ ମିଳିଗଲା । ଜମି ବିକା ନିଶାରୁ ଦୂରେଇ ଗଲେ ଧନେଶ୍ୱର ଆଉ ମିଳିଥିବା ସେହି ବକେୟା ପ୍ରାପ୍ୟକୁ କଲେଜ ପାଇଁ ସେ ଦେଇଦେଲେ । ଏହାପରେ କଲେଜ ପ୍ରତିଷ୍ଠା ହେଲା ଏବଂ କଲେଜ ବି ସ୍ୱୀକୃତି ପାଇଲା । କଲେଜ ପ୍ରତିଷ୍ଠା ହେବାପରେ ଧନେଶ୍ୱରଙ୍କୁ ବେଶ୍ ଆତ୍ମସନ୍ତୋଷ ମିଳିଛି । ସେ କହନ୍ତି- ଜୀବନରେ କେବେ ଗ୍ରାଜୁଏଟ୍ ହେବେ ବୋଲି ଭାବି ନଥିଲେ । ପୁଣି ଦୁଇଟିରେ ସେ ଗ୍ରାଜୁଏଟ୍ । ଏହା ତାଙ୍କ ବାପାଙ୍କ

ଯୋଗୁ ହୋଇଥିଲା । ଶିକ୍ଷା ପ୍ରତି ବାପାଙ୍କର ଅବଦାନ ଥିବାରୁ ତାଙ୍କରି ନାମରେ ସେ କଲେଜ ପ୍ରତିଷ୍ଠା କଲେ । ଏହା ହିଁ ତାଙ୍କ ପାଇଁ ପିତୃଋଣ ଶୁଝିବା ପରି ହୋଇଛି । ଯେଉଁ ପୁଅ ପିତୃଋଣ ଶୁଝିବା ନିମନ୍ତେ ଉଦ୍ୟମ କରେ ତା'ଠାରୁ ଖୁସି ବ୍ୟକ୍ତି ଆଉ କେହି ନଥିବେ । ଧନେଶ୍ୱରଙ୍କର ପିତୃଋଣ ଶୁଝିବା ପ୍ରସଙ୍ଗ ଓ କଲେଜ ପ୍ରତିଷ୍ଠାକୁ ନେଇ ଅନେକ ସମୟରେ ଚର୍ଚ୍ଚା ବି ହୁଏ । ତେବେ ଯୋଗ୍ୟ ବାପାଙ୍କର ଯୋଗ୍ୟ ସନ୍ତାନ ହେଉଛନ୍ତି ଧନେଶ୍ୱର । ନହେଲେ ପିତୃଋଣ ଶୁଝିବା ପାଇଁ ସେ କଲେଜଟିଏ କରି ନଥା'ନ୍ତେ । ଦେଖାଯାଉ ଧନେଶ୍ୱରଙ୍କର ପିତୃଋଣ ଶୁଝିବା ପ୍ରସଙ୍ଗ ଅନ୍ୟ ରାଜନେତାଙ୍କ ଉପରେ ପ୍ରଭାବ ପକାଇ ପାରୁଛି କି ନାହିଁ ।

# ମନମୋହନଙ୍କ କଅଁଳ ହାତ

ପ୍ରଧାନମନ୍ତ୍ରୀ ମନମୋହନ ସିଂହଙ୍କ ହାତ କଅଁଳ କି ଟାଣ ତାହା ଯିଏ ମନମୋହନଙ୍କ ହାତକୁ ଧରିଥିବ ସିଏ ଜାଣିପାରିବ । ଯଦି ଏହି ପ୍ରସଙ୍ଗ ଆସିବ ତେବେ ମନମୋହନ ସିଂହଙ୍କ ପତ୍ନୀ ପ୍ରଥମେ ଜାଣିବେ ମନମୋହନଙ୍କ ହାତ କଅଁଳ କି ଟାଣ । କିନ୍ତୁ କୃଷିମନ୍ତ୍ରୀ ପ୍ରଦୀପ ମହାରଥୀ ସେଦିନ କହୁକହୁ କହିଦେଲେ ଯେ, ପ୍ରଧାମନ୍ତ୍ରୀ ମନମୋହନ ସିଂହଙ୍କ ହାତ ସହିତ ସେ ଯେତେବେଳେ ହାତ ମିଳାଇଲେ ସେତେବେଳେ ସେ ଆଶ୍ଚର୍ଯ୍ୟ ହୋଇଗଲେ । ତାଙ୍କର ଏକ ଧାରଣା ଥିଲା ଯେ ମନମୋହନ ସିଂହ ରିଜର୍ଭ ବ୍ୟାଙ୍କର ଗଭର୍ଣ୍ଣର ଥିବାରୁ ଟଙ୍କା ଗଣିଥିବେ । ଆଉ ଟଙ୍କା ଗଣିଗଣି ତାଙ୍କ ହାତର ଚମଡ଼ା ଟାଣ ହୋଇଯାଇଥିବ ବୋଲି । ପୁଣି ଏକ ଧାରଣା ଥିଲା ଯେ ଅର୍ଥମନ୍ତ୍ରୀ ଆଉ ପ୍ରଧାନମନ୍ତ୍ରୀ ହୋଇଥିବାରୁ ସେ ବହୁ ଫାଇଲ କାମ କରିଥିବେ । ଯେଉଁଥିପାଇଁ ତାଙ୍କ ହାତ ପାପୁଲିର ଚମଡ଼ା ପୂରାପୂରି ଟାଣ ହୋଇଯାଇଥିବ ବୋଲି । କିନ୍ତୁ ଯେତେବେଳେ କୃଷି କମଣ ପୁରସ୍କାର ଭାରତ ସରକାରଙ୍କ ପକ୍ଷରୁ ଦିଲ୍ଲୀରେ ଓଡ଼ିଶା ସରକାରଙ୍କୁ ଦିଆଗଲା ଆଉ ଏହି ପୁରସ୍କାରକୁ ଓଡ଼ିଶାର କୃଷିମନ୍ତ୍ରୀ ଭାବେ ଗ୍ରହଣ କରିବା ପାଇଁ ପ୍ରଦୀପ ମହାରଥୀ ଉପସ୍ଥିତ ରହି ମନମୋହନଙ୍କ ଠାରୁ ପୁରସ୍କାର ନେଲେ ସେହି ସମୟରେ ସେ ମନମୋହନଙ୍କ ସହିତ ହାତ ମିଳାଇଲେ । ମନମୋହନଙ୍କ ହାତଟି କେମିତି ଲାଗିଲା ବୋଲି କେହି ଜଣେ ଜାଣିବାକୁ ଚାହିଁବାରୁ ପ୍ରଦୀପ ମହାରଥୀ ଜିଭ କାମୁଡ଼ି ଦେଇ କହିଲେ- ବାପରେ ବାପ କି କଅଁଳ ହାତ । ସେହି ହାତକୁ ଧରିଦେବା ପରେ ସେ ଭାବିଲେ ପୁରୁଷ ନୁହେଁ କେଉଁ ମହିଳାଙ୍କର ହାତ ଧରି ଦେଇଛନ୍ତି ବୋଲି । ପୁଣି ମନମୋହନଙ୍କ ହାତ ତାଙ୍କ ପରି ବଡ଼ ନୁହେଁ । ତାଙ୍କ ପାପୁଲି ଭିତରେ ମନମୋହନଙ୍କ ହାତ ପାପୁଲିଟି ଲୁଚି ଯାଇଥିଲା । ଏମିତି କଅଁଳିଆ ହାତ ଥିବା ବ୍ୟକ୍ତି ପ୍ରଧାନମନ୍ତ୍ରୀ ହେଲେ ତାଙ୍କୁ ହାତ ମିଳାଇବାକୁ ବହୁ ବ୍ୟକ୍ତି ଆଗ୍ରହ ପ୍ରକାଶ କରିବେ । ଅବଶ୍ୟ ପ୍ରଦୀପ ମହାରଥୀ

ଏହି ପ୍ରସଙ୍ଗ କହିବା ବେଳକୁ ତାଙ୍କ ହାତରେ ଥିଲା କେନ୍ଦ୍ର ସରକାରଙ୍କର ସମ୍ମାନ । ଗୋଟିଏ ହାତରେ ମାନପତ୍ର ଆଉ ଆର ହାତରେ ଟ୍ରଫି । ଟ୍ରଫିଟି ବେଶ୍ ଭାରି ଲାଗୁଥିଲା । ପ୍ରଦୀପ ମହାରଥୀ କହିଲେ- ଟ୍ରଫିଟି ଛୋଟିଆ ନୁହେଁ । ଟ୍ରଫି ଉପରେ କାଚ ପରି ଯେଉଁ ଜିନିଷ ରଖାଯାଇଛି ତାହା କାଚ ନୁହେଁ । ତାହା ହେଉଛି ହୀରା । ଯାହା ହେଉ ଟ୍ରଫିଟି ଆଣିବାକୁ ଦିଲ୍ଲୀ ଯାଇଥିବାରୁ ସେ ହୀରାକୁ ଦେଖିପାରିଲେ । ପ୍ରଦୀପ ମହାରଥୀଙ୍କର ଏହି ଟ୍ରଫି ସମ୍ପର୍କରେ ବଖାଣିବା ମଧ୍ୟ ଶେଷ ହୋଇ ନଥିଲା । ସେ ତାଙ୍କ ପାଖରେ ଥିବା ଏକ ଡ୍ରାଫ୍ଟକୁ ଦେଖାଇଲେ । ତାହା ପୁଣି ଲାମିନେସନ୍ ହୋଇଥିଲା । ସେଥିରେ ଦୁଇକୋଟି ଟଙ୍କା ଲେଖା ଯାଇଥିଲା । ପ୍ରଦୀପ ମହାରଥୀ ସେହି ଡ୍ରାଫ୍ଟକୁ ବିଭିନ୍ନ ମନ୍ତ୍ରୀଙ୍କୁ ଦେଖାଇ ସେଥିରେ ଟିକିଏ ହାତ ମାରିଦିଅନ୍ତୁ ବୋଲି ମଧ୍ୟ କହୁଥିଲେ । ଏଥିପାଇଁ ସବୁ ଶ୍ରେୟ ଇନ୍ଦ୍ରଙ୍କୁ ଯିବ ବୋଲି ପ୍ରଦୀପ ମହାରଥୀ କହୁଥିବା ବେଳେ କେତେକ ମଧ୍ୟ ହସିବାରେ ଲାଗିଲେ । ସେତେବେଳେ ପ୍ରଦୀପ ମହାରଥୀ କହିଲେ- ଏହା ମୋ ପାଟିର କଥା ନୁହେଁ । ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କ କଥା । କୃଷିମନ୍ତ୍ରୀଙ୍କ ପାଇଁ ଇନ୍ଦ୍ର ଦେବତା ହେଉଛନ୍ତି ସବୁକିଛି ବୋଲି ପ୍ୟାରୀମୋହନ କହିଥିବା ସମ୍ପର୍କରେ ସେ ସୂଚାଇ ଦେବାପରେ ଆଉ ସେହି ହସ ହୋଇ ନଥିଲା । ତେବେ ସବୁ ଚର୍ଚ୍ଚା ଭିତରେ ମନମୋହନ ସିଂହଙ୍କ କଅଁଳ ହାତ ଚର୍ଚ୍ଚା ହିଁ ସମସ୍ତଙ୍କ ମନକୁ ବେଶ୍ ପାଇଥିଲା ।

# ପ୍ରେମ ଓ ପ୍ରସନ୍ନ ପାଟଶାଣୀ

ଏମିତି ପ୍ରସନ୍ନ ପାଟଶାଣୀ ହେଉଛନ୍ତି ଭୁବନେଶ୍ୱର ସାଂସଦ । ୧୯୮୦ ମସିହାରେ ସେ କଂଗ୍ରେସ ଟିକେଟ୍‌ରେ ଖୋର୍ଦ୍ଧାରୁ ବିଧାୟକ ହୋଇଥିଲେ । ସେତେବେଳେ ରାଜନୀତି ଅପେକ୍ଷା ସେ ସାହିତ୍ୟକୁ ଅଧିକ ଗୁରୁତ୍ୱ ଦେଉଥିଲେ । ଯେଉଁଥିପାଇଁ ଜାନକୀ ବଲ୍ଲଭ ପଟ୍ଟନାୟକଙ୍କ ସରକାରରେ ତାଙ୍କର ଆଦର ବଢ଼ିଯାଇଥିଲା । ୧୯୮୫ ମସିହାରେ ତାଙ୍କୁ କଂଗ୍ରେସରୁ ଟିକେଟ୍ ମିଳିଲା ନାହିଁ । ଜାନକୀ ବଲ୍ଲଭ ପଟ୍ଟନାୟକ ଦୁଇଟି ଆସନରୁ ବିଜୟୀ ହେବାପରେ ଖୋର୍ଦ୍ଧାକୁ ଛାଡ଼ି ଦେବାରୁ ଉପନିର୍ବାଚନର ଆବଶ୍ୟକ ହେଲା । ଏଥିରେ ପ୍ରସନ୍ନ ସ୍ୱାଧୀନ ପ୍ରାର୍ଥୀ ହେଲେ ଆଉ ଜିତିଲେ । ୪ ଥର ସାଂସଦ ଆଉ ୪ ଥର ବିଧାୟକ ହୋଇଥିବା ଏବଂ ଅପରାଜୟ ନେତା ହୋଇଥିବା ପ୍ରସନ୍ନଙ୍କୁ ଯେ ସାହିତ୍ୟ ଛାଡ଼ି ଦେଇଛି ତାହା ନୁହେଁ । ସେ ବି ସାହିତ୍ୟକୁ ଛାଡ଼ିନାହାନ୍ତି । ଅନେକ ସ୍ଥାନରେ ଭାଷଣ ଦେବା ବେଳକୁ ସେ ଆଶୁକବି ହୋଇଯାଆନ୍ତି । ଏମିତି କବିଙ୍କ ମନରେ ସବୁବେଳେ ପ୍ରେମ ଭାବନା ଥାଏ । ଅନେକ ମଧ୍ୟ କହନ୍ତି- କବି ଜଣେ ପ୍ରେମିକ ବୋଲି । ଅବଶ୍ୟ ପ୍ରସନ୍ନଙ୍କ ବୟସ ଆଉ ଚେହେରାକୁ ଦେଖିଦେଲେ ସେ ଯେ ଏ ବୟସରେ ପ୍ରେମ କରୁଥିବେ ତାହା କେହି ଭାବିବେ

ନାହିଁ । କିନ୍ତୁ ସେଦିନ ଜଣେ ମହିଳା ତାଙ୍କୁ ଫୋନ୍ କଲେ । ଫୋନ୍‌ରେ ସେହି ମହିଳା ଜଣଙ୍କ କହିଲେ- ତାଙ୍କ ଝିଅ କେଉଁଠି ଅଛି କହନ୍ତୁ । ପ୍ରସନ୍ନ ଏଥିରେ ଆଶ୍ଚର୍ଯ୍ୟ ହୋଇଗଲେ । ସେ ପଚାରିଲେ- ଏହା ସେ କେମିତି କହିବେ । ସେ କ'ଣ ସୃଷ୍ଟି କର୍ତା । ମହିଳା ଜଣଙ୍କ କହିଲେ- ତାଙ୍କ ଝିଅକୁ କଲେଜରେ ଆଡ୍‌ମିଶନ କରାଇ ଦେବା ପାଇଁ ପ୍ରସନ୍ନ ପାଟ୍ଟଶାଣୀ ଫୋନ୍ କରିବା ପରେ ତା'ର ଆଡ୍‌ମିଶନ ହୋଇଥିଲା । ଏହା ପରଠାରୁ ତାଙ୍କ ଝିଅ ସବୁଦିନ ପ୍ରସନ୍ନ ପାଟ୍ଟଶାଣୀଙ୍କ ପାଖକୁ ଯାଉଛି ବୋଲି କହି ଘରୁ ବାହାରି ଯାଉଛି । ତେଣୁ ପ୍ରସନ୍ନ ପାଟ୍ଟଶାଣୀ ତାଙ୍କ ଝିଅଙ୍କ କଥା ଜାଣିଥିବେ ବୋଲି ସେ ଭାବୁଛନ୍ତି । ପ୍ରସନ୍ନ କହିଲେ- ଝିଅଟିର ବୟସ ଯାହା ସେଥିରେ ସେ ତାଙ୍କୁ ପ୍ରେମ କରିବ ନାହିଁ । ବୋଧହୁଏ ଝିଅଟି କେଉଁ ଯୁବକର ପ୍ରେମରେ ପଡ଼ିଯାଇଛି । ତାଙ୍କ ନାମ କହି ସେ ଯୁବକଟିକୁ ପ୍ରେମ କରୁଛି । ଏହା କିନ୍ତୁ ତାଙ୍କୁ ଭଲ ଲାଗୁନାହିଁ । ନାମ ନେବ ତାଙ୍କର ଆଉ ତାଙ୍କୁ ପ୍ରେମ ନକରି ଆଉ ଜଣଙ୍କୁ ପ୍ରେମ କରିବ ଏହା ଯେକୌଣସି ପୁରୁଷ ଲୋକଙ୍କୁ ଖରାପ ଲାଗିବ ହିଁ ଲାଗିବ । ଅବଶ୍ୟ ପ୍ରସନ୍ନ ସେହି ଝିଅର ମା'ଙ୍କୁ ପ୍ରସ୍ତାବ ଦେଲେ ଯେ ଯଦି ଝିଅଟି ପ୍ରେମରେ ପଡ଼ିଯାଇଛି ଆଉ ଯେଉଁ ପୁଅକୁ ସେ ପ୍ରେମ କରୁଛି ତା' ସହିତ ତାହାର ବିବାହ କରିଦିଅନ୍ତୁ ବୋଲି । କିନ୍ତୁ ଏଥିପ୍ରତି ଝିଅର ମା' ଗୁରୁତ୍ୱ ଦେଲେନାହିଁ । ସେ କହିଲେ- ଆପଣ ହିଁ ଜାଣିଛନ୍ତି ତାଙ୍କ ଝିଅ କେଉଁଠି ଅଛି ବୋଲି । ଏହାପରେ ପ୍ରସନ୍ନ କହିଲେ- ଯଦି ପ୍ରେମ କରୁଥିବ ତେବେ ଭୁବନେଶ୍ୱରରେ ଥିବା ପାର୍କରେ ଖୋଜିଲେ ତାଙ୍କ ଝିଅ ଓ ପ୍ରେମିକ ମିଳିଯିବେ । ଯେହେତୁ ଆପଣଙ୍କ ଘର ପାଖରେ ଫରେଷ୍ଟ ପାର୍କ ଅଛି ତେଣୁ ସେଠାକୁ ଯାଇ ଖୋଜିଲେ ତାଙ୍କ ଝିଅ ମିଳିଯାଇପାରେ । ଏହାପରେ ଝିଅଙ୍କ ଘର ପକ୍ଷରୁ ଫରେଷ୍ଟ ପାର୍କରେ ଖୋଜାଗଲା ଆଉ ସେଠାରେ ସେ ଝିଅ ଏବଂ ପ୍ରେମ କରୁଥିବା ପୁଅକୁ ସେମାନେ ପାଇଲେ । କୁଆଡ଼େ ସେହି ପୁଅ ଉପରେ ଝିଅ ପରିବାର ପକ୍ଷରୁ ଗାଳିମାଡ଼ ହେଲା । ଘଟଣା ସମ୍ପର୍କରେ ଝିଅର ମା' ପ୍ରସନ୍ନଙ୍କୁ ଜଣାଇଲେ । ପ୍ରସନ୍ନ କହିଲେ- ଯେତେବେଳଠାରୁ ସେ ତାଙ୍କ ଝିଅଙ୍କ କଥା ଜାଣିଲେ ସେତେବେଳ ଠାରୁ ତାଙ୍କର ମନ ଦୁଃଖ ହୋଇଛି । ତାଙ୍କ ନାମ ନେଇ ଝିଅଟି ଅନ୍ୟ ଜଣେ ଯୁବକକୁ ପ୍ରେମ କରୁଛି । ଜଣେ କବି ହିସାବରେ ସେ ଏହାକୁ ଭଲରେ ଗ୍ରହଣ କରିପାରୁନାହାନ୍ତି । ତେବେ ଏତିକି ପରାମର୍ଶ ଦେବେ ଯେ ପୁଅଟି ସହିତ ଝିଅର ବାହାଘର କରିଦିଅନ୍ତୁ ବୋଲି । ଏହି ପ୍ରସ୍ତାବରେ ଝିଅର ମା' ରାଜି ହେଲେନାହିଁ । ସେ କହିଲେ- ଆଜିକାଲିର ଯୁବକ ସେ । ସେ କେବଳ ତାଙ୍କ ଝିଅକୁ ଭଲ ପାଉନାହିଁ । ଏମିତି ଅନେକ ଝିଅଙ୍କୁ ସେ ଭଲ ପାଉଛି । ସେ ଜଣେ ଭ୍ରଷ୍ଟ ଯୁବକ । ତେଣୁ ତା' ସହିତ ତାଙ୍କ ଝିଅର ବାହାଘର ହେବନାହିଁ । ଆପଣଙ୍କ ଦରବାରକୁ ତାଙ୍କୁ ପଠାଇ ଦେଉଛି ଆଉ ଆପଣ ତାଙ୍କୁ ଟିକିଏ ବୁଝାଇ ଦେବେ । ପ୍ରସନ୍ନ କହିଲେ- ସେ ତ କାହାକୁ ମନା କରିପାରନ୍ତି ନାହିଁ ।

କିନ୍ତୁ ଏଥର ଯଦି ତାଙ୍କ ନାମ ନେଇ ତାଙ୍କ ଝିଅ ଅନ୍ୟ କାହାକୁ ପ୍ରେମ କରେ ତେବେ ସେଥିପାଇଁ ସେ ଦାୟୀ ରହିବେ ନାହିଁ । ପ୍ରସନ୍ନଙ୍କ ଦରବାର ସେତେବେଳେ ବେଶ୍ ଭିଡ଼ ଥିଲା । ଫୋନ୍‌ରେ ଏହି ଶେଷ ବାକ୍ୟଟି କହିବା ବେଳକୁ ଦରବାରଟି ହସରେ ଉଚ୍ଛୁଳି ପଡ଼ିଥିଲା ।

# ସାରଦାଙ୍କ ମାଳି

**ରା**ଉରକେଲାର ଯୁବରାଜ ବୋଲି ଯଦି କାହାକୁ କୁହାଯାଏ ତେବେ ସେ ହେଲେ ନଗର ଉନ୍ନୟନ ଓ ଗୃହ ନିର୍ମାଣ ମନ୍ତ୍ରୀ ସାରଦା ନାୟକ । ଏମିତି ସାରଦା ପ୍ରଥମେ ଖାଦ୍ୟ, ଯୋଗାଣ ଓ ଖାଉଟି କଲ୍ୟାଣ ମନ୍ତ୍ରୀ ଥିଲେ । ମନ୍ତ୍ରିମଣ୍ଡଳ ଅଦଳବଦଳ ହେବାପରେ ସାରଦାଙ୍କ ଠାରୁ ଏହି ବିଭାଗ ଚାଲିଯାଇ ମିଳିଲା ନଗର ଉନ୍ନୟନ ଓ ଗୃହନିର୍ମାଣ ବିଭାଗ । ତେବେ ଏହି ବିଭାଗ ପାଇ ସାରଦା ପୂର୍ବ ଅପେକ୍ଷା ବେଶ୍ ଖୁସି ଥିବାର ଜଣାପଡୁଛି । ସାରଦାଙ୍କ ତାଙ୍କ ବେକରେ ଦୁଇଟି ମାଳି ପକାଇଛନ୍ତି । କାହିଁକି ମାଳି ପକାଇଛନ୍ତି ବୋଲି ସାରଦାଙ୍କୁ ପଚରାଗଲେ ତାହାର ଉତର ସେ ବେଶ୍ ସ୍ୱଭାବସୁଲଭ ଢଙ୍ଗରେ ଦେଉଛନ୍ତି । ଶିବ ମନ୍ଦିରର ଜଣେ ପୂଜକ ତାଙ୍କୁ ପଦ୍ମଫୁଲ ପୁଷ୍କରରେ ତିଆରି ହୋଇଥିବା ଏକ ମାଳି ଦେଲେ । ଆଉ ତାହାକୁ ପିନ୍ଧିବା ପାଇଁ କହିଲେ । ସାରଦା ସେହିଦିନ ଠାରୁ ସେହି ପଦ୍ମଫୁଲ ପୁଷ୍କର ମାଳି ପିନ୍ଧୁଛନ୍ତି । ତେବେ ଅନ୍ୟ ମାଳି ପରି ଏହି ମାଳି ନୁହେଁ । ପାଣି ପଡ଼ିଲେ ପୁଷ୍କର ନଷ୍ଟ ହୋଇଯିବାର ଥିବାରୁ ଗାଧୋଇବା ବେଳେ ସାରଦା ଏହାକୁ ବାହାର କରି ରଖିଦିଅନ୍ତି । ସେହିପରି ସାରଦା ଆଉ ଏକ ମାଳି ପିନ୍ଧିଛନ୍ତି । ତାହାକୁ ଦେଖିଲେ ଜଣାପଡ଼ିବ ଯେ, ତାହା ରୁଦ୍ରାକ୍ଷ ବୋଲି । ଏହି ମାଳିଟି ଭୁବନେଶ୍ୱରର ବସ୍ତିରେ ରହୁଥିବା ଜଣେ ମହିଳା ତାଙ୍କୁ ଦେଇଛନ୍ତି । ଅନୁରୋଧ ରକ୍ଷା କରି ସେ ଏହି ମାଳି ପିନ୍ଧୁଛନ୍ତି । ତେବେ ଏଭଳି ମାଳି ପିନ୍ଧିବା ଦ୍ୱାରା ସାରଦାଙ୍କର କିଛି ଉପକାର ହେଉଛି କି ନାହିଁ ତାହା ସାରଦା ଜାଣନ୍ତି ନାହିଁ । କିନ୍ତୁ ମାଳି ପିନ୍ଧିଲେ ମନରେ ଏକ ସାହସ ଭାବନା ଆସୁଛି । ମାନେ ଅଦମ୍ୟକୁ ଜୟ କରିପାରିବେ ବୋଲି ମଧ ଅନେକ ସମୟରେ ସେ ଭାବନ୍ତି । ଏହା କେବଳ ମାଳି ପିନ୍ଧିବା ଯୋଗୁଁ ହେଉଛି ବୋଲି ସାରଦାଙ୍କର ଏକ ଧାରଣା । ଦେଖାଯାଉ ମାଳି ପିନ୍ଧି ସାରଦା ସୁନ୍ଦରଗଡ଼ ରାଜନୀତିରେ କେତେ ଉପରକୁ ଉଠିପାରୁଛନ୍ତି ।

# ରଘୁଙ୍କ ଖୋଲା ଜୀବନ

**ଏ**ମିତି ରଘୁନାଥ ମହାନ୍ତି ତାଙ୍କ ଜୀବନକୁ ଖୋଲା ଜୀବନ ବୋଲି କହନ୍ତି । ମାନେ ତାଙ୍କର କିଛି ଲୁଚାଇବାର ନାହିଁ । ଏହାର ଜ୍ୱଳନ୍ତ ଉଦାହରଣ ସେ ଦିଅନ୍ତି ସଚିବାଳୟରେ

ଥିବା ତାଙ୍କ ପ୍ରକୋଷ୍ଠକୁ । ସବୁ ମନ୍ତ୍ରୀଙ୍କ ପ୍ରକୋଷ୍ଠ ପରି ତାଙ୍କ ପ୍ରକୋଷ୍ଠଟି ମଧ୍ୟ ଶୀତତାପ ନିୟନ୍ତ୍ରଣ ପ୍ରକୋଷ୍ଠ । କିନ୍ତୁ ରଘୁ ଯେତେବେଳେ ତାଙ୍କ ସଚିବାଳୟ ପ୍ରକୋଷ୍ଠରେ ବସିଥା'ନ୍ତି ସେତେବେଳେ ଅଧିକାଂଶ ସମୟ ତାଙ୍କର ଶୀତତାପ ନିୟନ୍ତ୍ରଣ ଯନ୍ତ୍ରଟି ଲାଗେନାହିଁ । ମାନେ ରଘୁ ବିନା ଏସି ମନ୍ତ୍ରୀ । ସଚିବାଳୟ ପ୍ରକୋଷ୍ଠରେ ବସିବା ମାତ୍ରେ ରଘୁ ସଙ୍ଗେସଙ୍ଗେ ନିର୍ଦ୍ଦେଶ ଦିଅନ୍ତି ଯେ ଝରକାଗୁଡ଼ିକ ଖୋଲିଦିଆଯିବା ପାଇଁ । ରଘୁଙ୍କର ମତ ହେଲା - ସେ ଗ୍ରାମାଂଚଳରୁ ଆସିଛନ୍ତି । ରାଜନୀତିର ତଳସ୍ତର ବୋଲି କୁହାଯାଉଥିବା ସରପଂଚରୁ ତାଙ୍କର ରାଜନୈତିକ ଜୀବନ ଆରମ୍ଭ । ୧୯୯୦ ମସିହାରୁ ଏଯାବତ୍ ସେ ବସ୍ତା ନିର୍ବାଚନମଣ୍ଡଳୀରୁ ବିଜୟୀ ହୋଇଆସୁଛନ୍ତି । ମାନେ କ୍ରମାଗତ ଭାବେ ସେ ୫ ଥର ବିଧାୟକ ହେଲେଣି । ପ୍ରାକୃତିକ ପରିବେଶ ହିଁ ତାଙ୍କୁ ସବୁବେଳେ ଭଲ ଲାଗେ । ସଚିବାଳୟରେ ତାଙ୍କୁ ଯେଉଁ ମନ୍ତ୍ରୀ ପ୍ରକୋଷ୍ଠଟି ମିଳିଛି ସେଠାରେ ଝରକା ଖୋଲିଦେଲେ ପ୍ରାକୃତିକ ଦୃଶ୍ୟ ଦେଖିହେବ । ଗଛ ସାଙ୍ଗକୁ କୋଠାଘର ଆଉ ଯଦି ବର୍ଷା ହେଉଥିବ ତେବେ ପରିବେଶ ଓ ଦୃଶ୍ୟ ନିଆରା । ସତେ ଯେମିତି ରଘୁ କବି ପ୍ରକୃତିର ବ୍ୟକ୍ତି । କିନ୍ତୁ କବିତା ସେ ଲେଖନ୍ତି ନାହିଁ । ରଘୁ ନିଜ ସମ୍ପର୍କରେ କହନ୍ତି ଯେ ଶୀତତାପ ନିୟନ୍ତ୍ରଣ ପ୍ରକୋଷ୍ଠରେ ବସି କାମ କରିବାରେ ଆଗ୍ରହ ଯେତିକି ଆସିବ ତା' ଠାରୁ ଅଧିକ ଆଗ୍ରହ ଆସିବ ପ୍ରାକୃତିକ ପରିବେଶ ମଧ୍ୟରେ । ଯେଉଁଥିପାଇଁ ସେ ଝରକା ଖୋଲି ଖୋଲା ପବନର ମଜା ଉଠାନ୍ତି । ଯେଉଁ ବ୍ୟକ୍ତି ଖୋଲା ପବନର ମଜା ଉଠାନ୍ତି ସେ ଜଣେ ଖୋଲାବ୍ୟକ୍ତି ଅଟନ୍ତି । ଆଉ ତାଙ୍କର ଜୀବନ ହୋଇଯାଏ ଖୋଲା । ଅବଶ୍ୟ ରଘୁଙ୍କୁ ଏ ଦିଗରେ ମାନିବାକୁ ପଡ଼ିବ । ନହେଲେ ଖଣି, ଇସ୍ପାତ, ଶିଳ୍ପ, ସଂସଦୀୟ ବ୍ୟାପାର ପରି ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ ହୋଇ ସେ ବିନା ଟେନ୍‌ସନ୍‌ରେ କାମ କରୁ ନଥା'ନ୍ତେ । ସବୁ କୁଆଡ଼େ ଏହି ଖୋଲା ପବନର କରାମତି । ଦେଖାଯାଉ ରଘୁଙ୍କୁ ଖୋଲା ପବନ ରାଜନୀତିରେ କେତେ ଉପରକୁ ନେଉଛି । ଆଉ ତାଙ୍କର ଖୋଲା ଜୀବନର ପ୍ରଭାବ ଅନ୍ୟ ନେତାଙ୍କ ଉପରେ ପକାଇ ପାରୁଛି କି ନାହିଁ ।

# ନବୀନଙ୍କ ଲୌହସାର

ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ସବୁ ଦିଗରେ ପାରଙ୍ଗମ ହୋଇଗଲେଣି । ରାଜନୀତିକୁ ଆସିବା ପୂର୍ବରୁ ସେ ଥିଲେ ଜଣେ ଲେଖକ । ରାଜନୀତିକୁ ଆସିବା ପରେ ସେ ହୋଇଗଲେ ବିଜୁ ଜନତା ଦଳର ସଭାପତି ଆଉ ପରବର୍ତ୍ତୀ ସମୟରେ କେନ୍ଦ୍ରମନ୍ତ୍ରୀ । ୨୦୦୦ ମସିହାରୁ କ୍ରମାଗତ ଭାବେ ସେ ତିନିଥର ମୁଖ୍ୟମନ୍ତ୍ରୀ ହେଲେଣି । ତେବେ ଏତେସବୁ ଯୋଗ୍ୟତା ମଧ୍ୟରେ ନବୀନ ପଟ୍ଟନାୟକଙ୍କର ଯେ ଡାକ୍ତର ଯୋଗ୍ୟତା ଯୋଡ଼ି

ହୋଇଗଲାଣି ତାହା ବୋଧହୁଏ ଅନେକ ଜାଣି ନଥିବେ । ଏମିତି ନବୀନ ଡାକ୍ତରୀ ଶିକ୍ଷା ଲାଭ କରିନାହାନ୍ତି । କିନ୍ତୁ ଜଣେ ମଣିଷ ପାଇଁ କି ଚିକିତ୍ସା ଦରକାର, କେଉଁ ଖାଦ୍ୟ ଖାଇଲେ ସେ ନିରୋଗ ହେବ ସେ ସମ୍ପର୍କରେ ନବୀନ ସତେ ଯେମିତି ଦକ୍ଷ ହୋଇଗଲେଣି । ସେଦିନ ନବୀନ ପଟ୍ଟନାୟକଙ୍କୁ ସାକ୍ଷାତ କରିବା ପାଇଁ କୃଷିମନ୍ତ୍ରୀ ପ୍ରଦୀପ ମହାରଥୀ ତାଙ୍କ ପାଖକୁ ଯାଇଥିଲେ । ଏମିତି ମନ୍ତ୍ରୀ ନହେବା ପୂର୍ବରୁ ପ୍ରଦୀପ ମହାରଥୀ ଯେତେବେଳେ ନବୀନଙ୍କ ପାଖକୁ ଯାଆନ୍ତି ସେତେବେଳେ ଉଭୟଙ୍କ ମଧ୍ୟରେ ବେଶ୍ ହାଲ୍କା ମନ୍ତବ୍ୟ ଆଦାନପ୍ରଦାନ ହୋଇଥାଏ । କିନ୍ତୁ ମନ୍ତ୍ରୀ ହୋଇ ପ୍ରଦୀପ ମହାରଥୀ ଯେତେବେଳେ ନବୀନଙ୍କ ପାଖକୁ ଗଲେ ସେତେବେଳେ ସବୁକିଛିର ବ୍ୟତିକ୍ରମ ସେ ଅନୁଭବ କଲେ । ମାନେ ମୁଖ୍ୟମନ୍ତ୍ରୀ ଭାବେ ନବୀନ ନିର୍ଦ୍ଦେଶ ଦେବାକୁ ଲାଗିଲେ ପ୍ରଦୀପ ମହାରଥୀଙ୍କୁ । ଅବିଭକ୍ତ କୋରାପୁଟ ଜିଲା ଗସ୍ତ କରିବାକୁ ପ୍ରଦୀପଙ୍କୁ ନବୀନ ନିର୍ଦ୍ଦେଶ ଦେଲେ । ଆଉ ଏ ଗସ୍ତର ଉଦ୍ଦେଶ୍ୟ କ'ଣ ତାହା ମଧ୍ୟ ସେ ଭଲ ଭାବେ ପ୍ରଦୀପଙ୍କୁ ବୁଝାଇ ଦେଲେ । ନବୀନ କହିଲେ- ଅବିଭକ୍ତ କୋରାପୁଟ ଜିଲାରେ ଥିବା ଲୋକମାନଙ୍କ ଠାରେ ଲୌହସାର କମିଯାଉଛି । ଏହା କମିଗଲେ ଲୋକଙ୍କ ପାଇଁ ବିପଦ ହୋଇଯିବ । କୃଷିମନ୍ତ୍ରୀ ଭାବେ ସେ ଅବିଭକ୍ତ କୋରାପୁଟ ଜିଲାକୁ ତୁରନ୍ତ ଗସ୍ତ କରନ୍ତୁ । ଲୌହସାର ଥିବା ଫଳ ଯେପରି ସେଠାକାର ଅଧିବାସୀମାନେ ପାଇପାରିବେ ସେ ଦିଗରେ ସେ ପଦକ୍ଷେପ ନିଅନ୍ତୁ । ନବୀନ ଏତିକି କହିଦେଇ ଯେ ଚୁପ୍ ରହିଲେ ତାହା ନୁହେଁ । ନବୀନ କହିଲେ- ଅବିଭକ୍ତ କୋରାପୁଟ ଜିଲାରେ ଯେପରି କମଳା, ଲେମ୍ବୁ ପରି ଫଳ ଚାଷ ହେବ ସେ ଦିଗରେ ପଦକ୍ଷେପ ନେବାର ଆବଶ୍ୟକତା ଅଛି । ଲୌହସାର ଶରୀର ପାଇଁ ନିହାତି ଆବଶ୍ୟକ । ନବୀନଙ୍କ ପାଖରୁ ଚାଲିଆସିବା ପରେ ପ୍ରଦୀପ ମହାରଥୀ ବିଭାଗର ସଚିବ, ନିର୍ଦ୍ଦେଶକ ଓ ଅନ୍ୟ ଉଚ୍ଚ କର୍ମକର୍ତ୍ତାଙ୍କୁ ଅବିଭକ୍ତ କୋରାପୁଟ ଜିଲା ଗସ୍ତରେ ଯିବା ପାଇଁ କାର୍ଯ୍ୟକ୍ରମ ଖସଡ଼ା ପ୍ରସ୍ତୁତ କରିବା ନିମନ୍ତେ ନିର୍ଦ୍ଦେଶ ଦେଲେ । ମାନିବାକୁ ପଡ଼ିବ ନବୀନଙ୍କୁ । ରାଜନୀତିକୁ ପ୍ରବେଶ କରିବା ବେଳେ ତାଙ୍କୁ ବହୁ ବଡ଼ବଡ଼ ନେତା ଟାହୁଲଟାପରା କରୁଥିଲେ । ଏବେ ସେ ହ୍ୱାଟ୍ ନଟ୍ । ମାନେ ସବୁ ବିଭାଗ ଉପରେ କ୍ରମେ ସେ ଦକ୍ଷତା ହାସଲ କରିସାରିଲେଣି । ନହେଲେ କେଉଁ ଜିଲାରେ ଲୋକମାନଙ୍କୁ କେଉଁ ଭିଟାମିନ୍ ଅଭାବ ରହୁଛି ତାହା ସେ ଜାଣିପାରନ୍ତେ ନାହିଁ । ଏବେ ଯେଉଁ ମନ୍ତ୍ରୀ ନବୀନଙ୍କ ପାଖକୁ ଯାଉଛନ୍ତି ନବୀନ ସେହି ମନ୍ତ୍ରୀଙ୍କୁ ମିଳିଥିବା ବିଭାଗ ଉପରେ ବଖାଣୁଛନ୍ତି । ସତେ ଯେମିତି ନବୀନ ମୁଖ୍ୟମନ୍ତ୍ରୀ ନୁହନ୍ତି ଏକ ଜ୍ଞାନପୀଠ ।

# ବ୍ୟାଣ୍ଡପାର୍ଟି ଓ ପ୍ରସନ୍ନ

ପ୍ରସନ୍ନ ପାଟଶାଣୀ ଲୋକସଭା ସାଂସଦ ହୋଇ ବ୍ୟାଣ୍ଡପାର୍ଟିର ଚୌକିରେ ବସିବେ ଓ ଗୀତ ବୋଲିବେ ଏହା କେହି ସପ୍ନରେ ସୁଦ୍ଧା ଭାବିପାରିବେ ନାହିଁ । କିନ୍ତୁ ଏହା ହିଁ ଘଟିଛି । ପ୍ରସନ୍ନ ପାଟଶାଣୀଙ୍କ ବାସଭବନ ହେଉଛି ଭୁବନେଶ୍ୱର ସ୍ଥିତ ନୂଆପଲ୍ଲୀର କଲ୍ୟାଣମଣ୍ଡପ ନିକଟରେ । ସେଠାରେ ବାର ମାସରେ ତେର ପର୍ବ ପରି ବାହାଘର ଚାଲିଥାଏ । ଅନେକ ବ୍ୟାଣ୍ଡପାର୍ଟି ପ୍ରସନ୍ନ ପାଟଶାଣୀଙ୍କ ଘର ସମ୍ମୁଖରୁ ବାହାରିଥା'ନ୍ତି । ସେଦିନ ପ୍ରସନ୍ନ ଘରୁ ବାହାରିଲେ ସଭାକୁ ଯିବା ପାଇଁ । ସେ ବସିଥିବା ଗାଡ଼ିଟି ରାସ୍ତାକୁ ଆସିବା ବେଳକୁ ବାହାଘର ପ୍ରସେସନ୍ ଚାଲିଥାଏ । ମଦ୍ୟପାନ କରି କିଛି ଯୁବକ ରାସ୍ତାରେ ନାଚି ଚାଲିଥା'ନ୍ତି । ହଠାତ୍ କେହି ଜଣେ ପ୍ରସନ୍ନଙ୍କ ଗାଡ଼ି ପାଖକୁ ଆସି କହିଲେ- ବାବା ନମସ୍କାର । ପ୍ରସେସନ୍ ଚାଲିଛି । ରାସ୍ତା ଜାମ୍ । ଆପଣ ଗାଡ଼ି ଭିତରୁ ବାହାରକୁ ଚାଲିଆସନ୍ତୁ । ଚାଲିଚାଲି ପ୍ରସେସନ୍‌କୁ ଅତିକ୍ରମ କରିଯାଆନ୍ତୁ ଆଉ ଗାଡ଼ିଟି ମଧ ତା' ବାଟରେ ଆଗକୁ ଚାଲିଯିବ । ଏହା ଶୁଣି ପ୍ରସନ୍ନ ଗାଡ଼ି ଭିତରୁ ବାହାରକୁ ଚାଲିଆସିଲେ । ଏହି ସମୟରେ ବ୍ୟାଣ୍ଡପାର୍ଟି ଆଡ଼କୁ ସେ ଯୁବକ ଜଣଙ୍କ ଚାଲିଗଲେ । ସେତେବେଳେ ପ୍ରସନ୍ନ ପାଟଶାଣୀ ବ୍ୟାଣ୍ଡପାର୍ଟିରେ ଗୀତ ବୋଲୁଥିବା ଯୁବତୀଙ୍କ ପାଖାପାଖି ହେଲେଣି । ଏକ ଟ୍ରଲିରେ ସିଂହାସନ ଚୌକି ରଖାଯାଇଥାଏ । ସେହି ସିଂହାସନ ଚୌକିରେ ଯୁବତୀଟି ବସି ଗୀତ ବୋଲୁଥା'ନ୍ତି । ହଠାତ୍ କିଛି ଯୁବକ ସେଠାକୁ ଯାଇ ଗୀତ ବୋଲୁଥିବା ଯୁବତୀ ଜଣଙ୍କୁ କହିଲେ- ବାବାଙ୍କ ଗୀତ ବୋଲ । ଯୁବତୀ ଜଣଙ୍କ ମୁଣ୍ଡ ଟୁଙ୍ଗାରୀ ଗୀତ ବୋଲିଲେ । କିନ୍ତୁ ତାହା ପ୍ରସନ୍ନ ପାଟଶାଣୀଙ୍କ ଗୀତ ନଥିଲା । ଯୁବକମାନେ ପ୍ରସନ୍ନ ପାଟଶାଣୀଙ୍କୁ ପଚାରିଲେ- ତାଙ୍କର ସେହି ଗୀତ କି ନାହିଁ ବୋଲି । ପ୍ରସନ୍ନ ମନା କଲେ । ଏହାପରେ ଯୁବକମାନେ ପୁଣି ସେହି ଯୁବତୀକୁ କହିଲେ- ବାବାଙ୍କ ଗୀତ ବୋଲ ବୋଲି । ଯୁବତୀ ଜଣଙ୍କ ଆଉ ଏକ ଗୀତ ବୋଲିଲେ । କିନ୍ତୁ ତାହା ପ୍ରସନ୍ନ ପାଟଶାଣୀଙ୍କ ଗୀତ ନଥିଲା । ଏହାପରେ ଯୁବକମାନେ ଯୁବତୀ ଜଣଙ୍କୁ ସେହି ସିଂହାସନ ଚୌକିରୁ ଓହ୍ଲାଇ ଦେଲେ । ସେତେବେଳେ ଯୁବତୀ ଜଣଙ୍କ ପ୍ରସନ୍ନ ପାଟଶାଣୀଙ୍କୁ କହିଲେ- ଆଜ୍ଞା ମୁଁ ଯେଉଁ ଗୀତ ବୋଲିବି ତାହା ଆପଣଙ୍କ ଗୀତ ବୋଲି କହିବେ । ନହେଲେ ଏମାନେ ରଖେଇ ଦେବେନି । ପ୍ରସନ୍ନ କିଛି କହିବା ପୂର୍ବରୁ ଯୁବକମାନେ ତାଙ୍କୁ ଟ୍ରଲି ଉପରେ ଥୁଆ ହୋଇଥିବା ସିଂହାସନ ଚୌକି ଉପରେ ବସାଇ ଦେଲେ ଆଉ ହାତକୁ ମାଇକ୍ରୋଫୋନ୍ ବଢ଼ାଇ ଦେଇ କହିଲେ- ଗୀତ ବୋଲନ୍ତୁ । ସେତେବେଳକୁ ସଭା ସମୟ ହୋଇଗଲାଣି । ସଭାରେ କେମିତି ଶୀଘ୍ର ପହଂଚିବେ ପ୍ରସନ୍ନ ସେହି ଚିନ୍ତାରେ ଆଉଟୁପାଉଟୁ ହେଉଥିଲେ । ଯୁବକମାନେ ଯେତେବେଳେ ତାଙ୍କୁ ଗୀତ ବୋଲିବା ପାଇଁ କହିଲେ- ସଙ୍ଗେସଙ୍ଗେ ପ୍ରସନ୍ନ ଗୀତ ବୋଲିବା ଆରମ୍ଭ କରିଦେଲେ ।

ପ୍ରସନ୍ନ ସ୍ୱର ଦେଇ ଗୀତ ବୋଲିଲେ-
ଆମେ ସବୁ ବଡ଼ ହେଉଥିଲୁ,
ବାପା ମାଆଙ୍କୁ ମୁଣ୍ଡିଆ ମାରି ।
ଆଜିକା ପିଲାମାନେ ବଡ଼ ହେଉଛନ୍ତି,
ବାପା ମାଆଙ୍କୁ ଗୋଇଠା ମାରି ।

ପ୍ରସନ୍ନଙ୍କର ଏହି ଦୁଇପଦ ଗୀତ ସହିତ ମ୍ୟୁଜିକ୍ ବି ବାଜିଲା । ସେଥିରେ ଯୁବକମାନେ ଖୁସି ହୋଇଗଲେ । ପ୍ରସନ୍ନ ବ୍ୟାଣ୍ଡପାର୍ଟିର ସିଂହାସନ ଚୌକିରୁ ତଳକୁ ଓହ୍ଲାଇ ଆଗକୁ ଚାଲିଲେ । ଆଗରେ ଥିଲା ତାଙ୍କର ଗାଡ଼ି । ଆଉ ପଛକୁ ନଚାହିଁ ସେ ସିଧାସଳଖ ଚାଲିଲେ ସଭାସ୍ଥଳକୁ । ମାନିବାକୁ ପଡ଼ିବ ପ୍ରସନ୍ନଙ୍କ ତୁରନ୍ତ ବୁଦ୍ଧିକୁ । ଯଦି ସେଦିନ ସେ ଗୀତ ବୋଲି ନଥା'ନ୍ତେ ତେବେ ସେମିତି ବହୁ ସମୟ ଧରି ସିଂହାସନ ଚୌକିରେ ବସି ରହିଥା'ନ୍ତେ ଆଉ ସେପଟେ ସଭାକାର୍ଯ୍ୟ ଶେଷ ହୋଇଯାଇଥା'ନ୍ତା ।

# ରଘୁଙ୍କ ସେଭିଂ

ଏ ହେଲେ ରଘୁନାଥ ମହାନ୍ତି । ୧୯୯୦ ମସିହାରୁ ଏଯାବତ୍ ବସ୍ତାରୁ କ୍ରମାଗତ ଭାବେ ୫ ଥର ନିର୍ବାଚିତ ହେଲେଣି । ମାନେ ଅପରାଜୟ ନେତା । ତେବେ ରଘୁ କାହିଁକି ଅପରାଜୟ ନେତା ହୋଇଛନ୍ତି ସେ ନେଇ ସେଦିନ ସଚିବାଳୟରେ ଏକ ଚର୍ଚ୍ଚା ଚାଲିଥିଲା । ରଘୁ କୁଆଡ଼େ ସବୁଦିନ ସେଭିଂ ହୁଅନ୍ତି । ମାନେ ନିଶ, ଦାଢ଼ି ସବୁଦିନ କାଟନ୍ତି । କିନ୍ତୁ ସପ୍ତାହର ଗୋଟିଏ ଦିନ ସେ ସେଭିଂ ହୁଅନ୍ତି ନାହିଁ । ସେହି ଦିନଟି ହେଲା ରବିବାର । ରବିବାରଟିକୁ ଅନେକ ହିନ୍ଦୁ ବେଶ୍ ପାଳନ କରିଥା'ନ୍ତି । ଏହା ସୂର୍ଯ୍ୟଙ୍କ ବାର ହୋଇଥିବାରୁ ଅନେକ ଏହିଦିନ ସୂର୍ଯ୍ୟଙ୍କୁ ପୂଜା କରନ୍ତି । ସୂର୍ଯ୍ୟ ହେଉଛନ୍ତି ସକଳ ଶକ୍ତିର ଆଧାର । ଆଉ ଯିଏ ସୂର୍ଯ୍ୟ ପୂଜା ଭଲ ଭାବେ କରିବ ସେ ହିଁ ବେଶ୍ ଶକ୍ତିମାନ ହୋଇପାରିବ । ଯେଉଁମାନେ ସୂର୍ଯ୍ୟ ପୂଜା କରନ୍ତି ସେମାନେ ରବିବାର ଦିନ ଦାଢ଼ି କାଟନ୍ତି ନାହିଁ । ପୁଣି ରବିବାର ଦିନ ମଧ୍ୟ ଆମିଷ ଖାଆନ୍ତି ନାହିଁ । ଅନେକ ଭାବନ୍ତି ଯେ ରଘୁ ରାଜନୀତିରେ ଶକ୍ତିଶାଳୀ ହେବା ପାଇଁ ବୋଧହୁଏ ରବିବାରରେ ସୂର୍ଯ୍ୟ ଉପବାସ କରନ୍ତି ବୋଲି । ଯେଉଁଥିପାଇଁ ସେ ରବିବାର ଦିନ ଦାଢ଼ି କାଟନ୍ତି ନାହିଁ । ଏହାକୁ ମଧ୍ୟ ଅନେକ ବିଶ୍ୱାସ କରନ୍ତି । କିନ୍ତୁ ସେଦିନ କହୁକହୁ ରଘୁ ଗୁମର ଫିଟାଇ ଦେଲେ । ସେ କହିଲେ- ଯଦିଓ ସେ ଠାକୁର ବିଶ୍ୱାସୀ କିନ୍ତୁ ସେମିତି ସେ ଠାକୁର ପୂଜା କରନ୍ତି ନାହିଁ । ତାଙ୍କର ପତ୍ନୀ ପ୍ରୀତିଲତା ମହାନ୍ତି ଠାକୁର ପୂଜା କରନ୍ତି । ଏମିତି କି ଘଂଟାଏ କି ଦୁଇଘଂଟା ନୁହେଁ ଅଧିକ ସମୟ ଧରି ସେ ଠାକୁର ପୂଜା କରନ୍ତି । ତେଣୁ ତାଙ୍କର ଠାକୁର ପୂଜା ନକଲେ ଚଳୁଛି । କିନ୍ତୁ

ରବିବାରରେ ତାଙ୍କ ପୁଅ ଜନ୍ମଗ୍ରହଣ କରିଥିବାରୁ ସେହିଦିନ ସେ ଦାଢ଼ି କାଟନ୍ତି ନାହିଁ । ମାନେ ସେଭିଂ ହୁଅନ୍ତି ନାହିଁ । ଏହାକୁ କାକତଳୀୟ ନ୍ୟାୟ ବୋଲି କୁହାଯାଇପାରେ । ଯଦିଓ ରଘୁ ସୂର୍ଯ୍ୟ ପୂଜା କରନ୍ତି ନାହିଁ କିନ୍ତୁ ସୂର୍ଯ୍ୟବାରରେ ସେ ଦାଢ଼ି କାଟନ୍ତି ନାହିଁ । ଯେଉଁଥିପାଇଁ ସୂର୍ଯ୍ୟ ତାଙ୍କ ଉପରେ ବେଶ୍ ସନ୍ତୁଷ୍ଟ ହୋଇଯାଇଛନ୍ତି । ନହେଲେ ନବୀନ ପଟ୍ଟନାୟକଙ୍କ ସରକାରରେ ରଘୁ ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ ହୋଇ ନଥା'ନ୍ତେ । ଗୋଟିଏ ସମୟରେ ସେ ପଂଚାୟତିରାଜ ଆଉ ସଂସଦୀୟ ବ୍ୟାପାର ମନ୍ତ୍ରୀ ଥିଲେ । ପରବର୍ତ୍ତୀ ସମୟରେ ରଘୁ ଖଣି, ଇସ୍ପାତ, ଶିଳ୍ପ, ସଂସଦୀୟ ବ୍ୟାପାର ପରି ଗୁରୁତ୍ୱପୂର୍ଣ୍ଣ ବିଭାଗର ମନ୍ତ୍ରୀ ହେଲେ । ସବୁ ସେହି ସୂର୍ଯ୍ୟଙ୍କର ଖେଳ । ଜାଣତରେ ହେଉ କିମ୍ବା ଅଜାଣତରେ ହେଉ ରଘୁ ଯେ, ସୂର୍ଯ୍ୟ ପୂଜା କରୁଛନ୍ତି ତାହା ସ୍ପଷ୍ଟ ହୋଇଯାଇଛି । ଦେଖାଯାଉ ରଘୁଙ୍କୁ ସୂର୍ଯ୍ୟ କେତେଦିନ ଶକ୍ତି ଦେଉଛନ୍ତି ।

# ପ୍ରଦୀପ, ରମେଶ ଓ ପ୍ରଦୀପ

ଜଣେ ହେଲେ ପ୍ରଦୀପ ମହାରଥୀ । ନବୀନ ପଟ୍ଟନାୟକଙ୍କ ସରକାରରେ ସେ କୃଷିମନ୍ତ୍ରୀ । ଆଉ ଜଣେ ହେଲେ ପ୍ରଦୀପ ମାଝୀ । ସେ ନବରଙ୍ଗପୁର ଲୋକସଭା ଆସନର କଂଗ୍ରେସ ସାଂସଦ । ଅନ୍ୟ ଜଣେ ହେଲେ ରମେଶ ମାଝୀ । ସେ ଝରିଗାଁ ବିଧାୟକ ଆଉ ମତ୍ସ୍ୟ ଓ ପଶୁସମ୍ପଦ, ଆଇଟି ଏବଂ ଜାତି, ଜନଜାତି, ପଛୁଆ ଶ୍ରେଣୀର ରାଷ୍ଟ୍ରମନ୍ତ୍ରୀ । ଏମିତି ରମେଶଙ୍କ ନିର୍ବାଚନମଣ୍ଡଳୀରେ ପଶୁମାନଙ୍କ ପାଇଁ ଆମ୍ବୁଲାନ୍ସ ସେବା ଉଦ୍‌ଘାଟନ ହେବାର ଥାଏ । ଏହି ଉଦ୍‌ଘାଟନ ସମୟରେ ସେତେବେଳେ ଉପସ୍ଥିତ ଥିଲେ ନିଜେ ବିଭାଗୀୟ ମନ୍ତ୍ରୀ ରମେଶ ମାଝୀ, କୃଷିମନ୍ତ୍ରୀ ପ୍ରଦୀପ ମହାରଥୀ ଓ ନବରଙ୍ଗପୁର ସାଂସଦ ପ୍ରଦୀପ ମାଝୀ । ଏମିତି ମନ୍ତ୍ରୀ ରମେଶ ଓ ପ୍ରଦୀପ ମହାରଥୀ ସରକାରୀ କାର୍ଯ୍ୟକ୍ରମର ଉଦ୍‌ଘାଟନରେ ଉପସ୍ଥିତ ରହିବାଟା ବେଶ୍ ବୁଝି ହେଉଥିଲା । କିନ୍ତୁ ସେଠାରେ କଂଗ୍ରେସ ସାଂସଦ ପ୍ରଦୀପ ମାଝୀ କାହିଁକି ଉପସ୍ଥିତ ରହିଥିଲେ ତାହାର କାରଣ କେହି ବୁଝିପାରୁ ନଥିଲେ । ହଠାତ୍ ଦେଖାଗଲା ପ୍ରଦୀପ ମହାରଥୀ ଓ ରମେଶ ମାଝୀ ସବୁଜ ପତାକା ଦେଖାଇ ଆମ୍ବୁଲାନ୍ସ ଚଳାଚଳକୁ ଉଦ୍‌ଘାଟନ କଲେ । ଏହାପରେ ପ୍ରଦୀପ ମହାରଥୀ ଏକ ସବୁଜ ପତାକା ନେଇ ପ୍ରଦୀପ ମାଝୀଙ୍କ ହାତରେ ଧରାଇଦେଲେ ଆଉ କହିଲେ- ପତାକା ହଲାଇ ଦିଅ । ଯେତେବେଳେ ପ୍ରଦୀପ ମାଝୀ ପତାକା ହଲାଇ ଦେଲେ ସେତେବେଳେ ପ୍ରଦୀପ ମହାରଥୀ କହିଲେ- ଯେଉଁ ପତାକାକୁ ପ୍ରଦୀପ ମାଝୀ ହଲାଇଲେ ତାହା କଂଗ୍ରେସର ରଙ୍ଗ ନୁହେଁ । ତାହା ହେଉଛି ବିଜେଡିର ରଙ୍ଗ । ଏଣିକି ଅତୀତକୁ ଫେରିଆସିବ ବୋଲି ପ୍ରଦୀପ ମହାରଥୀ ସେଠାରେ ପ୍ରଦୀପ ମାଝୀଙ୍କ ପ୍ରତି ମନ୍ତବ୍ୟ ଦେଲେ । ଅବଶ୍ୟ ପ୍ରଦୀପ ମହାରଥୀଙ୍କ ମନ୍ତବ୍ୟରେ ପ୍ରଦୀପ

ମାଝୀ ଅସନ୍ତୋଷ ପ୍ରକାଶ କରୁଥିବାର ଦେଖାଗଲାନାହିଁ । ବରଂ ସେତେବେଳେ ସେ ବେଶ୍ ହସୁଥିଲେ । ପ୍ରଦୀପ ମାଝୀଙ୍କ ହାତରେ ସବୁଜ ପତାକା ଆଉ ସେ ଦୁଇ ବିଜେଡି ମନ୍ତ୍ରୀଙ୍କ ମଝିରେ ଥିବାରୁ ଅନେକଙ୍କର ଧାରଣା ହେଲା ଯେ ବୋଧହୁଏ ପ୍ରଦୀପ ନିକଟ ଭବିଷ୍ୟତରେ ବିଜେଡିକୁ ଚାଲିଆସିବେ ବୋଲି । ଅବଶ୍ୟ ସେଦିନ ଖୋଲାଖୋଲି ଭାବେ ପ୍ରଦୀପ ମହାରଥୀ ବିଜେଡିକୁ ଚାଲିଆସ ବୋଲି ପ୍ରଦୀପ ମାଝୀଙ୍କୁ ନିମନ୍ତ୍ରଣ କଲେ । ଆଉ ମଧ କହିଲେ- ବିଜେଡି ପତାକା ଧରି କଂଗ୍ରେସରେ ରହିଲେ ବେଳା ଭଲ ପଡ଼ିବ ନାହିଁ । ଅବଶ୍ୟ ପ୍ରଦୀପ ମାଝୀ ଓ ପ୍ରଦୀପ ମହାରଥୀଙ୍କ ମଧରେ ଚାଲିଥିବା କଥାବାର୍ତାର ଶେଷ ଯେ ସେଇଠି ହୋଇଯାଇଥିଲା ତାହା ନୁହେଁ । ଉଭୟଙ୍କର ନାମ ପ୍ରଦୀପ ହୋଇଥିବା ବେଳେ କେଉଁ ପ୍ରଦୀପର କେଉଁ ଅର୍ଥ ତାହାକୁ ମଧ ପ୍ରଦୀପ ମହାରଥୀ ବୁଝାଇ ଦେଇଥିଲେ । ଅବଶ୍ୟ ପ୍ରଦୀପ ମହାରଥୀଙ୍କ କଥାକୁ ନେଇ ସେଦିନ ସେଠାରେ ବେଶ୍ ହସ ଖେଳିଯାଇଥିଲା । ତେବେ ସେଦିନର ଦୃଶ୍ୟକୁ ନେଇ ବହୁଦିନ ଧରି ସାରା ନବରଙ୍ଗପୁର ଜିଲାରେ ଚାଲିଥିଲା ଚର୍ଚ୍ଚା । ଆଉ ଏହି ଚର୍ଚ୍ଚା ଅନ୍ୟ କିଛି ନୁହେଁ । କୁଆଡ଼େ ପ୍ରଦୀପ ମାଝୀ କଂଗ୍ରେସ ଛାଡ଼ି ବିଜେଡିରେ ମିଶିବେ । ମାନିବାକୁ ପଡ଼ିବ ପ୍ରଦୀପ ମହାରଥୀଙ୍କୁ । ନହେଲେ ସଜ ମାଛରେ ସେ ପୋକ ପକାଇ ଦିଅନ୍ତେ ନାହିଁ ।

# ପ୍ରକ୍ସି ବିଧାୟକ

**ବି**ଧାୟକ ତ ବିଧାୟକ ପୁଣି ପ୍ରକ୍ସି ବିଧାୟକ କ'ଣ । ଏକଥା ଜାଣିବାକୁ ଆମକୁ ଖୋର୍ଦ୍ଧା କିମ୍ବା ଜଟଣୀ ନିର୍ବାଚନମଣ୍ଡଳୀ ଯିବାକୁ ପଡ଼ିବ । ଖୋର୍ଦ୍ଧାର ବିଧାୟକ ହେଉଛନ୍ତି ରାଜେନ୍ଦ୍ର ସାହୁ । ଯଦିଓ ସେ ସ୍ୱାଧୀନ ଭାବେ ନିର୍ବାଚିତ ହୋଇଛନ୍ତି କିନ୍ତୁ ପ୍ରକୃତରେ ତାଙ୍କ ଦଳ ହେଉଛି ବିଜେଡି । ସେ ମଧ ବିଜେଡିର ବିଧାୟକ ଭାବେ ବି ପରିଗଣିତ ହେଉଛନ୍ତି । ଜଟଣୀର ବିଧାୟକ ହେଉଛନ୍ତି ବିଭୂତି ବଳବନ୍ତରାୟ । ଏମିତି ବିଭୂତି ପାୱାରଫୁଲ କଂଗ୍ରେସ ନେତା ସୁରେଶ କୁମାର ରାଉତରାୟ ଆଉ ଶରତ ପାଇକରାୟଙ୍କୁ ବେଶ୍ ଟକ୍କର ଦେଇ ବିଜେଡି ଟିକେଟରେ ନିର୍ବାଚିତ ହୋଇଛନ୍ତି । ସେପଟେ ଖୋର୍ଦ୍ଧାରେ ଗୋଟିଏ ସମୟରେ ନାମଜାଦିଆ ନେତା ଭାବେ ପରିଚୟ ସୃଷ୍ଟି କରିଥିବା ଜ୍ୟୋତିରିନ୍ଦ୍ର ନାଥ ମିତ୍ରଙ୍କୁ ମଧ ରାଜେନ୍ଦ୍ର ଚିତ୍‌ପଟାଙ୍ଗ କରିଛନ୍ତି । ଏହି ଦୃଷ୍ଟିରୁ ରାଜେନ୍ଦ୍ର ଓ ବିଭୂତି ରାଜନୀତିରେ ବେଶ୍ ଦକ୍ଷ ବୋଲି କୁହାଯାଉଛି । ସତେ ଯେମିତି ରାଜେନ୍ଦ୍ର ଆଉ ବିଭୂତି ମା' ପେଟର ଭାଇ । ସବୁବେଳେ ସେମାନେ ଏକାଠି ବୁଲନ୍ତି । ବେଳେବେଳେ ଦେଖାଗଲାଣି ଯଦି ବିଭୂତି କିଛିଦିନ ତାଙ୍କ ନିର୍ବାଚନମଣ୍ଡଳୀ ଜଟଣୀରେ ଅନୁପସ୍ଥିତ ରହୁଛନ୍ତି ତେବେ ଜଟଣୀର ଭାର ସେ ରାଜେନ୍ଦ୍ରଙ୍କୁ ଦେଉଛନ୍ତି । ରାଜେନ୍ଦ୍ର ମଧ ବିଭୂତିଙ୍କ ଅନୁପସ୍ଥିତିରେ ତାଙ୍କର 'କା'

ଅଭିନୟ ବେଶ୍ ସଫଳତାର ସହ କରୁଛନ୍ତି । ଯଦି କେଉଁଠି ଦୁର୍ଘଟଣା ଘଟିଲା, କେଉଁଠି ନିର୍ବାଚନମଣ୍ଡଳୀର ଅଧିବାସୀ ଅସୁସ୍ଥ ହୋଇଗଲେ, କେଉଁଠି ଯଦି କିଏ ମୃତାହତ ହେଲେ ତେବେ ଜଟଣୀ ବିଧାୟକ ବିଭୂତି ଉପସ୍ଥିତ ନଥିଲେ ମଧ ରାଜେନ୍ଦ୍ର ସେମାନଙ୍କ ପାଖରେ ବିଭୂତିଙ୍କ ଦୂତ ଭାବେ ଉପସ୍ଥିତ ହୋଇଯାଆନ୍ତି । ଯେମିତି ବିଭୂତିଙ୍କ ଅନୁପସ୍ଥିତିକୁ ସେମାନେ ଅନୁଭବ କରିପାରିବେ ନାହିଁ ସେଭଳି କାମ ରାଜେନ୍ଦ୍ର କରନ୍ତି । ସେ ଲୋକବଳ ହେଉ କି ଅର୍ଥବଳ ହେଉ ବିଭୂତିଙ୍କ ଅନୁପସ୍ଥିତିରେ ରାଜେନ୍ଦ୍ର ତାହା ଯୋଗାଇ ଦିଅନ୍ତି । କଥାରେ ଅଛି- ଗୋଟିଏ ହାତରେ ତାଳି ବାଜେନାହିଁ । ତେଣୁ ରାଜେନ୍ଦ୍ରଙ୍କ ପ୍ରତି ଯଦି ବିଭୂତିଙ୍କର ସହାନୁଭୂତି ନଥିବ ତେବେ ରାଜେନ୍ଦ୍ର ମଧ ବିଭୂତିଙ୍କ ପାଇଁ ଅବେଳରେ ବାହାରନ୍ତେ ନାହିଁ । ଯେତେବେଳେ ରାଜେନ୍ଦ୍ରଙ୍କର ଅସୁବିଧା ଥାଏ ସେତେବେଳେ ବିଭୂତି ମଧ ଖୋର୍ଦ୍ଧା ନିର୍ବାଚନମଣ୍ଡଳୀର ବାସିନ୍ଦାଙ୍କ ପାଖରେ ଠିଆ ହୋଇପଡ଼ନ୍ତି । ଆଉ କେହି ଅନୁଭବ କରନ୍ତି ନାହିଁ ରାଜେନ୍ଦ୍ରଙ୍କର ଅନୁପସ୍ଥିତିକୁ । ରାଜେନ୍ଦ୍ର ଓ ବିଭୂତି ସତେଯେମିତି ପୂର୍ବଜନ୍ମରେ ମା' ପେଟର ଭାଇ ଥିଲେ । ନହେଲେ ଏଭଳି ଭାବେ ସେମାନେ ଦୁଇ ନିର୍ବାଚନମଣ୍ଡଳୀରେ ଲୋକଙ୍କ ପାଖରେ ହାଜରେ ହୁଅନ୍ତେ ନାହିଁ । ପୁଣି ପରସ୍ପରର ପ୍ରକ୍ସି ମଧ ପକାନ୍ତେ ନାହିଁ । ମାନିବାକୁ ପଡ଼ିବ ରାଜେନ୍ଦ୍ର ଆଉ ବିଭୂତିଙ୍କୁ ।

# ପ୍ରସନ୍ନଙ୍କ ବିଦେଶ ଭ୍ରମଣ

**ଭୁ**ବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀ ସୁଡ଼ାନ ଗସ୍ତ କରି ଫେରିଆସିଲେ । ଭାରତବର୍ଷ କଥା ଛଡ଼ାଯାଉ । ଓଡ଼ିଶାରେ ଜଣେ ଖ୍ୟାତନାମା ବ୍ୟକ୍ତି ଅଛନ୍ତି ବୋଲି ସୁଡ଼ାନ ସରକାର ଜାଣିପାରିଲେ । ଆଉ ସେହି ବ୍ୟକ୍ତି ଜଣଙ୍କ ହେଲେ ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଟଶାଣୀ । କିନ୍ତୁ ବିଦେଶ ଗସ୍ତ ପ୍ରସଙ୍ଗ ଉଠିଲେ କେଜାଣି କାହିଁକି ପ୍ରସନ୍ନଙ୍କ ମନ ଟିକିଏ ଅପ୍ରସନ୍ନ ହୋଇଯାଉଛି । ତାଙ୍କ ବିଦେଶ ଗସ୍ତକୁ ନେଇ ଅନେକ ନେତା ଅସହିଷ୍ଣୁ ହୋଇଯାଉଛନ୍ତି । ଯେଉଁଥିପାଇଁ ସେ ବିଦେଶ ଗସ୍ତ କଲେ ତାଙ୍କ ନାମରେ ନାନା କଥା ଚର୍ଚ୍ଚା ହେଉଛି । ପ୍ରସନ୍ନ ପୂର୍ବରୁ ବିଦେଶ ଗସ୍ତରେ ଗଲେ ତାହାକୁ ମାସକ ଆଗରୁ ଏମିତି ପ୍ରଚାର କରୁଥିଲେ ଯେ, ସତେ ଯେମିତି ସେ ବିଦେଶକୁ ନଯାଇଥିଲେ ମଧ ସେ ବିଦେଶକୁ ଚାଲିଗଲେଣି ବୋଲି ଲୋକ ଭାବନ୍ତି । କିନ୍ତୁ ଏବେ ସମ୍ପୂର୍ଣ୍ଣ ଓଲଟା ହୋଇଯାଇଛି । ପ୍ରସନ୍ନଙ୍କ ବିଦେଶ ଗସ୍ତ ସମ୍ପର୍କରେ କେବଳ ପ୍ରସନ୍ନ ହିଁ ଜାଣନ୍ତି । ସେ ଏହାକୁ ବାହାରକୁ ଫିଟାଇବାକୁ ଚାହୁଁନାହାନ୍ତି । ଏପରିକି ନିଜ ଦଳର ନେତା ତଥା ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ କିମ୍ବା ରାଜ୍ୟସଭା ସାଂସଦ ପ୍ୟାରୀମୋହନ ମହାପାତ୍ରଙ୍କୁ ମଧ ପ୍ରସନ୍ନ ତାଙ୍କ ବିଦେଶ ଗସ୍ତ ସମ୍ପର୍କରେ ଜଣାଉ ବି ନାହାନ୍ତି । ପ୍ରସନ୍ନ ଭଲ ରୂପେ ଜାଣିସାରିଲେଣି ଯେ ଓଡ଼ିଶାର ଲୋକମାନେ

କଙ୍କଡ଼ା ଅଟନ୍ତି । ମାନେ ଜଣେ ଉପରକୁ ଉଠିଲେ ଅନ୍ୟମାନେ ତାଙ୍କ ଗୋଡ଼ ଟାଣନ୍ତି । ଏହି ଦୃଷ୍ଟିରୁ ପ୍ରସନ୍ନ ଆଉ ତାଙ୍କ ବିଦେଶ ଗସ୍ତକୁ ଚର୍ଚ୍ଚାକୁ ଛାଡୁନାହାନ୍ତି । ବିଦେଶ ଗସ୍ତକୁ ନେଇ ସେ ଲୋ-ପ୍ରୋଫାଇଲ ମେଂଟେନ୍ କରୁଛନ୍ତି । ସୁଡ଼ାନ ଏକ ନୂଆ ରାଷ୍ଟ୍ର ହେବାପରେ ସେଥିପାଇଁ ଯେଉଁ ଉତ୍ସବର ଆୟୋଜନ ହେଲା ସେଥିରେ ଅଂଶଗ୍ରହଣ କରିବା ପାଇଁ ପ୍ରସନ୍ନ ପାଢଶାଣୀଙ୍କୁ ନିମନ୍ତ୍ରଣ କରାଗଲା । ଏମିତି କେହିବି ଭାବି ନଥିଲେ ପ୍ରସନ୍ନ ସୁଡ଼ାନ ଯାଇଛନ୍ତି ବୋଲି । ଏପରିକି ନବୀନ ପଟ୍ଟନାୟକ ଓ ପ୍ୟାରୀମୋହନ ମହାପାତ୍ର ଜାଣିଥିଲେ ପ୍ରସନ୍ନ ଦିଲ୍ଲୀ ଯାଇଛନ୍ତି ବୋଲି । କିନ୍ତୁ ଯେତେବେଳେ ଟିଭିରେ ଦେଖାଗଲା ଯେ ପ୍ରସନ୍ନ ସୁଡ଼ାନରେ ଅଛନ୍ତି ବୋଲି ସେତେବେଳେ ଜଣାପଡ଼ିଲା ପ୍ରସନ୍ନ ସମସ୍ତଙ୍କୁ ଲୁଚାଇ ବିଦେଶ ଯାଇଛନ୍ତି ବୋଲି । ପ୍ରସନ୍ନ କହନ୍ତି ଯେ ଆଉ ଯାହା ହେଉପଛେ ତାଙ୍କର ବିଦେଶ ଗସ୍ତ ସମ୍ପର୍କରେ କାହାକୁ କହିବେ ନାହିଁ । ମାନେ ଲୁଚିଛପି ସେ ବିଦେଶ ଯିବେ । ତେବେ ପ୍ରସନ୍ନଙ୍କର ବିଦେଶରେ ବେଶ୍ କାଟ୍ତି ରହିଛି । ଏମିତି ବାବାଜୀ ନହେଲେ ମଧ୍ୟ ତାଙ୍କ ଚେହେରାଟି ବାବାଜୀ ପରି । ପୁଣି ପୋଷାକ ମଧ୍ୟ ବାବାଜୀଙ୍କ ପରି । ଅନର୍ଗଳ ଭାବେ ସେ ଇଂରାଜୀରେ ଭାଷଣ ବି ଦିଅନ୍ତି । ତାଙ୍କୁ ଦେଖିବାକୁ ବିଦେଶରେ ବେଶ୍ ଆଗ୍ରହ ସୃଷ୍ଟି ହୁଏ । ତେବେ ବିଦେଶ ଗସ୍ତ କରି ଅତୀତରେ ପ୍ରସନ୍ନ ଯେପରି ସମସ୍ୟା ମଧ୍ୟକୁ ଠେଲି ହୋଇଯାଇଥିଲେ ଆଉ ସେପରି ହେବାକୁ ଚାହୁଁନାହାନ୍ତି । ଦେଖାଯାଉ ପ୍ରସନ୍ନ ସୁଡ଼ାନ ଗସ୍ତ କରିବା ପରେ ଅନ୍ୟ କେଉଁ ରାଷ୍ଟ୍ରକୁ ଗସ୍ତରେ ଯାଉଛନ୍ତି ।

## ମହାରଥୀ ବନାମ ପାଢଶାଣୀ

ଯଦି କୌଣସି ସଭାରେ ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଢଶାଣୀ ଭାଷଣ ଦେଉଥିବେ ଆଉ ତାଙ୍କୁ ଯଦି ସେହି ସମୟରେ କବିତାରେ ଭାଷଣ ଦିଅନ୍ତୁ ବୋଲି କୁହାଯିବ ତେବେ ସଙ୍ଗେସଙ୍ଗେ ସେ ଆଶୁକବି ହୋଇଯିବେ । ଆଉ କବିତାରେ ଭାଷଣ ଦେବେ । ପ୍ରସନ୍ନଙ୍କର ଏହି ଯୋଗ୍ୟତା ସାଧାରଣତଃ ଅନ୍ୟ କାହା ପାଖରେ ଦେଖିବାକୁ ମିଳେନାହିଁ । ଖୋର୍ଦ୍ଧାରେ ଉଦ୍ୟାନ ବିଭାଗ ପକ୍ଷରୁ ଏକ ଉତ୍ସବ ଅନୁଷ୍ଠିତ ହୋଇଥିଲା । ଏଥିରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଯୋଗ ଦେଇଥିଲେ । ସେପଟେ କୃଷିମନ୍ତ୍ରୀ ପ୍ରଦୀପ ମହାରଥୀ ଓ ଭୁବନେଶ୍ୱର ସାଂସଦ ପ୍ରସନ୍ନ ପାଢଶାଣୀ ମଧ୍ୟ ଉତ୍ସବରେ ଉପସ୍ଥିତ ଥିଲେ । ଯେତେବେଳେ ପ୍ରଦୀପ ମହାରଥୀ ଭାଷଣ ଦେଲେ ସେତେବେଳେ ହଠାତ୍ ସେ କବିତା ବୋଲିବାକୁ ଲାଗିଲେ । ଘଟଣା ସମ୍ପର୍କରେ କେହି କିଛି ବୁଝିପାରିଲେ ନାହିଁ । ପ୍ରଦୀପ ମହାରଥୀଙ୍କ ଆଡ଼କୁ ଚାହିଁ ମୁଖ୍ୟମନ୍ତ୍ରୀ ନବୀନ

ପଟ୍ଟନାୟକ ମୁଚୁକୁନ୍ଦି ହସ ହସୁଥିଲେ । ଏହି ସମୟରେ ପାଖରେ ବସିଥିବା ପ୍ରସନ୍ନ ପାଟଶାଣୀଙ୍କୁ କୁଆଡ଼େ ନବୀନ ପଟ୍ଟନାୟକ ପଚାରିଲେ ଯେ ପ୍ରଦୀପ ମହାରଥୀ ଯେଉଁ କବିତା ବୋଲୁଛନ୍ତି ତାହା କ'ଣ ତାଙ୍କର କବିତା ବୋଲି କି । ପ୍ରସନ୍ନ ମୁଣ୍ଡ ହଲାଇ ମନା କଲେ ଆଉ କହିଲେ ଏହା ତାଙ୍କର କବିତା ନୁହେଁ ବୋଲି । ଏମିତି ପ୍ରଦୀପ ମହାରଥୀ ଭାଷଣ ଦେବା ସମୟରେ କବିତା କେବେ ବୋଲନ୍ତି ନାହିଁ । ସେଠାରେ କବିତା ବୋଲିବାରୁ ଶ୍ରୋତାମାନେ ବେଶ୍ ତାଳିମାଡ଼ କଲେ । ଏହି ସମୟରେ କେହି ଜଣେ ବଡ଼ପାଟିରେ କହିଦେଲେ- କବିତାଟି ପ୍ରଦୀପ ମହାରଥୀଙ୍କ ପତ୍ନୀ ପ୍ରତିଭା ମହାରଥୀ ଲେଖିଛନ୍ତି ବୋଲି । ସଙ୍ଗେସଙ୍ଗେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ଏ ସମ୍ପର୍କରେ ଅଧିକ ଜାଣିବାକୁ ଚାହିଁଲେ । ଅବଶ୍ୟ କେହିକିଛି କହିବା ପୂର୍ବରୁ ନବୀନ ନିଜଆଡୁ କୁଆଡ଼େ କହିଲେ ଯେ ଯାହା ହେଉ ପ୍ରଦୀପ ଆଦର୍ଶ ସ୍ୱାମୀ । ନଚେତ୍ ପତ୍ନୀଙ୍କ ପ୍ରଶଂସା ସେ ସଭାରେ କରୁ ନଥା'ନ୍ତେ । ମାନିବାକୁ ପଡ଼ିବ ପ୍ରଦୀପ ମହାରଥୀଙ୍କୁ । କାଳେ ପ୍ରସନ୍ନ ପାଟଶାଣୀ କବିତା ବୋଲି ଦେବେ ଆଉ ସଭାରେ ସେ ପ୍ରିୟ ନେତା ହୋଇଯିବେ ଏହାକୁ ସେ ଚାହିଁଲେ ନାହିଁ । ଏମିତି ଦେଖିଲେ ସଭାଟି ତାଙ୍କରି ବିଭାଗର ଥିଲା । ତେଣୁ ମନ୍ତ୍ରୀ ଭାବେ ସେ ବାହାବା ନେବାକଥା । ଆଉ ତାହା ହିଁ କଲେ ପ୍ରଦୀପ ମହାରଥୀ । ଦେଖାଯାଉ ପ୍ରଦୀପ ଅନ୍ୟ ସଭାରେ କବିତା ବୋଲୁଛନ୍ତି କି ନାହିଁ ।

## ଗୀତ ମାୟାରେ ବାୟା ଦେବୀ

**ଦେ**ବୀ ପ୍ରସାଦ ମିଶ୍ରଙ୍କ ପରିଚୟ ହେଉଛି ଜଙ୍ଗଲ ଓ ପରିବେଶ ମନ୍ତ୍ରୀ । ପୂର୍ବରୁ ସେ ଉଚ୍ଚଶିକ୍ଷା, ପର୍ଯ୍ୟଟନ ଓ ସଂସ୍କୃତି ବିଭାଗର ମନ୍ତ୍ରୀ ଥିଲେ । କିନ୍ତୁ ସଂସ୍କୃତି ବିଭାଗ ଚାଲିଯିବା ପରେ ଦେବୀ ସତେ ଯେମିତି ଏବେ କବିତା ନାଗର ହୋଇଯାଇଛନ୍ତି । ଏମିତି ଏହାର ଦୁଇଟି ଉଦାହରଣ ଦିଆଯାଉଛି । ଗୋଟିଏ ହେଲା ବନ ମହୋତ୍ସବ । ଏଥିରେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମୁଖ୍ୟ ଅତିଥି ଥିଲେ । ଉତ୍ସବ ଚାଲିଥାଏ । ହଠାତ୍ ଦେବୀ ପ୍ରସାଦ ମିଶ୍ର କହିଲେ- ପ୍ରସନ୍ନ ପାଟଶାଣୀ ତାଙ୍କ ଭାଷଣ କବିତାରେ ଦିଅନ୍ତୁ । ଅବଶ୍ୟ ପ୍ରସନ୍ନଙ୍କୁ ଆଶୁ କବି ବୋଲି କୁହାଯାଏ । ସେ ଯେକୌଣସି ସମୟରେ ଆଉ ଯେ କୌଣସି ପରିସ୍ଥିତିରେ ତୁରନ୍ତ କବି ବନିଯାଇଥା'ନ୍ତି । ତାଙ୍କୁ ଯଦି କେହି କବିତା ବୋଲିବା ପାଇଁ ଚ୍ୟାଲେଂଜ ଦିଏ ତେବେ ସେ ସଙ୍ଗେସଙ୍ଗେ କବିତା ବୋଲନ୍ତି । ଦେବୀଙ୍କର ଅନୁରୋଧ ତାଙ୍କ ପାଇଁ ଏଠାରେ ଚ୍ୟାଲେଂଜ ହୋଇଗଲା । ପ୍ରସନ୍ନ ସଙ୍ଗେସଙ୍ଗେ ବନିଗଲେ

ଆଶୁକବି । ଆଉ ଭାଷଣ ଦେଲେ କବିତାରେ-

*ଜୀବନରୁ ବନ,*
*ବନ ରହିଲେ ରହିବ ଜୀବନ ।*
*ଗଛ ଉପରେ ଯିଏ କୁରାଢ଼ୀ ଚୋଟଟିଏ ପକାଏ,*
*ତାହାବାଜିଯାଏ ଜଗନ୍ନାଥଙ୍କ ଦେହରେ ।*
*ଯେହେତୁ ଚକାଡୋଳା ହେଲେ ଦାରୁବ୍ରହ୍ମ ଗଛର ଦେବତା,*
*ଗଛକୁ ହାଣିଲେ ଏ ମଣିଷ ନିଜକୁ ହାଣେ,*
*ନିଜ ହାତରେ ଜାଳି ଦିଏ ନିଜର ଚିତା ।*

ଏମିତି ଦୀର୍ଘ ସମୟ ଧରି ପ୍ରସନ୍ନ କବିତା ବୋଲି ଚାଲିଲେ । କେହି ତାଳି ମାରିବା ଆଗରୁ ଆଗ ତାଳି ମାରୁଥା'ନ୍ତି ଦେବୀ । ସେପଟେ ମୁଖ୍ୟମନ୍ତ୍ରୀ ନବୀନ ପଟ୍ଟନାୟକ ମଧ୍ୟ ବେଳେବେଳେ ମୁରୁକୁନ୍ଦି ହସ ହସୁଥା'ନ୍ତି । ଆଉ ଏକ ଘଟଣା । ତାହା ଥିଲା କମ୍ୟୁନିଷ୍ଟ ନେତା ଦୂତୀକୃଷ୍ଣ ପଣ୍ଡାଙ୍କ ୮୯ତମ ଜୟନ୍ତୀ । ଦେବୀ କ'ଣ ଭାବିଲେ କେଜାଣି ସେଠାରେ ମାଇକ୍ ପାଖକୁ ଯାଇ ଘୋଷଣା କଲେ- ପ୍ରଫୁଲ୍ଲ କର ତାଙ୍କ ଭାଷଣ ଗୀତରେ ଦେବେ । ଏହାପରେ ପ୍ରଫୁଲ୍ଲ କର ହାରମୋନିଅମ୍ ଧରିଲେ । ତାଙ୍କ ପୁଅ ମହାପ୍ରସାଦ କର ଏକ କାଗଜ ଧରି ଗୀତ ବୋଲିଲେ- ଚାଲ ଯିବା ଦୂତୀ ଭାଇନାଙ୍କ ନାହି କଟା ବେଳ ହେଲାଣି... ପ୍ରଫୁଲ୍ଲ କର ହାରମୋନିଅମ୍ ବଜାଉଥା'ନ୍ତି ଆଉ ମହାପ୍ରସାଦ କର ଗୀତ ବୋଲି ଚାଲିଥା'ନ୍ତି । ଦେବୀ ହସିହସି ତାଳି ମାରି ଚାଲିଥା'ନ୍ତି । ସେହି ସଭାରେ ମୁଖ୍ୟ ଅତିଥି ଥିଲେ ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ର । ସେ ମଧ୍ୟ ହସିହସି ତାଳି ମାରୁଥା'ନ୍ତି । ଯାହା ଦେଖାଯାଉଛି ଦେବୀ ବେଶ୍ ରୋମାଂଟିକ୍ ହୋଇଗଲେଣି । ଅନ୍ୟମାନେ ଗୀତ ବୋଲି ଭାଷଣ ଦେଲେ ସେ ବେଶ୍ ଖୁସି ହେଉଛନ୍ତି । ନେତାମାନେ ସାଧାରଣତଃ ଅନେକ ସମୟରେ ଟେନ୍‌ସନ୍ ଥା'ନ୍ତି । ସଭାସମିତିକୁ ଆସିଲେ ମଧ୍ୟ ସେଠାରେ ମଧ୍ୟ ଟେନ୍‌ସନ୍ ଥାଏ । କିନ୍ତୁ କବିତାରେ ଭାଷଣ ଶୁଣିଲେ ଦେବୀଙ୍କର ମୁହଁରେ ହସ ଖେଳାଇଯାଏ ଆଉ ସେ ଟେନ୍‌ସନ୍ ଫ୍ରି ହୋଇଯାଆନ୍ତି । ଦେଖଯାଉ ଦେବୀ ତାଙ୍କର ଅନ୍ୟ ସବୁ ସଭାରେ ଅତିଥିଙ୍କୁ କବିତାରେ ଭାଷଣ ଦେବା ପାଇଁ କହୁଛନ୍ତି ନା ନାହିଁ ।

## ମହାରଥୀ, ବିଜୟ ଓ ବାହାଘର

**ବି**ଧାନସଭା ହେଉ କିମ୍ବା ସାଧାରଣ ସଭା ହେଉ ପ୍ରଦୀପ ମହାରଥୀ ଯଦି ସେଠାରେ ବକ୍ତବ୍ୟ ଦିଅନ୍ତି ତେବେ ଏକ ଧାରଣା ହୁଏ ଯେ ସେ ଜଣେ କଡ଼ା ଲୋକ ବୋଲି । ମାନେ ଭାଷଣ ଯେମିତି ତାଙ୍କର କଡ଼ା ହୃଦୟ ବି ସେମିତି କଡ଼ା ହୋଇଥିବ ବୋଲି ଅନେକ

ଭାବନ୍ତି । କିନ୍ତୁ ପ୍ରକୃତରେ ପ୍ରଦୀପ ମହାରଥୀ ତାହା ନୁହଁନ୍ତି । ମନ୍ତ୍ରୀ ହେବାପରେ ପ୍ରଦୀପ ସଚିବାଳୟ ସ୍ଥିତ ତାଙ୍କ ପାଇଁ ଉର୍ଦ୍ଦିଷ୍ଟ ମନ୍ତ୍ରୀ ପ୍ରକୋଷ୍ଠରେ ବସିଥିଲେ । ହଠାତ୍ କହିଲେ ମଧ-ଭୁବନେଶ୍ୱର ବିଧାୟକ ବିଜୟ ମହାନ୍ତିଙ୍କୁ ଟେଲିଫୋନ୍ ଲଗାଅ । ଏହାପରେ ମହାରଥୀଙ୍କୁ ଜଣାଇ ଦିଆଗଲା ଯେ, ବିଜୟ ଠାକୁର ପୂଜା କରୁଛନ୍ତି ବୋଲି । ଏହି ସମୟରେ ପ୍ରଦୀପଙ୍କ ପାଟିରୁ ବାହାରିଗଲା ବିଜୟ ଠାକୁର ପୂଜା କରୁଛନ୍ତି ବୋଲି ସେ ଜାଣନ୍ତି ନାହିଁ । ଭଲ ହେଲା ତାଙ୍କପରି ଜଣେ ଠାକୁର ଭକ୍ତ ବିଜୟ ଅଟନ୍ତି । ଏହି ସମୟରେ ପ୍ରଦୀପଙ୍କ ସମ୍ମୁଖରେ ବସିଥିବା କେହି ଜଣେ ବ୍ୟକ୍ତି କହିଲେ - ଆପଣ କ'ଣ ଠାକୁର ଭକ୍ତ । ପ୍ରଦୀପ ସଙ୍ଗେଙ୍ଗେ ଉତର ଦେଲେ- ଠାକୁର ଭକ୍ତ ବୋଲି ତ ଟେବୁଲ ଉପରେ ସେ ହନୁମାନଙ୍କୁ ରଖିଛନ୍ତି । ଯେବେଠାରୁ ସେ ମନ୍ତ୍ରୀ ଭାବେ ପ୍ରକୋଷ୍ଠରେ ପ୍ରବେଶ କଲେ ସେବେଠାରୁ ଟେବୁଲ ଉପରେ ହନୁମାନଙ୍କୁ ଆଣି ରଖିଛନ୍ତି । ଆଉ ଯେତେବେଳେ ମନ୍ତ୍ରୀ ପଦରୁ ଚାଲିଯିବେ ସେତେବେଳେ ସାଥିରେ ହନୁମାନଙ୍କୁ ନେଇ ଚାଲିଯିବେ । ଏଭଳି କଥାବାର୍ତା ଚାଲୁଥିବା ବେଳେ ସେପଟୁ ବିଜୟଙ୍କ ଟେଲିଫୋନ୍ ଆସିଲା । ପ୍ରଦୀପ ହାଲୋ ବୋଲି କହିଲା ବେଳକୁ ସେପଟୁ ବିଜୟ ତାଙ୍କ ଭଉଣୀ ବାହାଘରକୁ ପ୍ରଦୀପ ଗଲେନାହିଁ କହି ଅଭିମାନ କଲେ । ଏପଟେ ପ୍ରଦୀପ ତାଙ୍କ ସ୍ୱଭାବସୁଲଭ ଢଙ୍ଗରେ କହିଲେ- କେବେ ଭଉଣୀ ଘରକୁ ଭାର ନେଇ ତମେ ଯିବ କୁହ । ସେହିଦିନ ସେ ମଧ ତାଙ୍କ ସହିତ ଯିବେ । ବିଜୟ ଜଣାଇ ଦେଲେ କେଉଁଦିନ ଯିବେ ବୋଲି । ଏହାପରେ ପ୍ରଦୀପ ତାଙ୍କ କର୍ମଚାରୀଙ୍କୁ ଡାକି କହିଲେ- ନୋଟ୍ କର । ବିଜୟଙ୍କର ଭଉଣୀ ଘରକୁ ସେ ଯିବେ । କଥାଟି ସେଇଠାରେ ଶେଷ ହୋଇଗଲା । ପ୍ରଦୀପଙ୍କ ପାଖରେ ସେଦିନ ବସିଥିବା ଲୋକମାନେ ଯେ ବିଜୟଙ୍କ ଭଉଣୀ ଘରକୁ ପ୍ରଦୀପ ଯାଇଥିବେ କି ନଯାଇଥିବେ ତାହା ବି ଜାଣିବାର ସୁଯୋଗ ଜୁଟି ନଥିବ । କିନ୍ତୁ ସେଦିନ ବିଜୟ ପ୍ରଦୀପଙ୍କୁ ବହୁ ପ୍ରଶଂସା କରୁଥିଲେ । ସେ କହୁଥିଲେ- ପ୍ରଦୀପଙ୍କ ପରି ଜଣେ ହୃଦୟବାନ ବ୍ୟକ୍ତି ସେ ଦେଖିନାହାନ୍ତି । ଭଉଣୀ ବାହାଘରକୁ ଆସିଲେ ନାହିଁ ବୋଲି କହିଦେବା ପରେ ସେ ଭଉଣୀର ଘରକୁ ଭାର ଯାଉଥିବା ବେଳେ ତା' ସହିତ ଗଲେ । ଜଣେ କ୍ୟାବିନେଟ ମନ୍ତ୍ରୀ ତାଙ୍କ ଭଉଣୀର ଘରକୁ ଭାର ସହିତ ଯାଇଥିବାରୁ ସେଥିରେ ଭଉଣୀର ମାନସମ୍ମାନ କେତେ ଉପରକୁ ଉଠିଯାଇଛି ତାହା କେବଳ ଭଉଣୀ ହିଁ କହିପାରିବ । ମାନିବାକୁ ପଡ଼ିବ ପ୍ରଦୀପ ମହାରଥୀଙ୍କୁ । ନହେଲେ ପିପିଲି ପରି ଏକ ସର୍ଶକାତର ଓ ସମ୍ବେଦନଶୀଳ ନିର୍ବାଚନମଣ୍ଡଳୀରୁ ସେ ପାଂଚଥର ବିଧାୟକ ହୋଇ ନଥା'ନ୍ତେ । ଆଉ ବିଧାନସଭାରେ ଜଣେ ଲୋକପ୍ରିୟ ବିଧାୟକ ଭାବେ ସେ ପରିଗଣିତ ହେଉ ନଥା'ନ୍ତେ । ମହାରଥୀ କୃଷି ମନ୍ତ୍ରୀ । କୃଷକ ହସିଲେ ରାଜ୍ୟ ହସିବ । ସେ ଯେଭଳି ହୃଦୟବାନ ତାହାର ଯଦି ପ୍ରଭାବ କୃଷକମାନଙ୍କ ଉପରେ ପଡ଼ିବ ତେବେ

ଜାଣ କୃଷକ ହସିବେ ହିଁ ହସିବେ ଆଉ ରାଜ୍ୟର ବିକାଶ ହେବ ହିଁ ହେବ । ଦେଖାଯାଉ ପ୍ରଦୀପ ମହାରଥୀ ତାଙ୍କର ହୃଦୟବାନ ଗୁଣକୁ କେତେଦୂର ଆଗେଇ ନେଉଛନ୍ତି ।

# ପଖାଳ ଭାତ, ଚାଉମିନ୍ ଓ ପ୍ରଦୀପ

**କୃ**ଷିମନ୍ତ୍ରୀ ପ୍ରଦୀପ ମହାରଥୀଙ୍କର ପରିଚୟ ହେଉଛି ଚାଷୀ । ତାଙ୍କର ଚାଷ ଉପରେ ବହୁ ଅଭିଜ୍ଞତା ରହିଛି । କୃଷିମନ୍ତ୍ରୀ ହେବାପରେ ବିଧାନସଭା କାର୍ଯ୍ୟାଳୟରେ ପ୍ରଦୀପ ମହାରଥୀ ଥିବାବେଳେ ହଠାତ୍ ଗୋଟିଏ ଫୋନ୍ ଆସିଲା । ପ୍ରଦୀପଙ୍କୁ ଜଣାଇ ଦିଆଗଲା ଯେ ତାଙ୍କ ଝିଅ ଫୋନ୍ କରିଛନ୍ତି ବୋଲି । ସଙ୍ଗେସଙ୍ଗେ ପ୍ରଦୀପ ଫୋନ୍ ଉଠାଇଲେ ଆଉ କହିଲେ- ହଁ ମା', କ'ଣ କହୁଛୁ କହ । ସେପଟୁ ତାଙ୍କ ଝିଅ କ'ଣ କହିଲେ କେଜାଣି । ଏପଟୁ ପ୍ରଦୀପ କହିଲେ- କାହିଁକି ଏଥର ଟିକିଏ ମାର୍କ କମିଗଲା । ଆରଥରକ ଫାଷ୍ଟ ହୋଇଥିଲୁ । ଏଥରକ ସେକେଣ୍ଡ ହୋଇଗଲୁ । ଏହି ସମୟରେ ପ୍ରଦୀପ ତାଙ୍କ ସମ୍ମୁଖରେ ବସିଥିବା ବ୍ୟକ୍ତିମାନଙ୍କୁ କହିଲେ ଯେ ସେ ତାଙ୍କ ଝିଅଙ୍କ ସହିତ କଥା ହେଉଛନ୍ତି । ତାଙ୍କ ଝିଅ ପଣ୍ଡିଚେରୀରେ ମେଡ଼ିକାଲ ପଢ଼ୁଛି । ଏହାପରେ ସେପଟୁ ତାଙ୍କ ଝିଅ କ'ଣ କହୁଥା'ନ୍ତି ଆଉ ପ୍ରଦୀପ ସବୁ ହଁ ହଁ କରୁଥା'ନ୍ତି । ହଠାତ୍ ପ୍ରଦୀପ କହିଲେ- ତୁ ଆଜି କ'ଣ ଖାଇଛୁ ମା' । ପ୍ରଦୀପଙ୍କ ଝିଅ କହିଲେ- ଚାଉମିନ୍ । ଏତିକିରେ ପ୍ରଦୀପ ଏକ ରାଜକୀୟ ହସ ହସିଲେ । ଆଉ କହିଲେ- ବାପା ପଖାଳ ଭାତକୁ ବାଇଗଣ ପୋଡ଼ା ଖାଉଛି । ଆଉ ଝିଅ ଚାଉମିନ୍ ଖାଉଛି । ହଉ ଯୁଗ ତ ସେଇଆଡ଼କୁ ଗଲା ଆମେ ବା କ'ଣ କରିପାରିବା । ଯାହା ଖାଉଛୁ ଦେହକୁ ଜଗିରଖି ଖା' । ମେଡ଼ିକାଲ ପଢ଼ୁଛୁ ତେଣୁ ନିଜ ଦେହ ନିଜକୁ ଦେଖିବାକୁ ହେବ । ଏହି ସମୟରେ ପ୍ରଦୀପଙ୍କ ସମ୍ମୁଖରେ ବସିଥିବା କେହି ଜଣେ ବ୍ୟକ୍ତି କହିଲେ- ଆଜ୍ଞା, ଝିଅ ଡାକ୍ତରୀ ପାଠ ପଢ଼ୁଛି ଆଉ ପୁଅ କ'ଣ କରୁଛି । ପ୍ରଦୀପ କହିଲେ- ପୁଅ ଇଂଜିନିୟରିଂ ପଢ଼ୁଛି । ମାନେ ଝିଅ ଡାକ୍ତର, ପୁଅ ଇଂଜିନିୟର ଆଉ ପତ୍ନୀ ଲେକ୍‌ଚରର । ସମ୍ମୁଖରେ ବସିଥିବା ଜଣେ କେହି ବ୍ୟକ୍ତି କହିଲେ- ଆଉ ଆପଣ ମିନିଷ୍ଟର । ଏତିକିରେ ସେଠାରେ ହସ ପରେ ହସ ଖେଳିଗଲା । ସେତେବେଳକୁ ଟେଲିଫୋନ୍ ଧରିଥା'ନ୍ତି ପ୍ରଦୀପ ମହାରଥୀ । ହଠାତ୍ ତାଙ୍କର ଟେଲିଫୋନ୍ ଆଡ଼କୁ ନଜର ଆସିଗଲା । ପ୍ରଦୀପ କହିଲେ- ଆରେ ଭୁଲ୍ ହୋଇଗଲା । ଝିଅ ଲାଇନ୍‌ରେ ଅଛି । ତା' ସହିତ କଥାବାର୍ତ୍ତା ନହୋଇ ମୁଁ ଆପଣଙ୍କ ସହିତ କଥା ହେଉଛି । ତା'ପରେ ପ୍ରଦୀପ ଟେଲିଫୋନ୍‌ରେ କହିଲେ- ହଁ ମା', ମୁଁ ରହିଲି । ପରେ କଥା ହେବା ।

# ବିଜୁଙ୍କ ଦୁଇକୋଟି ଟଙ୍କା

**ବି**ଜୁ ପଟ୍ଟନାୟକଙ୍କର ମୃତ୍ୟୁ ହେଲା ୧୯୯୭ ମସିହା ଏପ୍ରିଲ ୧୭ ତାରିଖରେ । ଏହାର ମାସକ ପୂର୍ବରୁ ବିଜୁ ନିଷ୍ପତି ନେଇସାରିଥିଲେ ଓଡ଼ିଶାରେ ଏକ ଆଂଚଳିକ ଦଳ ଗଠନ

କରିବେ ବୋଲି । ସାରା ଓଡ଼ିଶା ବୁଲି ସେ ଏଥିପାଇଁ ଲୋକଙ୍କର ମତାମତ ସଂଗ୍ରହ କରିବେ ଆଉ ଆଂଚଳିକ ଦଳ ଗଢ଼ି ସେ ଲୋକଙ୍କ ଠାରୁ ସମର୍ଥନ ନେବେ । ଆଂଚଳିକ ଦଳ ଗଠନ କରିବାକୁ ହେଲେ ଟଙ୍କାର ଆବଶ୍ୟକତା ରହିଛି । ପୁଣି ସାରା ଓଡ଼ିଶାରେ ସଭାସମିତି ହେଲେ ସେଥିପାଇଁ ମଧ୍ୟ ପାଣି ପରି ଟଙ୍କା ଖର୍ଚ୍ଚ ହେବ । ଏହି ନୂଆ ଆଂଚଳିକ ଦଳ ଗଠନ ହେଲେ କେତେ ଟଙ୍କା ବ୍ୟୟ ହେବ ସେଥିପାଇଁ ମଧ୍ୟ ବିଜୁ ପଟ୍ଟନାୟକ ଏକ ଆକଳନ କରିଥିଲେ । ଏମିତି ଗୋଟିଏ ସମୟରେ ବିଜୁ ପଟ୍ଟନାୟକ ନିର୍ବାଚନ ଖର୍ଚ୍ଚ ପାଇଁ ଜୟଲଳିତାଙ୍କ ଠାରୁ ଟଙ୍କା ଧାର ଆଣିଥିଲେ । ଏହି ଧାର ଟଙ୍କା ସେ ସୁଝି ଦେବାପରେ ତାଙ୍କ ପାଖରେ ପ୍ରାୟ ୨ କୋଟି ଟଙ୍କା ବଳିଲା । ଏହି ୨ କୋଟି ଟଙ୍କାରେ ଓଡ଼ିଶାରେ ଏକ ଆଂଚଳିକ ଦଳ ଗଠନ କରିବା ପାଇଁ ବିଜୁ ପଟ୍ଟନାୟକ ନିଷ୍ପତି ନେଇଥିଲେ । କିନ୍ତୁ ଆକସ୍ମିକ ଭାବେ ସେ ଅସୁସ୍ଥ ହୋଇଗଲେ । ଚିକିତ୍ସା ପାଇଁ ଦିଲ୍ଲୀ ଚାଲିଗଲେ । ଆଉ ସେ ଫେରିଲେ ନାହିଁ ଏବଂ ମୃତ୍ୟୁ ପଥର ସେ ହୋଇଗଲେ ଯାତ୍ରୀ । ଦିଲ୍ଲୀରୁ ବିଜୁଙ୍କ ଶବକୁ ତାଙ୍କ ନବୀନ ନିବାସକୁ ଅଣାଗଲା । ପୁରୀ ସ୍ୱର୍ଗଦ୍ୱାରରେ ତାଙ୍କ ଶବଦାହ କରାଗଲା । ନବୀନ ନିବାସରେ ତାଙ୍କର କ୍ରିୟାକର୍ମ ସମାପନ ହେଲା । କିନ୍ତୁ ବିଜୁ ତାଙ୍କ ପାଖରେ ଯେଉଁ ୨ କୋଟି ଟଙ୍କା ଅଛି ବୋଲି କହିଥିଲେ ତାହାର ଟେର୍ କେହି ପାଇଲେ ନାହିଁ । ସେହି ଟଙ୍କା କେଉଁଠି ଥିଲା ତାହା ଏବେସୁଦ୍ଧା ରହସ୍ୟ ହୋଇରହିଛି । ଏହି ରହସ୍ୟର ପେଡ଼ି କିଏ ଖୋଲିବ ତାହା ମଧ୍ୟ ଜଣାନାହିଁ । କିନ୍ତୁ କଥାରେ ଅଛି ଇତିହାସ ପୁନରାବୃତି ହୁଏ ବୋଲି । ଯେମିତି ପୁରୀ ଏମ୍ଆର୍ ମଠରେ ଲୁକାୟିତ ହୋଇରହିଥିବା ରୂପା ଇଟାର ଯେପରି ସନ୍ଧାନ ମିଳିଲା । ବିଜୁଙ୍କର ଏହି ୨ କୋଟି ଟଙ୍କାର ରହସ୍ୟ କେବେ ପଦାକୁ ଆସିବ ତାହାକୁ ସମସ୍ତେ ଉତ୍ସୁକତାର ସହ ଚାହିଁ ରହିବା ମଧ୍ୟ ସ୍ୱାଭାବିକ ।

# ମହାରଥୀଙ୍କ ଶୁଆ

**ଶୁ**ଆ ତ ଶୁଆ ପୁଣି ମହାରଥୀଙ୍କ ଶୁଆ କ'ଣ । ମହାରଥୀ ମାନେ ପ୍ରଦୀପ ମହାରଥୀ । ମାନେ ପିପିଲିରୁ ୫ ଥର ବିଧାୟକ ହୋଇଥିବା ବିଜେଡି ନେତା ପ୍ରଦୀପ ମହାରଥୀ । କେହି ଯଦି ପ୍ରଦୀପଙ୍କ ଭୁବନେଶ୍ୱରସ୍ଥିତ ସରକାରୀ କ୍ୱାର୍ଟରକୁ ଚାଲିଯିବେ ତେବେ କାହିଁକି ମହାରଥୀଙ୍କ ଶୁଆ କଥା କୁହାଯାଉଛି ତାହା ଜାଣିଯିବେ । ମହାରଥୀଙ୍କ ଦରବାର ଭୁବନେଶ୍ୱରରେ ଯେ ସବୁବେଳେ ଚାଲେ ତାହା ନୁହେଁ । ଭୁବନେଶ୍ୱରରେ ଯେତେବେଳେ ଦରବାର ହୁଏ ସେତେବେଳେ ପ୍ରବଳ ଲୋକ ଗହଳି ହୁଏ । ମହାରଥୀଙ୍କ ସରକାରୀ କ୍ୱାର୍ଟରର ପଛପାଖରେ ଚାରୋଟି ଶୁଆ ଅଛନ୍ତି । ଏମିତି ମହାରଥୀଙ୍କ କୁକୁର ପ୍ରେମ କଥା ଅନେକ ଜାଣନ୍ତି । କିନ୍ତୁ ମହାରଥୀଙ୍କର ଯେ ଶୁଆ ପ୍ରେମ ଥିବ ତାହା କେହି ଜାଣନ୍ତି ନାହିଁ । ଏହି

ଶୁଆମାନଙ୍କୁ ମଧ୍ୟ କଥା ଶିଖାଇ ଦିଆଯାଇଛି । ଚାରୋଟି ଶୁଆ ମଧ୍ୟରୁ ଦୁଇଟି ଶୁଆ ବେଶ୍ ପ୍ରାଜଂଳ ଭାବେ କଥା କହୁଛନ୍ତି । ଦୁଇଟି ଯାକ ଶୁଆ ମା' ମା' ବୋଲି ଡାକନ୍ତି । ପୁଣି କେତେବେଳେ ମମି, ମମି ବୋଲି ଡାକନ୍ତି ଆଉ କେତେବେଳେ ବାବୁ, ବାବୁ ଡାକନ୍ତି । ପୁଣି ସମୟେ ସମୟେ ବାବା, ବାବା ବୋଲି ଡାକନ୍ତି । ସେଠାରେ ଥିବା କିଛି ଲୋକଙ୍କ ନାମ ମଧ୍ୟ ସେମାନେ ଡାକନ୍ତି । ଯଥା- ରାଜୁ, ଅଭି । ବେଳେବେଳେ କିଏ, କିଏ ଆଉ କିଏ ଆସିଲା ବୋଲି ମଧ୍ୟ ଏହି ଶୁଆ ଦୁଇଟି କହନ୍ତି । ଏମିତି ତ ଶୁଆଙ୍କର କଥା ଶୁଣିବା ପାଇଁ ବେଶ୍ ମଜା ଲାଗେ । କିନ୍ତୁ ମହାରଥୀଙ୍କର ଶୁଆଙ୍କ କଥା ଶୁଣିଲେ ଆହୁରି ମଜା ଲାଗିବ । ଆମର ମହାରଥୀଙ୍କୁ ପରାମର୍ଶ ଯେ ସେ ଦରବାର କରୁଥିବା ସମୟରେ କଥା କହୁଥିବା ସେହି ଶୁଆ ଦୁଇଟିକୁ ପାଖରେ ରଖନ୍ତୁ । ଆଉ ସେମାନଙ୍କର କଥାକୁ ତାଙ୍କ ପାଖକୁ ଯାଉଥିବା ଲୋକମାନଙ୍କୁ ଶୁଣାନ୍ତୁ । କିଛି ନହେଲେ ବି ନିର୍ଦ୍ଦୟ ହୋଇଯାଉଥିବା ଆଜିର ଯୁଗର ଲୋକମାନେ ଶୁଆପ୍ରେମୀ ତ ହୋଇପାରିବେ ।

# ବନ୍ଧୁ ପ୍ରିୟ ପ୍ୟାରୀ

**ରା**ଜ୍ୟସଭା ସାଂସଦ ପ୍ୟାରୀମୋହନ ମହାପାତ୍ରଙ୍କୁ ଏବେ ଦେଖିଲେ କେହି ଭାବିପାରିବେ ନାହିଁ ଯେ, ସେ ଜଣେ ଦରଦୀ ଆଉ ବନ୍ଧୁ ପ୍ରିୟ ଲୋକ ବୋଲି । ହୋଇପାରେ ପ୍ୟାରୀମୋହନ ତାଙ୍କ ବାଲ୍ୟ ଜୀବନରେ ବନ୍ଧୁ ପ୍ରିୟ ଥିଲେ ଆଉ ଆଇଏଏସ୍ ହୋଇଯିବା ପରେ ଫାଇଲ ପ୍ରିୟ ହୋଇଯାଇଥିଲେ । ଆଇନକାନୁନ୍‌କୁ ମୁହେଁମୁହେଁ ଘୋଷି ରଖିଥିଲେ । ଆଇଏଏସ୍ ଚାକିରିରୁ ଅବସର ଗ୍ରହଣ କରିବା ପରେ ଅନେକ ଭାବୁଥିଲେ ଯେ ଅନ୍ୟ ଅବସରପ୍ରାପ୍ତ ଆଇଏଏସ୍‌ଙ୍କ ପରି ପ୍ୟାରୀମୋହନ ଅବସର ଜୀବନ ବିତାଇବେ ବୋଲି । କିନ୍ତୁ ଚାକିରି ଜୀବନ ଆରମ୍ଭ କରିବା ବେଳକୁ ଯୁବ ବୟସରେ ପ୍ୟାରୀମୋହନ ଯେତିକି ପରିଶ୍ରମ କରୁ ନଥିଲେ ଚାକିରିରୁ ଅବସର ନେଇ ତାହାର ବହୁଗୁଣ ପରିଶ୍ରମ ସେ କରୁଛନ୍ତି । ତାଙ୍କରି ଅହରହ ଉଦ୍ୟମ ଯୋଗୁଁ ବିଜୁ ଜନତା ଦଳ ଆଂଚଳିକ ରାଜନୈତିକ ଦଳ ହୋଇ ମଧ୍ୟ ଓଡ଼ିଶାରେ ଏକନମ୍ବର । ଆଉ ନବୀନ ପଟ୍ଟନାୟକ କ୍ରମାଗତ ଭାବେ ତିନିଥର ପାଇଁ ମୁଖ୍ୟମନ୍ତ୍ରୀ ହୋଇ ଓଡ଼ିଶା ଇତିହାସରେ ରେକର୍ଡ଼ ସୃଷ୍ଟି କରିଛନ୍ତି । କୌଣସି ଆଗୁଆ କାର୍ଯ୍ୟକ୍ରମ ନକରି ପ୍ୟାରୀମୋହନ ପହଂଚିଲେ ତାଳଚେରରେ । ଉଦ୍ଦେଶ୍ୟ କ'ଣ ତାହା କେହି ଜାଣିପାରିଲେ ନାହିଁ । କୁଆଡ଼େ ପ୍ୟାରୀମୋହନଙ୍କ ପିଲାଦିନର ସାଙ୍ଗ ଉତମ ସିଂଙ୍କର ପରଲୋକ ହୋଇଯିବା ପରେ ତାଙ୍କ ପରିବାରକୁ ସେ ସାନ୍ତ୍ୱନା ଦେବାକୁ ଯାଇଥିଲେ । ଏମିତି ତ ବର୍ତମାନର ଯୁବକମାନେ କ୍ରିକେଟ୍ ପାଗଳ ଅଟନ୍ତି । କିନ୍ତୁ ପ୍ୟାରୀମୋହନଙ୍କ ପିଲାଦିନଟି ଥିଲା ଫୁଟ୍‌ବଲ ପାଗଳ ଯୁଗ ।

ପ୍ୟାରୀମୋହନ ନିଜେ ବି ଫୁଟ୍‌ବଲ ଖେଳୁଥିଲେ । ଉତମ ସିଂ ଜଣେ ଭଲ ଫୁଟ୍‌ବଲ ଖେଳାଳୀ ଆଉ ଓଡ଼ିଶା ଫୁଟ୍‌ବଲ ଟିମ୍‌ରେ ମଧ ସେ ଖେଳୁଥିଲେ । ଏମିତି ପ୍ୟାରୀମୋହନ ଆଇଏଏସ୍ ପାଇ ଚାକିରି କଲେ କିନ୍ତୁ ଉତମ ସିଂ ବେକାର ରହିଗଲେ । ପ୍ୟାରୀମୋହନ ଯେତେବେଳେ ଏଡିଏମ୍ ଥିଲେ ସେତେବେଳେ ଉତମ ସିଂ ତାଙ୍କୁ ତାଙ୍କର ପି.ଏ. ପଦବୀରେ ରଖିବା ପାଇଁ ଅନୁରୋଧ କରିଥିଲେ । ଅବଶ୍ୟ ପ୍ୟାରୀମୋହନ ତାଙ୍କୁ ପି.ଏ. ପଦବୀରେ ରଖି ନଥିଲେ । କିନ୍ତୁ ତାଳଚେର ଥର୍ମାଲରେ ତାଙ୍କୁ ଟେକ୍ନିସିଆନ୍ ଭାବେ ରଖିବାରେ ପ୍ୟାରୀମୋହନଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ଥିଲା । ଉତମ ସିଂଙ୍କର ପରଲୋକ ହୋଇଗଲା । ପ୍ୟାରୀମୋହନଙ୍କୁ ସାକ୍ଷାତ କରିବା ପାଇଁ ମନ୍ତ୍ରୀ ଠାରୁ ଆରମ୍ଭ କରି ବିଧାୟକ, ଅଫିସର ପର୍ଯ୍ୟନ୍ତ ସମସ୍ତଙ୍କୁ ସମୟ ନେବାକୁ ହୋଇଥାଏ । ଗୋଟିଏ ପଟେ ରାଜ୍ୟସଭା ସଭ୍ୟ ଏବଂ ଅନ୍ୟପଟେ ବିଜେଡିର ସାଂଗଠନିକ ଦାୟିତ୍ୱ ସଫଳତାର ସହ ସେ ତୁଲାଉଛନ୍ତି । ସବୁବେଳେ ବ୍ୟସ୍ତ ଆଉ ବ୍ୟସ୍ତ । କିନ୍ତୁ ପିଲାଦିନ ସାଙ୍ଗର ପରଲୋକ ଖବର ଶୁଣି ପ୍ୟାରୀମୋହନ ଯେ ତାଙ୍କ ବ୍ୟସ୍ତ ଜୀବନରୁ ସମୟ ବାହାର କରି ତାଳଚେର ଯିବେ ତାହା କେହିବି ଭାବିପାରୁ ନଥିଲେ । ପ୍ୟାରୀମୋହନ ତାଳଚେର ଆସିଛନ୍ତି ଆଉ ତାହା ତାଙ୍କର ବ୍ୟକ୍ତିଗତ ବ୍ୟାପାର ପୁଣି ସେହି ବ୍ୟକ୍ତିଗତ ବ୍ୟାପାର ଆଉ କିଛି ନୁହେଁ ପିଲାଦିନ ସାଙ୍ଗ ଉତମଙ୍କ ପରଲୋକ ଖବର ଶୁଣି ସେ ତାଙ୍କ ପରିବାରକୁ ସଙ୍ଘାଳିବାକୁ ଆସିଛନ୍ତି ବୋଲି ଯେତେବେଳେ ଜଣାପଡ଼ିଲା ସେତେବେଳେ ଏହାକୁ ନେଇ ସାରା ତାଳଚେର ଅଂଚଳରେ ଚର୍ଚ୍ଚା ପରେ ଚର୍ଚ୍ଚା ହେଲା । ପ୍ୟାରୀମୋହନ ଯେ ଜଣେ ହୃଦୟବାନ ବ୍ୟକ୍ତି ଆଉ ପିଲାଦିନର ସବୁ ସ୍ମୃତିକୁ ସେ ମନେ ରଖିଛନ୍ତି ଏହା ଉତମଙ୍କ ପରଲୋକ ଖବର ଶୁଣି ପ୍ୟାରୀମୋହନ ତାଳଚେର ଆସିବା ଘଟଣାରୁ ସ୍ପଷ୍ଟ ହୋଇଯାଇଥିଲା । ଯେଉଁ ଚର୍ଚ୍ଚା ତାଳଚେରରେ ହେଲା ତାହା ଥିଲା- ପ୍ୟାରୀମୋହନ ଜଣେ ହୃଦୟବାନ ଆଉ ଦରଦୀ ଲୋକ । ସେ ଯେତେ ବ୍ୟସ୍ତ ଥାଆନ୍ତୁ କିମ୍ବା ଯେତେ ଉପରକୁ ଯାଆନ୍ତୁ କିନ୍ତୁ ହୃଦୟ ଆଉ ଦରଦକୁ ସେ ଛାଡ଼ିନାହାନ୍ତି । ତାଳଚେରରେ ସାଧାରଣ ଲୋକ ଯେଉଁ ଚର୍ଚ୍ଚା କଲେ ତାହା ହେଲା - ମଣିଷ ହେବ ତ ପ୍ୟାରୀମୋହନଙ୍କ ପରି ହୁଅ । ମାନେ ପ୍ୟାରୀଙ୍କର ଆଦର୍ଶ ତାଳଚେରବାସୀଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଯାଇଛି । ମାନିବାକୁ ପଡ଼ିବ ପ୍ୟାରୀମୋହନଙ୍କୁ । ପିଲାଦିନର ସ୍ମୃତିକୁ ନଭୁଲି ସେ ଯେଉଁ ମାନବିକତା ଦେଖାଉଛନ୍ତି ରାଜନୈତିକ ବ୍ୟକ୍ତିମାନେ ସେଭଳି ମାନବିକତା ଦେଖାଇବା ପାଇଁ ପ୍ୟାରୀମୋହନ ପରାମର୍ଶ ଦେବାର ଆବଶ୍ୟକତା ରହିଛି । ଆଉ ନେତାମାନେ ଯଦି ପ୍ୟାରୀମୋହନଙ୍କ ଏହି ଆଦର୍ଶକୁ ଆଦରେଇ ନେବେ ତେବେ ଜାଣ ଓଡ଼ିଶା ରାମରାଜ୍ୟ ହୋଇଯିବ ।

# ବଗଡ଼ା ଚାଉଳ ଓ ରଣପୁର ଡାଲି

ଏମିତି ଯଦି କାହାକୁ ଡାଇବେଟିସ୍ ରୋଗ ହୁଏ ତେବେ ଡାକ୍ତର କହନ୍ତି- ଭାତ ଖାଅ ନାହିଁ, ରୁଟି ଖାଅ । ଯଦି କେହି ରୁଟି ନଖାଇ ଭାତ ଖାଇବାକୁ ଚାହିଁବେ ତେବେ ଡାକ୍ତର ପ୍ରଥମେ କୁନ୍ଥୁକୁନ୍ଥୁ ହେବେ ଆଉ କିଛି ସମୟ ପରେ କହିବେ- କପେ ବଗଡ଼ା ଚାଉଳ ନାଲି ରଙ୍ଗର ଭାତ ଖାଇଲେ ଚଳିବ । ତେବେ ଉତର-ଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନା ଡାଇବେଟିସ୍ ରୋଗରେ ପୀଡ଼ିତ କି ନାହିଁ ଆମେ ଜାଣିନାହୁଁ । ଏମିତି ସାଧାରଣରେ ଚର୍ଚ୍ଚା ହୁଏ ଯେ ଭାଗିରଥୀ ଯେମିତି ବନ୍ଧୁ ପ୍ରିୟ ସେମିତି ଖାଇବା ପ୍ରିୟ । ସେ ଭଲ ଖାଆନ୍ତି ଆଉ ଭଲ ଖୁଆନ୍ତି ମଧ । ଭାଗିରଥୀଙ୍କ ଘରୋଇ ସୂତ୍ରରୁ ଜଣାପଡ଼ିଛି ଯେ ସେ କୁଆଡ଼େ ବଗଡ଼ା ଚାଉଳ ଭାତ ଖାଇବାକୁ ବେଶ୍ ପସନ୍ଦ କରନ୍ତି । ତେବେ ରଣପୁର ମୁଗଡ଼ାଲି ନହେଲେ ତାଙ୍କର ନଚଳେ । କୁଆଡ଼େ ରଣପୁର ଅଂଚଳର ମୁଗଡାଲି ବେଶ୍ ସ୍ୱାଦିଷ୍ଟ ଅଟେ । ଆଉ ଏହି ମୁଗଡ଼ାଲିରେ ସର ବି ପଡ଼େ । ପୁଣି ତାହାର ବାସ୍ନା ଏମିତି ହୁଏ ଯେ ଖାଲି ଡାଲିକୁ ନେଇ ଭାତ ବି ଖାଇ ହୋଇଯିବ । ଅବଶ୍ୟ ବଗଡ଼ା ଚାଉଳ ଯେକୌଣସି ବ୍ୟକ୍ତି ବଜାରରୁ କିଣି ଖାଇପାରିବେ । କିନ୍ତୁ ରଣପୁର ମୁଗଡାଲି ବଜାରରେ ମିଳିବ ନାହିଁ । କେମିତି ରଣପୁର ମୁଗଡାଲି ପ୍ରୀତିରେ ଭାଗିରଥୀ ପଡ଼ିଗଲେ ତାହା କେବଳ ଭାଗିରଥୀ ହିଁ କହିପାରିବେ । ଭାଗିରଥୀ ଯେତେବେଳେ ଯେଉଁ ଭୋଜିଭାତ କରୁଛନ୍ତି ସେହି ଭୋଜିରେ ବଗଡ଼ା ଚାଉଳକୁ ରଣପୁର ମୁଗଡାଲି ଆଇଟମ୍ ରଖନ୍ତୁ । ଯେଉଁମାନେ ବଗଡ଼ା ଚାଉଳ ଖାଇନାହାନ୍ତି ଆଉ ରଣପୁର ମୁଗଡାଲିର ସ୍ୱାଦ ଚାଖିନାହାନ୍ତି ସେମାନେ ଭାଗିରଥୀଙ୍କ ପରି ବଗଡ଼ା ଚାଉଳ ଆଉ ରଣପୁର ମୁଗଡାଲିର ପ୍ରେମରେ ପଡ଼ିଯିବେ ହିଁ ଯିବେ ।

# ମହାରଥୀଙ୍କ ମୁଣ୍ଡବୁଲା

କୃଷିମନ୍ତ୍ରୀ ପ୍ରଦୀପ ମହାରଥୀ ହଠାତ୍ କହିଲେ ଯେ ତାଙ୍କର ମୁଣ୍ଡ ବୁଲାଉଛି । ବିପୁଳ ଶରୀରଧାରୀ ଚାଷୀପୁଅ ପ୍ରଦୀପ ମହାରଥୀଙ୍କର ମୁଣ୍ଡବୁଲା ରୋଗ ହୋଇଗଲାଣି ବୋଲି ଅନେକ ଭାବିଲେ । କେହିକେହି କହିଲେ- ବ୍ଲଡ଼ପ୍ରେସର ବଢ଼ିଗଲାଣି । ଆଉ କେହି କହିଲେ- ରାତିରେ ବୋଧହୁଏ ନିଦ ଠିକ୍ ହେଉନାହିଁ । ଆଉ କେହି କହିଲେ- ଅଧିକ ଚିନ୍ତା କରୁଥିବାରୁ ମୁଣ୍ଡ ବୁଲାଉଛି । ଆଉ କେତେକ କହିଲେ- ଡାକ୍ତରଙ୍କ ପାଖରେ ପରୀକ୍ଷା କରାନ୍ତୁ ଆଉ ଡାକ୍ତର ଯେଉଁ ଔଷଧ ଦେବେ ତାହା ଖାଇ କିଛିଦିନ ବିଶ୍ରାମ ନିଅନ୍ତୁ । ସମସ୍ତଙ୍କ ମୁହଁକୁ ପ୍ରଦୀପ ମହାରଥୀ ବଲବଲ ହୋଇଚାହୁଁଥା'ନ୍ତି କିନ୍ତୁ କିଛି କହୁ ନଥା'ନ୍ତି ।

ସମସ୍ତଙ୍କ କଥା ସରିବା ପରେ ପ୍ରଦୀପ ମହାରଥୀ କହିଲେ- ମୁଁ କହୁଛି କ'ଣ ଆଉ ଆପଣମାନେ କହୁଛନ୍ତି କ'ଣ ତାହା ମୁଁ ବୁଝିପାରୁନାହିଁ । କଥା କ'ଣ ସମସ୍ତେ ଜାଣିବା ଉଚିତ୍ । ଯେବେଠାରୁ ସେ ବିଧାୟକ ହେଲେଣି ସେବେଠାରୁ ବିଧାନସଭାରେ ସେ ବିଭିନ୍ନ ପ୍ରସଙ୍ଗରେ ପାଟି କରିଆସୁଥିଲେ । ଏପରିକି ସରକାରୀ ଦଳର ମୁଖ୍ୟ ସଚେତକ ହେବାପରେ ୨୦୦୦ ମସିହାରୁ ୨୦୦୪ ମସିହା ପର୍ଯ୍ୟନ୍ତ ମଧ୍ୟ ସେ ବିଭିନ୍ନ ପ୍ରସଙ୍ଗରେ ଗୃହରେ ଯୁକ୍ତି ବି କରୁଥିଲେ । ଏବେ କିନ୍ତୁ ତାଙ୍କ ମୁହଁରେ ତାଲା ପଡ଼ିଛି । ମନ୍ତ୍ରୀ ହୋଇଯିବାରୁ ସେ ସବୁ ଦେଖୁଛନ୍ତି କିନ୍ତୁ କିଛି କହିପାରୁନାହାନ୍ତି । ମାନେ ଗୃହରେ ନିଜ ବିଭାଗ ଛଡ଼ା ଅନ୍ୟ କୌଣସି ପ୍ରସଙ୍ଗରେ ସେ ମୁହଁ ବି ଖୋଲୁନାହାନ୍ତି । ଏହା ହିଁ ତାଙ୍କ ପାଇଁ ମୁଣ୍ଡବୁଲାର କାରଣ ହୋଇଯାଇଛି । ଏଥରର ଅଧିବେଶନଟି ଖୁବ୍ କମ୍ ଦିନ ପାଇଁ ହୋଇଥିଲେ ମଧ୍ୟ ଯଦି ସେ ମନ୍ତ୍ରୀ ହୋଇ ନଥା'ନ୍ତେ ତେବେ ଅନେକ ବିଷୟ ସମ୍ପର୍କରେ ଗୃହରେ ଉତ୍ଥାପନ କରିଥା'ନ୍ତେ । କିନ୍ତୁ ମନ୍ତ୍ରୀ ହୋଇଯିବାରୁ ସେ ଏସବୁଥିରୁ ଦୂରେଇ ରହିଛନ୍ତି । ମନ୍ତ୍ରୀ ଅଭିଜ୍ଞତା ନଥିବାରୁ ସେ ପ୍ରଥମରୁ ଚୁପ୍ ରହିଛନ୍ତି । ପାଟି ଖୋଲିଦେଲେ କୁଆଡ଼େ କ'ଣ କହିଦେବେ ସେଥିପାଇଁ ସେ ନିଜ ଜିଭକୁ ମଧ୍ୟ ଆକଟ କରିଛନ୍ତି । ଯେଉଁ ମୁଣ୍ଡବୁଲା ହେଉଛି ତାହା କ୍ରମେ ଦେହସୁହା ହୋଇଯିବ ବୋଲି ସେ କହିବାରୁ ତାଙ୍କୁ ଯେଉଁମାନେ ମୁଣ୍ଡବୁଲା ସମ୍ପର୍କରେ ପ୍ରଶ୍ନ ପଚାରୁଥିଲେ ସେମାନେ ନିରବ ହୋଇଯାଇଥିଲେ ।

# ଶିକ୍ଷକ ଓ ଛାତ୍ର

**ଯେ**ତେବେଳେ ଭୁବନେଶ୍ୱର ରାଜଧାନୀ ହେଲା ସେତେବେଳେ ଭୁବନେଶ୍ୱର ବୋଲି କୁହାଯାଉଥିଲା ଲିଙ୍ଗରାଜ ମନ୍ଦିର ଅଂଚଳକୁ । ପରବର୍ତ୍ତୀ ସମୟରେ ସେହି ଅଂଚଳ ପୁରୁଣା ଭୁବନେଶ୍ୱର ହୋଇଗଲା ଆଉ ଅନ୍ୟ ଅଂଚଳକୁ ନୂଆ ଭୁବନେଶ୍ୱର କୁହାଗଲା । ପୁରୁଣା ଭୁବନେଶ୍ୱର ଲିଙ୍ଗରାଜ ମନ୍ଦିର ନିକଟରେ ରହିଛି ଭକ୍ତକବି ମଧୁସୂଦନ ହାଇସ୍କୁଲ । ସଂକ୍ଷେପରେ ଏହାକୁ ବିଏମ୍ ହାଇସ୍କୁଲ ବୋଲି କୁହାଯାଏ । କିନ୍ତୁ ୧୯୮୦ ମସିହାରେ ମ୍ୟାଟ୍ରିକ ପରୀକ୍ଷା ଦେଉଥିବା ପିଲାମାନେ ଏହି ହାଇସ୍କୁଲର ନାମକରଣକୁ ଅଲଗା କରିଦେଲେ । ସେମାନେ ଏହାକୁ ବାଘମାର୍କା ହାଇସ୍କୁଲ ବୋଲି କହିଲେ । ଏହି ବାଘମାର୍କା ହାଇସ୍କୁଲ ନାମକରଣ କରିଥିବା ପୁରାତନ ଛାତ୍ରମାନେ ଏକ ପୁରାତନ ଛାତ୍ର ସଂଘ ଗଠନ କଲେ । ନିକଟରେ ଏହି ଛାତ୍ର ସଂଘ ପକ୍ଷରୁ ଏକ ଆଲୋଚନାଚକ୍ର ହୋଇଥିଲା । ୧୯୮୦ ମସିହାରେ ମ୍ୟାଟ୍ରିକ ପରୀକ୍ଷା ଦେଇଥିବା ୭୦ ଜଣ ଛାତ୍ରମାନେ ଏଥିରେ ଯୋଗ ଦେଇଥିଲେ । ବଡ଼ ଅଜବ ଥିଲା ଏହି ଦୃଶ୍ୟ । ଯେଉଁମାନେ ହାଇସ୍କୁଲର ନାମକୁ ପରିବର୍ତ୍ତନ କରି ବାଘମାର୍କା ହାଇସ୍କୁଲ ନାମକରଣ

କରିଥିଲେ ସେମାନଙ୍କଠାରୁ ଭଲ କାମ ଶିକ୍ଷକମାନେ କେବେବି ଆଶା କରିପାରିବେ ନାହିଁ । କିନ୍ତୁ ଏହି ସଭାରେ ପୂର୍ବତନ ଶିକ୍ଷକମାନେ ବେଶ୍ ଆଶ୍ଚର୍ଯ୍ୟ ହୋଇଯାଇଥିଲେ । ବାଘମାର୍କା ହାଇସ୍କୁଲ ନାମକରଣ କରିଥିବା ସେହି ପୁରାତନ ଛାତ୍ରମାନେ ସ୍କୁଲର ପୁରାତନ ଶିକ୍ଷକମାନଙ୍କୁ ଖୋଜି ସଭାକୁ ଆଣିଥିଲେ । ଆଉ ସେମାନଙ୍କୁ ବେଶ୍ ଜାକଜକମରେ ସମ୍ବର୍ଦ୍ଧନା ଦେଇଥିଲେ । ଏହି ସଭାର ଦାୟିତ୍ୱ ମଧ୍ୟ-ଭୁବନେଶ୍ୱର ବିଧାୟକ ବିଜୟ ମହାନ୍ତି ନେଇଥିଲେ । ତାଙ୍କୁ ସହଯୋଗ କରିଥିଲେ ପ୍ରଶାନ୍ତ ନାୟକ, ରମାନାଥ ମହାନ୍ତି, ଅମୟ ଦ୍ୱିବେଦୀ, ଅଜୟ ଦେବଦତ, ବଳରାମ ମହାନ୍ତି, ଦୀପକ ମହାପାତ୍ର, ଆଶିଷ ମହାପାତ୍ର, ସତ୍ୟନାରାୟଣ ମିଶ୍ର, କୈଳାସ ମହାପାତ୍ର, ଗୋପାଳ ମହାପାତ୍ର ପ୍ରମୁଖ । ଏମାନଙ୍କ ସହଯୋଗରେ ବିଜୟ ସବୁ ପିଲାଙ୍କୁ ଏକାଠି କରାଇଥିଲେ । ପୁରାତନ ଶିକ୍ଷକଙ୍କର ଠିକଣା ଖୋଜି ସେମାନଙ୍କରଂ ଠାବ କରାଯାଇଥିଲା । ଯେତେବେଳେ ସଭାରେ ଶିକ୍ଷକମାନଙ୍କୁ ସମ୍ବର୍ଦ୍ଧନା କରାଗଲା ସେତେବେଳର ଦୃଶ୍ୟ ନଦେଖିଲେ କେହି ବିଶ୍ୱାସ କରିପାରିବେ ନାହିଁ । ସବୁ ଶିକ୍ଷକଙ୍କ ଆଖିରୁ ଝରଝର ହୋଇ ଲୁହ ବୋହୁଥିବାର ଦେଖାଯାଇଥିଲା । ଅନେକ ମଧ କାନ୍ଦକାନ୍ଦ ହୋଇ କହିଥିଲେ- ଆମେମାନେ କେବେବି ବିଶ୍ୱାସ କରୁ ନଥିଲୁ ତମେମାନେ ଏତେ ଭଲ ହୋଇଯିବ ବୋଲି । ଆମମାନଙ୍କର ଆଶିର୍ବାଦ ତମମାନଙ୍କ ଉପରେ ସବୁବେଳେ ରହିଥିବ । ତମେମାନେ ବିଏମ୍ ସ୍କୁଲକୁ ବାଘମାର୍କା ସ୍କୁଲ ଭାବେ ନାମକରଣ କରିଥିଲ । ଆଜି ପର୍ଯ୍ୟନ୍ତ ମଧ ସେହି ନାମକରଣ ଅଛି । ଉଲ୍ଲେଖଯୋଗ୍ୟ ଯେ ସଭାରେ ଉପସ୍ଥିତ ଥିବା ପ୍ରାୟ ୭୦ ଜଣ ପୂର୍ବତନ ଛାତ୍ର ଶିକ୍ଷକମାନଙ୍କର ଗୋଡ଼ ଧୋଇଥିଲେ । ଗୋଡ଼ ଧୋଇସାରିବା ପରେ ପୁଣି ସେମାନଙ୍କୁ ମୁଣ୍ଡିଆ ମାରିଥିଲେ । ଆଉ ଉତରଣୀୟ ଓ ଫୁଲତୋଡ଼ା ଦେଇ ସେମାନଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ସଭା ଶେଷ ହେବାପରେ ପୁରାତନ ଶିକ୍ଷକମାନଙ୍କର କାନ୍ଦ ଆହୁରି ଜୋର୍ ହୋଇଯାଇଥିଲା । ଖାଲି ଲୁହ ଆଉ ଲୁହ । ପୁରାତନ ଶିକ୍ଷକମାନେ ମଧ ସଭା ସାରି ଘରକୁ ଫେରିବା ବେଳକୁ ସବୁ ପୁରାତନ ଛାତ୍ରଙ୍କ ମୁଣ୍ଡରେ ହାତ ଥୋଇ ଆଶିର୍ବାଦ କରିଥିଲେ । ଏହାକୁ ଏକ ଅନନ୍ୟ ଦୃଶ୍ୟ ବୋଲି କୁହାଗଲେ କିଛି ଅତ୍ୟୁକ୍ତି ହେବନାହିଁ । ଯେଉଁ ଛାତ୍ରମାନେ ପାଠପଢ଼ିବା ସମୟରେ ଦୁଷ୍ଟାମୀର ଚରମରେ ଥିଲେ ସେହି ଛାତ୍ରମାନେ ତାଙ୍କ ସମୟର ଶିକ୍ଷକଙ୍କୁ ଖୋଜିଆଣି ସେମାନଙ୍କର ପାଦ ଧୋଇ ମୁଣ୍ଡିଆ ମାରି ସେମାନଙ୍କୁ ସମ୍ମାନିତ କରିବେ ଏହା କେହି ଭାବିପାରିବେ ନାହିଁ । କିନ୍ତୁ ଅନେକ ସମୟରେ ଯାହା କେହି ଭାବିନଥା'ନ୍ତି ତାହା ହିଁ ଘଟେ । ଆଉ ଏହି ଘଟଣାଟି ହେଉଛି ଏହାର ଜ୍ୱଳନ୍ତ ଉଦାହରଣ ।

# ଖଣ୍ଡାପ୍ରିୟ ମହାରଥୀ

ପ୍ରଦୀପ ମହାରଥୀ ପିପିଲିର ୫ ଥର ବିଧାୟକ । ଏବେ ସେ କୃଷିମନ୍ତ୍ରୀ । ମନ୍ତ୍ରୀ ହେବାପରେ ପ୍ରଦୀପ ମହାରଥୀ ଦିଲ୍ଲୀ ଗସ୍ତରେ ଯାଇଥିଲେ । ତାଙ୍କୁ ଦିଲ୍ଲୀରେ ବିଭିନ୍ନ ଓଡ଼ିଆ ନାଗରିକ ମଂଚ ପକ୍ଷରୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା । ଗୋଟିଏ ଦୃଶ୍ୟକୁ ନେଇ ଦିଲ୍ଲୀରେ ଚାଲିଛି ଚର୍ଚ୍ଚା । ଗ୍ରାମୀଣ ସାମାଜିକ ଉନ୍ନୟନ ଏକତ୍ରୀକରଣ ସଂସ୍ଥା ଅରସିଦ୍ ପକ୍ଷରୁ ଓଡ଼ିଶା ଭବନ ପରିସରରେ ଆୟୋଜିତ ଉତ୍ସବରେ ଦିଲ୍ଲୀର ଶିଖ୍ ଗୁରୁଦ୍ୱାର ପରିଚାଳନା କମିଟି ସଦସ୍ୟ ସର୍ଦ୍ଦାର ରାଜେନ୍ଦ୍ର ସିଂହ ମନ୍ତ୍ରୀ ପ୍ରଦୀପ ମହାରଥୀଙ୍କୁ ସିରୋପା ଏବଂ ତଲୱାର ଦେଇ ସମ୍ବର୍ଦ୍ଧିତ କରିଥିଲେ । ରାଜ୍ୟର କୃଷି ଓ କୃଷକଙ୍କ ବିକାଶ କରିବା ପାଇଁ ମହାରଥୀଙ୍କ ଭବିଷ୍ୟତ ଉଜ୍ଜ୍ୱଳ ହେଉ ବୋଲି ସେ ପ୍ରାର୍ଥନା କରିଥିଲେ । ପରେ ଉଦ୍ୟୋଗପତି ତଥା ନୀଳାଚଳ ସେବା ସଂଘର ସଦସ୍ୟ ରବିନ୍ଦ୍ର ପ୍ରଧାନ, ଧର୍ମଯାତ୍ରା ମହାସଂଘର ଉପସଭାପତି ଓମ୍‌ବୀର ସିଂହ, ସନାତନ ଧର୍ମ ମନ୍ଦିର ପକ୍ଷରୁ ହରୀଓମ୍ ଶର୍ମା, ଓଡ଼ିଶା ସମାଜ ପଶ୍ଚିମ ଜିଲାର ସଂପାଦକ ଅନନ୍ତ କିଶୋର ରାଉତ, ଓଡ଼ିଆ ସମାଜର ଉପସଭାନେତ୍ରୀ ପ୍ରମିଳା ସୁତାର, ସମାଜସେବୀ ପୂର୍ଣ୍ଣଚନ୍ଦ୍ର ରାଉତ, ଈଶ୍ୱର ସାହୁ ପ୍ରମୁଖ ପ୍ରଦୀପ ମହାରଥୀଙ୍କୁ ପୁଷ୍ପଗୁଚ୍ଛ ଦେଇ ସମ୍ବର୍ଦ୍ଧନା କରିଥିଲେ । କାର୍ଯ୍ୟକ୍ରମକୁ ଦିଲ୍ଲୀ ଓଡ଼ିଆ ସମାଜର ସଭାପତି ସୁଶାନ୍ତ କୁମାର ଦାସ ପରିଚାଳନା କରିଥିବା ବେଳେ ଅରସିଦ୍‌ର ଅଧ୍ୟକ୍ଷା ଅର୍ଚ୍ଚିତା ମହାନ୍ତି ଧନ୍ୟବାଦ ଦେଇଥିଲେ । ସଭାକାର୍ଯ୍ୟ ଶେଷ ହେଲା କିନ୍ତୁ ପ୍ରଦୀପ ମହାରଥୀଙ୍କୁ ଦିଲ୍ଲୀ ଶିଖ୍ ଗୁରୁଦ୍ୱାର କମିଟିର ସଦସ୍ୟ ସର୍ଦ୍ଦାର ରାଜେନ୍ଦ୍ର ସିଂହ ଯେଉଁ ଖଣ୍ଡା ଧରାଇଥିଲେ ଆଉ ମହାରଥୀ ସେହି ଖଣ୍ଡାକୁ ଯେପରି ଧରିଥିଲେ ସେହି ଦୃଶ୍ୟକୁ କେହି ଭୁଲି ପାରୁନଥିଲେ । ଏମିତି ତ ମହାରଥୀ ଜଣେ ଖଣ୍ଡାୟତ ପୁଅ । ତେଣୁ ଖଣ୍ଡାକୁ ଆୟତ କରିବାର ଅଭ୍ୟାସ ମଧ୍ୟ ତାଙ୍କର ଅଛି । ଯେଉଁଥିପାଇଁ ଫୁଲମାଳ ଅପେକ୍ଷା ଖଣ୍ଡା ପାଇ ସେ ବେଶ୍ ଖୁସି ହୋଇଯାଇଥିଲେ । ଆଉ ମହାରଥୀ ଖଣ୍ଡାକୁ ଧରି ଏମିତି ଉପରକୁ ଉଠାଇଲେ ଯେ ସତେ ଯେମିତି ସେହି ସମୟରେ ସେ ଯୁଦ୍ଧ କରିବାକୁ ଯାଉଛନ୍ତି ବୋଲି ଦେଖଣାହାରି ଭାବିଥିଲେ । ମହାରଥୀ ଖଣ୍ଡା ଉଠାଉଥିବାର ଦେଖି ସେଠାରେ ଥିବା କେତେକ ଦର୍ଶକ ମଧ୍ୟ ଭୟଭୀତ ହୋଇଯାଇଥିଲେ । ସତେ ଯେମିତି ମହାରଥୀ ଖଣ୍ଡାଚୋଟ ପକାଇବାକୁ ଯାଉଛନ୍ତି ବୋଲି ସେମାନେ ଭାବି ନେଇଥିଲେ । ଯେତେ ଯାହା ହେଲେ ମଧ୍ୟ ମହାରଥୀ ହେଉଛନ୍ତି ପାଇକପୁଅ । ଖଣ୍ଡାକୁ ଦେଖି ଯଦି ଜଣେ ପାଇକପୁଅ ନିରବ ରହିବ ତାହା ହେଲେ ପାଇକର ନାମକୁ ସେ ବଦ୍‌ନାମ କରିଦେବ । ଖଣ୍ଡା ଉଠାଇ ଯେଭଳି ମହାରଥୀ ପୋଜ୍ ଦେଲେ ତାହା ଖଣ୍ଡାୟତ କିମ୍ବା ପାଇକକୂଳର ମାନଇଜତ ରଖିଦେଲା ବୋଲି ଚର୍ଚ୍ଚା ହେଲା ।

ଭାରତବର୍ଷର ରାଜଧାନୀ ଦିଲ୍ଲୀରେ ଓଡ଼ିଆ ପାଇକ ପୁଅ କିପରି ଖଣ୍ଡା ଉଠାନ୍ତି ତାହାର ଜ୍ୱଳନ୍ତ ଉଦାହରଣ ନିଜେ ପାଲଟି ଯାଇଥିଲେ ପ୍ରଦୀପ ମହାରଥୀ ।

# ମମତା

**ରା**ଜନୀତିରେ ମମତା ପ୍ରସଙ୍ଗ ଆସିଲେ କେହିକେହି ପଶ୍ଚିମବଙ୍ଗ ମୁଖ୍ୟମନ୍ତ୍ରୀ ମମତା ବାନାର୍ଜୀଙ୍କ କଥା କହିବେ । ଓଡ଼ିଶା ବିଧାନସଭା ପ୍ରସଙ୍ଗ ଆସିଲେ କେହିକେହି ବି ମମତା ମାଢ଼ୀ ପ୍ରସଙ୍ଗ ଉଠାଇବେ । କିନ୍ତୁ ଏ ଯେଉଁ ମମତା ପ୍ରସଙ୍ଗରେ ଚର୍ଚ୍ଚା ହେଉଛି ତାହା କାହା ନାମକୁ ନେଇ ନୁହେଁ । ସେଦିନ ହଠାତ୍ ଦେଖାଗଲା ଜୟଦେବ ବିଧାୟକ ଅରବିନ୍ଦ ଢ଼ାଲି ବିଧାନସଭା ପ୍ରାଙ୍ଗଣରେ ଥିବା ମନ୍ତ୍ରୀ ପ୍ରଦୀପ ମହାରଥୀଙ୍କ ପ୍ରକୋଷ୍ଠ ମଧ୍ୟକୁ ପ୍ରବେଶ କଲେ । ସେତେବେଳେ ପ୍ରଦୀପ ମହାରଥୀ ତାଙ୍କ ପ୍ରକୋଷ୍ଠରେ ନଥିଲେ । କିନ୍ତୁ ଅରବିନ୍ଦ ସେହି ପ୍ରକୋଷ୍ଠ ମଧ୍ୟରେ କିଛି ସମୟ ରହିଲେ । ଏହାର କାରଣ କିଛି ଜଣାପଡ଼ିଲା ନାହିଁ । କିଛି ସମୟ ପରେ ଅରବିନ୍ଦ ସେହି ପ୍ରକୋଷ୍ଠରୁ ବାହାରି ବିଧାନସଭା ମଧ୍ୟକୁ ଗଲେ । ଏହାପରେ ସେ ପଂଚାୟତିରାଜ ମନ୍ତ୍ରୀ ପ୍ରଦୀପ ମହାରଥୀଙ୍କ ସହ ଆସୁଥିବାର ଦେଖାଗଲା । ଜଣେ ଦେଖଣାହାରୀ ସେହି ସମୟରେ ଅରବିନ୍ଦଙ୍କୁ ପଚାରିଲେ ଯେ ମନ୍ତ୍ରୀ ପ୍ରଦୀପ ମହାରଥୀ ତାଙ୍କ ପ୍ରକୋଷ୍ଠରେ ନଥିବାବେଳେ ସେ ସେଠାକୁ ଯାଇ ଦୀର୍ଘ ସମୟ ଧରି କ'ଣ କରୁଥିଲେ ବୋଲି । ଏହି ପ୍ରଶ୍ନ ଶୁଣି ଅରବିନ୍ଦ ବେଶ୍ ହସିଲେ । ମହେଶ୍ୱର ମହାନ୍ତି ସେହି ସମୟରେ ଅରବିନ୍ଦଙ୍କୁ କହିଲେ ହସୁଛ କାହିଁକି । ପ୍ରଶ୍ନର ଉତର ଦିଅ । ଅରବିନ୍ଦ କହିଲେ ଯେଉଁ ପ୍ରକୋଷ୍ଠରେ ପ୍ରଦୀପ ମହାରଥୀ ବସୁଛନ୍ତି ସେହି ପ୍ରକୋଷ୍ଠରେ ସେ ୨୦୦୦ରୁ ୨୦୦୪ ମସିହା ପର୍ଯ୍ୟନ୍ତ ମନ୍ତ୍ରୀ ଥିବାବେଳେ ବସୁଥିଲେ । ୨୦୦୯ରେ ବିଧାୟକ ହେବାପରେ ସେ ସେହି ପ୍ରକୋଷ୍ଠକୁ ପରିସ୍ରା କରିବାକୁ ଯା'ନ୍ତି । ୪ ବର୍ଷ ଧରି ତାଙ୍କର ଅଭ୍ୟାସ ରହିଯାଇଥିଲା । ସେହି ଅଭ୍ୟାସକୁ ସେ ଛାଡ଼ିପାରୁନାହାନ୍ତି । ବିଧାନସଭାରେ ଯେତେବେଳେ ତାଙ୍କୁ ପରିସ୍ରା ଲାଗେ ସେତେବେଳେ ସେ ସେହି ପ୍ରକୋଷ୍ଠକୁ ଯା'ନ୍ତି । ତେଣୁ ସେତେବେଳେ ମନ୍ତ୍ରୀ ଥା'ନ୍ତୁ କିମ୍ବା ନଥା'ନ୍ତୁ ସେଥିରେ ପରବାୟ ନାହିଁ । ଅରବିନ୍ଦ ଢ଼ାଲିଙ୍କ ଏହି କଥାରେ ମହେଶ୍ୱର ଆଉ ପଦେ ଯୋଡ଼ିଦେଲେ । ସେ ସିଧାସଳଖ କହିଲେ ମମତା । ମହେଶ୍ୱରଙ୍କର ଏହି ମମତା କଥାରେ ବେଶ୍ ହସ ଉଚ୍ଛୁଳି ପଡ଼ିଲା । ଅରବିନ୍ଦ କହିଲେ ମହେଶ୍ୱର ମହାନ୍ତି ଯାହା କହିଛନ୍ତି ତାହା ସମ୍ପୂର୍ଣ୍ଣ ଠିକ୍ । ମାନେ ୪ ବର୍ଷ ଧରି ମନ୍ତ୍ରୀ ଥିବାବେଳେ ଯେଉଁ ପ୍ରକୋଷ୍ଠରେ ସେ ବସୁଥିଲେ ସେହି ପ୍ରକୋଷ୍ଠ ପ୍ରତି ତାଙ୍କର ମମତା ରହିଯାଇଛି ।

# ସିଗାରେଟ ଓ ଭାଗିରଥୀ

ମଧ୍ୟଭୁବନେଶ୍ୱର ବିଧାୟକ ଭାଗିରଥୀ ବଡ଼ଜେନା ସିଗାରେଟ ଟାଣନ୍ତି ବୋଲି ଅନେକ ଜାଣନ୍ତି ନାହିଁ । ଅବଶ୍ୟ ରାଜନୀତି କଲେ ଅନେକ ସମୟରେ ଟେନ୍‌ସନ୍ ହେବାକୁ ପଡ଼ିଥାଏ । ଏହି ଟେନ୍‌ସନ୍‌ରୁ ମୁକ୍ତି ପାଇବା ପାଇଁ ବହୁ ରାଜନେତା ସିଗାରେଟ ଟାଣିଥା'ନ୍ତି । ଅନେକ ମଧ୍ୟ କଡ଼ା ପାନ ଖାଇଥା'ନ୍ତି । ତେବେ ଭାଗିରଥୀ ସିଗାରେଟ ଟାଣି ଟେନ୍‌ସନ୍‌କୁ କମାଇଥା'ନ୍ତି । ତେବେ ସିଗାରେଟ ପ୍ରେମରେ ଭାଗିରଥୀ କେମିତି ପଡ଼ିଲେ ତାହା ଜାଣିବାକୁ ଆମକୁ ଭାଗିରଥୀଙ୍କ ଅତୀତ ଜୀବନକୁ ଯିବାକୁ ହେବ । ଏମିତି ଭାଗିରଥୀ ସାନପୁଅ ହୋଇଥିବାରୁ ସେ ଗେଲବସରରେ ବଢ଼ିଥା'ନ୍ତି । ତାଙ୍କ ବାପା ରଘୁନାଥ ବଡ଼ଜେନା ଭୁବନେଶ୍ୱରରେ ଜଣେ ଆଗଧାଡ଼ିର ନେତା ଥିଲେ । ତାଙ୍କ ଘରକୁ ହରେକୃଷ୍ଣ ମହତାବଙ୍କ ଠାରୁଆରମ୍ଭ କରି ବହୁ ବଡ଼ବଡ଼ ନେତା ଆସୁଥିଲେ । ନେତାମାନେ ଯେତେବେଳେ ଘରକୁ ଆସନ୍ତି ସେତେବେଳେ ଚା' ସିଗାରେଟର ବନ୍ଦୋବସ୍ତ ରଘୁନାଥ କରିଥା'ନ୍ତି । ସେହି ନେତାମାନେ ଆଜିକାର ନେତାପରି ନୁହଁନ୍ତି । ଆଜିକାର ନେତାମାନେ ଖଣ୍ଡେ ସିଗାରେଟ ଖାଇଲେ ସେଠାରେ ଥିବା ସିଗାରେଟ ପ୍ୟାକେଟ୍‌କୁ ସାଥିରେ ନେଇ ଯାଉଛନ୍ତି । କିନ୍ତୁ ସେତେବେଳର ନେତାମାନେ ସିଗାରେଟ ପ୍ୟାକେଟ୍ ଭିତରୁ ଖଣ୍ଡିଏ ସିଗାରେଟ ଆଣି ଟାଣନ୍ତି ଆଉ ସିଗାରେଟ୍ ପ୍ୟାକେଟ୍ ସେହିପରି ପଡ଼ିରହିଥାଏ । ନେତାମାନେ ଚାଲିଯିବାପରେ ଘରେ ଯେଉଁ ଦାମିକିଆ ସିଗାରେଟ ପ୍ୟାକେଟ୍ ରହିଯାଏ ତାହାକୁ ଭାଗିରଥୀ ବଡ଼ଜେନା ଉଠାଇନିଅନ୍ତି । କ୍ରମେ ସେ ସେହି ସିଗାରେଟ୍ ପ୍ୟାକଟରୁ ଖଣ୍ଡିଏ ଖଣ୍ଡିଏ ଟାଣିବାକୁ ଲାଗିଲେ । ଆଉ ସିଗାରେଟ ଟାଣିବା ତାଙ୍କର ଅଭ୍ୟାସ ହୋଇଗଲା । ଆଉ ଏହି ଅଭ୍ୟାସକୁ ସେ ଯେତେ ଚାହିଁଲେ ବି ଛାଡ଼ିପାରୁନାହାଁନ୍ତି । ପୁଣି ଆଜେବାଜେ ସିଗାରେଟ ମଧ୍ୟ ସେ ଟାଣନ୍ତି ନାହିଁ । ପ୍ରଥମରୁ ନାମିଦାମୀ ସିଗାରେଟ ଟାଣିବାର ଅଭ୍ୟାସ ହୋଇଯାଇଥିବାରୁ ଭାଗିରଥୀ ସେହି ସିଗାରେଟ ଟାଣିବା ଅଭ୍ୟାସରେ ଅଛନ୍ତି । ଅବଶ୍ୟ ସିଗାରେଟ ଟାଣିବା ପାଇଁ ଭାଗିରଥୀ ନିଜକୁ ଦାୟୀ କରୁନାହାନ୍ତି । ସେ ଏଥିପାଇଁ ନେତାମାନଙ୍କୁ ଦାୟୀ କରୁଛନ୍ତି । ନେତାମାନେ ଯଦି ସିଗାରେଟ ଟାଣିବେ ନାହିଁ ତାହାହେଲେ ତାହାର ପ୍ରଭାବ ସାଧାରଣ ଲୋକଙ୍କ ଉପରେ ପଡ଼ନ୍ତା ନାହିଁ। ଯଦି ସେତେବେଳେ ଭାଗିରଥୀଙ୍କ ଘରକୁ ଆସୁଥିବା ନେତାମାନେ ସିଗାରେଟ ଟାଣୁନଥା'ନ୍ତେ ତେବେ ଭାଗିରଥୀ ଆଜି ସିଗାରେଟ୍ ନିଶାରେ ନଥା'ନ୍ତେ । ଦେଖାଯାଉ ଭାଗିରଥୀଙ୍କ ସିଗାରେଟ୍ ନିଶା କେତେଦିନ ରହୁଛି।

# ପ୍ୟାରୀଙ୍କ ଗୁରୁ

ରାଜ୍ୟସଭା ସଭ୍ୟ ପ୍ୟାରୀମୋହନ ମହାପାତ୍ରଙ୍କ ହାତରେ ବିଜେଡ଼ିର ଡୋରି । କମ୍ୟୁନିଷ୍ଟ ଆଦର୍ଶରେ ସେ ଅନୁପ୍ରାଣୀତ ବୋଲି ଅନେକ ସମୟରେ ମଧ୍ୟ ଖୋଲାଖୋଲି ପ୍ରକାଶ କରିଛନ୍ତି । ପ୍ୟାରୀମୋହନ ତାଳଚେର ଗସ୍ତରେ ଯାଇଥିଲେ । ଏମିତି ବିଜେଡ଼ି ରାଜନୀତିରେ ପ୍ୟାରୀମୋହନ ଅନେକ ବିଧାୟକ ଓ ନେତାଙ୍କର ଗୁରୁ ହୋଇ ଯାଇଛନ୍ତି । ତାଙ୍କର ଗୁରୁ କିଏ ବୋଲି ମଧ୍ୟ ଅନେକ ଜାଣନ୍ତି ନାହିଁ । ତାଳଚେର ଗସ୍ତରେ ଯାଇଥିବାବେଳେ ଦେଖାଗଲା ପ୍ୟାରୀମୋହନ ଆଡ଼ଭୋକେଟ୍ ଶ୍ରୀନିବାସ ମିଶ୍ରଙ୍କ ଘରକୁ ଗଲେ । ସେଠାରେ ଶ୍ରୀନିବାସ ମିଶ୍ରଙ୍କୁ ସାକ୍ଷାତ କଲେ । ଶ୍ରୀନିବାସ ମିଶ୍ରଙ୍କ ସହିତ ପ୍ୟାରୀମୋହନଙ୍କର କି ସମ୍ପର୍କ ତାହାକୁ ନେଇ ଚାଲିଲା ଚର୍ଚ୍ଚା । ଗୁମର କଥା ପଦାକୁ ଫିଟିଲା । କୁଆଡ଼େ ଶ୍ରୀନିବାସ ମିଶ୍ର କମ୍ୟୁନିଷ୍ଟ ନେତା ଥିଲେ । ଆଉ ପ୍ୟାରୀମୋହନ ଥିଲେ ଛାତ୍ର ଜୀବନରେ କମ୍ୟୁନିଷ୍ଟ । ଶ୍ରୀନିବାସଙ୍କ ଆଦର୍ଶରେ ସେ ଅନୁପ୍ରାଣୀତ ହୋଇଥିଲେ । ଆଉ ଶ୍ରୀନିବାସ ଥିଲେ ତାଙ୍କର କମ୍ୟୁନିଷ୍ଟ ରାଜନୀତିରେ ଗୁରୁ । ମାନିବାକୁ ପଡ଼ିବ ପ୍ୟାରୀମୋହନଙ୍କୁ । ଛାତ୍ର ଜୀବନ ପରେ ପ୍ୟାରୀମୋହନ ଆଉ ରାଜନୀତି ଆଡ଼କୁ ମୁହାଁଇନଥିଲେ । ଆଇଏଏସ୍ ଚାକିରି ପାଇ ସେ ବହୁ ବଡ଼ ବଡ଼ ପଦବୀରେ ରହିଥିଲେ । ଆଇଏଏସ୍ ଚାକିରିରୁ ଅବସର ଗ୍ରହଣ କରିବା ପରେ ସେ ଘଟଣାକ୍ରମେ ବିଜେଡ଼ି ରାଜନୀତି ସହିତ ଯୋଡ଼ି ହୋଇଗଲେ । ଆଉ ବିଜେଡ଼ି ଦଳର ସେ ହୋଇଗଲେ ସଙ୍ଗଠକ । କିନ୍ତୁ ଗୁରୁଙ୍କୁ ଯେ ସେ ମନେରଖିଛନ୍ତି ଏହା କେହି ଭାବି ବି ପାରିବେ ନାହିଁ । କେବଳ ସେତିକି ନୁହେଁ । ଗୁରୁଙ୍କୁ ସେ ସମ୍ମାନ ବି ଦିଅନ୍ତି । ଯାହା ଜଣାପଡ଼ିଲା ତାଳଚେରରେ ପ୍ୟାରୀମୋହନ ଯେତେବେଳେ ତାଙ୍କର କମ୍ୟୁନିଷ୍ଟ ଗୁରୁ ଆଡ଼ଭୋକେଟ୍ ଶ୍ରୀନିବାସ ମିଶ୍ରଙ୍କୁ ସାକ୍ଷାତ କରିଥିଲେ । ଆମର ପରମ୍ପରା ରହିଛି ଗୁରୁଙ୍କୁ ଯିଏ ଭକ୍ତି କରିବ ସେ ଦିନେ ନା ଦିନେ ବଡ଼ଲୋକ ହେବ । ଏହାକୁ ବୋଧହୁଏ ପ୍ୟାରୀମୋହନ ଅକ୍ଷରେ ଅକ୍ଷରେ ମାନିଛନ୍ତି । ଆଉ ଯେଉଁଥିପାଇଁ ସେ ବିଜେଡ଼ି ରାଜନୀତିରେ କ୍ଷମତା କେନ୍ଦ୍ର ହୋଇପାରିଛନ୍ତି । ପ୍ୟାରୀମୋହନ ଗୁରୁଭକ୍ତି ସମ୍ପର୍କରେ ସଭାସମିତିରେ ନିଜର ଉଦାହରଣ ଦେଇ ଭାଷଣ ଦେଲେ ତାହା ବରଂ ସମାଜର ଉପକାରରେ ଲାଗିପାରନ୍ତା । ଦେଖାଯାଉ ପ୍ୟାରୀମୋହନ ତାଙ୍କର ଗୁରୁଭକ୍ତି ସମ୍ପର୍କରେ ସଭାସମିତିରେ ବଖାଣୁଛନ୍ତି ନା ନାହିଁ ।



ଗୋଟିଏ ସପ୍ତାହରେ
୧ ହଜାର ବହି ବିକ୍ରି
ହୋଇ କେର୍ଡ ସୃଷ୍ଟି




ବିଧାନସଭାର ମଜା
ଘଟଣାକୁ ଏକାଠି କରି
ଓଡ଼ିଶାରେ ପ୍ରଥମଥର
ପାଇଁ ପ୍ରକାଶିତ ପୁସ୍ତକ




ଗୋଟିଏ ବର୍ଷରେ ୪ ଟି
ସଂସ୍କରଣ ତଥାପି ବି
ବିକ୍ରି କମୁନାହିଁ





ସେ... ଜୀମୂତ ମଙ୍ଗରାଜ

ତାଙ୍କୁ ଦେଖିଲେ ବିଶ୍ୱାସ ହୁଏନା ଯେ, ସେ ରାଜନୀତି ଓ ରାଜନୈତିକ ବ୍ୟକ୍ତିମାନଙ୍କୁ ନେଇ ଉଚ୍ଚକୋଟୀର ମୁଖରୋଚକ ନିବନ୍ଧ ଲେଖିପାରନ୍ତି । ପୁଣି ସେ ସବୁକୁ ସଂକଳିତ କରି ପୁସ୍ତକ ଆକାରରେ ପ୍ରକାଶିତ କରନ୍ତି । ତିନି ଦଶନ୍ଧିରୁ ଅଧିକ ସମୟ ଧରି ସେ ସାମ୍ବାଦିକତା କରି ଆସୁଛନ୍ତି । ସମାଜ, ସମ୍ବାଦ, ପ୍ରଜାତନ୍ତ୍ର ଭଳି ଓଡ଼ିଶାର ଅଗ୍ରଣୀ ସମ୍ବାଦ ପତ୍ରଗୁଡ଼ିକରେ ସେ ସଫଳତାର ସହିତ କାର୍ଯ୍ୟ କରିଛନ୍ତି । ବର୍ତ୍ତମାନ ସେ ଓଡ଼ିଶା ସରକାରଙ୍କ ଦ୍ୱାରା ଅଧିସ୍ୱୀକୃତ ଲାଭ କରିଥିବା ଜଣେ ବରିଷ୍ଠ ମୁକ୍ତବୃତ୍ତ ସାମ୍ବାଦିକ । ରାଜନୀତି ବିଜ୍ଞାନ, ଓଡ଼ିଆ ସାହିତ୍ୟରେ ଉପାଧିୁତୋର ଡିଗ୍ରୀ ନେଇ ସାରିବା ପରେ ସେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟରୁ 'ସାମ୍ବାଦିକତା'ରେ ମଧ୍ୟ ଡିଗ୍ରୀ ହାସଲ କରିଛନ୍ତି । ଜଣେ ବନ୍ଧୁବତ୍ସଳ ଓ ମିଷ୍ଟଭାଷୀ ମଣିଷ ହିସାବରେ ସେ ବନ୍ଧୁମହଲରେ ବେଶ୍ ପରିଚିତ । କିନ୍ତୁ ସେ ଆଣିଛନ୍ତି ପୁଣି ଏକ ଆଲୋଡ଼ନ । ଯାହା ସଚେତନ ଜନସାଧାରଣଙ୍କ ମନରେ ସୃଷ୍ଟି କରିବ ଚିନ୍ତା ଓ ଚେତନା । ତାଙ୍କର ଚତୁର୍ଥ ରାଜନୀତିଧର୍ମୀ ସଂକଳନ 'କ୍ୟାପିଟାଲ ଡାଏରୀ'ର ପ୍ରକାଶନ ପାଠକର ଆଉ ଏକ ମହତ୍ ଇଚ୍ଛାକୁ ପୂରଣ କରିପାରିବ- ତାହା ହେଲା ରାଜଧାନୀ ବା କ୍ୟାପିଟାଲର ରୂପ ଓ ସ୍ୱରୂପ । ଅନୁସନ୍ଧାନମୂଳକ ସାମ୍ବାଦିକତାରେ ଆଗଧାଡ଼ିରେ ଆସନ ଗ୍ରହଣ କରିଥିବା ଜୀମୂତ ମଙ୍ଗରାଜଙ୍କର 'କ୍ୟାପିଟାଲ ଡାଏରୀ' ଏକ ଅଭୂତପୂର୍ବ ଆଲୋଡ଼ନ ସୃଷ୍ଟି କରିବ ଏଥିରେ ସନ୍ଦେହ ନାହିଁ । ଯେହେତୁ ଶ୍ରୀ ମଙ୍ଗରାଜ ରାଜନୈତିକ ଆଲୋଡ଼ନ ସୃଷ୍ଟି କରିବାରେ ଅନନ୍ୟ ।